

# ମାର୍କିନ ସମାଜର ଗୋଟିଏ ସଂଖ୍ୟାଲଘୁ ସମ୍ପ୍ରଦାୟ

ଜେ. ମିଲଟନ ଇଙ୍ଗାର

# ମାର୍କିନ ସମାଜର ଗୋଟିଏ ସଂଖ୍ୟାଲଘୁ ସମ୍ପ୍ରଦାୟ

ଲେଖକ :
**ଜେ. ମିଲଟନ ଇଙ୍ଗାର**

ଅନୁବାଦକ :
**ଅଧ୍ୟାପକ ଶ୍ରୀଧର ଦାସ**

ପ୍ରକାଶକ :
**ଚନ୍ଦ୍ରଶେଖର ପୁସ୍ତକାଳୟ**
୧୧୪, ବପିନ ବହାରୀ ଗାଙ୍ଗୁଲି ଷ୍ଟ୍ରୀଟ,
କଲିକତା-୧୨

# ନିବେଦନ

ମିଷ୍ଟର ସିମ୍ପସନଙ୍କ ଦ୍ୱାରା ଲିଖିତ 'A Minority group in American Society' ପୁସ୍ତକର ଏହି ଓଡ଼ିଆ ଅନୁବାଦ ପ୍ରକାଶିତ ହେଲା । ମାର୍କିନ ସମାଜବିଷୟକ ଏପରି ଏକ ପୁସ୍ତକର ଓଡ଼ିଆ ଅନୁବାଦର ପ୍ରୟୋଜନୀୟତା ବିଷୟରେ ଏଠାରେ ପଦେ ଅଧେ କହିବା ଉଚିତ ବୋଲି ମନେହୁଏ । ମିଷ୍ଟର ସିମ୍ପସନ ତାଙ୍କ ପୁସ୍ତକରେ ମୁଖ୍ୟତଃ ଆମେରିକାର ନିଗ୍ରୋ ସମସ୍ୟାର ଆଲୋଚନା କରିଅଛନ୍ତି ଓ ପ୍ରସଙ୍ଗକ୍ରମେ କୃଷ୍ଣକାୟ ମୁସଲମାନ ପ୍ରଭୃତି ସଂଖ୍ୟାଲଘୁ ସମ୍ପ୍ରଦାୟର ଉଲ୍ଲେଖ କରିଅଛନ୍ତି । ଦେଖିବାକୁ ଗଲେ ମାର୍କିନ ଯୁକ୍ତରାଷ୍ଟ୍ରର ସଂଖ୍ୟାଲଘୁ ସମ୍ପ୍ରଦାୟର ସମସ୍ୟା ସହିତ ଓଡ଼ିଶାର ସଂଖ୍ୟାଲଘୁ ସମସ୍ୟାର ଯଥେଷ୍ଟ ସାମଞ୍ଜସ୍ୟ ରହିଅଛି । ମାର୍କିନ ଯୁକ୍ତରାଷ୍ଟ୍ରରେ ଯେପରି ସୁସଭ୍ୟ ଶ୍ୱେତାଙ୍ଗଙ୍କ ସହିତ ନିଗ୍ରୋ ପ୍ରଭୃତି ସଂଖ୍ୟାଲଘୁ ସମ୍ପ୍ରଦାୟ ବାସ କରି ଆସୁଅଛନ୍ତି, ସେହିପରି ଓଡ଼ିଶାରେ କେବଳ ସୁଶିକ୍ଷିତ ଆର୍ଯ୍ୟଜାତି ନାହାନ୍ତି ; ସେମାନଙ୍କ ସହିତ କନ୍ଧ, କୋଲ୍ହ, ଭୂୟାଁ, ସାନ୍ତାଳ, ଗଣ୍ଡ, ଗଦବା, ପରଜା ପ୍ରଭୃତି ଜାତିର ଲୋକ ଶତଶତ ବର୍ଷ ହେଲା ବାସ କରି ଆସୁଅଛନ୍ତି । ପ୍ରକୃତ ପକ୍ଷରେ ଏଇମାନେ ଓଡ଼ିଶାର ଆଦିମ ଅଧିବାସୀ ଓ ଏମାନଙ୍କ ସଂଖ୍ୟା ଓଡ଼ିଶାର ଲୋକ-ସଂଖ୍ୟାର ଶତକଡ଼ା ପ୍ରାୟ ସ୍ବଳଶ ଭାଗ । ଓଡ଼ିଶାର ଆମେ ଏକ ବିଚିତ୍ର ସମ୍ମିଳନ ଦେଖିବାକୁ ପାଉଁ । ଏଠାରେ ଏପରି ଆଦିମ ଅଧିବାସୀ ଅଛନ୍ତି ଯେଉଁମାନେ କି ଏବେ ସୁଦ୍ଧା ସଭ୍ୟତାର ଦ୍ୱାର ଦେଶରେ ସୁଦ୍ଧା ପହଞ୍ଚି ନାହାନ୍ତି । ସେମାନେ ଅଳ୍ପ କେତେକ ଦଶନ୍ଧି ପୂର୍ବେ ଗଛର ବଲ୍‌କଲ ବା ପତ୍ର ପରିଧାନ କରୁଥିଲେ ; ଧନୁଶର ଛଡ଼ା ଅନ୍ୟ ଅସ୍ତ୍ରଶସ୍ତ୍ରର ବ୍ୟବହାର ଜାଣି ନ ଥିଲେ ; ପତ୍ର କୁଡ଼ିଆରେ ବାସ କରୁଥିଲେ । ଏଇମାନଙ୍କ ସହିତ ପୁଣି ଅନ୍ୟ କେତେକ ଜାତିର ଲୋକ ଅଛନ୍ତି ଯେଉଁମାନେ ସଭ୍ୟତାର ଉଚ୍ଚ ସୋପାନରେ ଆରୋହଣ କରି ଅଛନ୍ତି, ଉଚ୍ଚ ଶିକ୍ଷା ଲାଭ କରି ରାଜନୀତି, ସାହିତ୍ୟ, ବିଜ୍ଞାନ, ଇଞ୍ଜିନିୟରିଂ ପ୍ରଭୃତିରେ କୃତିତ୍ୱ ପ୍ରଦର୍ଶନ କରି ସମଗ୍ର ଦେଶର ଅଗ୍ରଗତିରେ ସହାୟତା କରି ଅଛନ୍ତି । ଭାରତର ଉନ୍ନତି ସାଧନ କରିବାକୁ ହେଲେ ଏହି ଅବହେଳିତ ନିମ୍ନ-ଶ୍ରେଣୀର ଉନ୍ନତି ଏକାନ୍ତ ଆବଶ୍ୟକ । ସେମାନଙ୍କୁ ସଭ୍ୟ ଶିକ୍ଷିତ ଶ୍ରେଣୀକୁ ଉନ୍ନୀତ କରିବାକୁ ହେବ, ଯେପରି କି ସେମାନେ ଜାତୀୟଜୀବନରେ ପୂର୍ଣ୍ଣ ମାତ୍ରାରେ ଅଂଶ ଗ୍ରହଣ କରି ପାରିବେ । ଯେତେଦିନ ପର୍ଯ୍ୟନ୍ତ ଦେଶର ପ୍ରାୟ ଏକ ତୃତୀୟାଂଶ ଲୋକ ସାଧାରଣ ମାନବସ୍ତରକୁ ଆସି ପାରିନାହାନ୍ତି, ସେତେଦିନ ଯାଏ ଦେଶର ପ୍ରଗତି ଆଶା କରିବା ବୃଥା । ଏହି ଆଦିମ ଅଧିବାସୀମାନେ ନାନା ଗୋଷ୍ଠୀରେ ବିଭକ୍ତ । ସେମାନ-

ଙ୍କର ଭାଷା, ଖାଉଟାଉ, ଆଗ୍ରହ ବ୍ୟବହାର ବିଭିନ୍ନ । ସେମାନଙ୍କର ଭାଷାରେ ଲେଖନ ପଦ୍ଧତି ପ୍ରବେଶ କରିନାହିଁ । ଏମାନଙ୍କ ବ୍ୟତୀତ କେତେକ ତଥାକଥିତ ନୀଚ ଜାତି ବା ହରିଜନ ମଧ୍ୟ ଅଛନ୍ତି । ସେମାନେ ଉଚ୍ଚବର୍ଣ୍ଣର ହିନ୍ଦୁମାନଙ୍କ ଦ୍ୱାରା ଘୃଣ୍ୟ ଓ ଅସ୍ପୃଶ୍ୟ ବୋଲି ବିବେଚିତ ହେଉଥିଲେ । ସ୍ୱାଧୀନତା ପ୍ରାପ୍ତି ପରେ ଅସ୍ପୃଶ୍ୟତାକୁ ନିୟମାନୁସାରେ ବର୍ଜନ କରି ଯାଇଅଛି ଓ କେନ୍ଦ୍ର ତଥା ରାଜ୍ୟ ସରକାରମାନେ ଉପଯୁକ୍ତ ପଦକ୍ଷେପ ଗ୍ରହଣ କରୁ ଅଛନ୍ତି । ତଥାପି କୁହା ଯାଇପାରେ ଯେ ସଂଖ୍ୟାଲଘୁ ସମସ୍ୟାମାନଙ୍କର ସମାଧାନ ନିମନ୍ତେ ଓଡ଼ିଶାରେ ଯେଉଁ ଉଦ୍ୟମ ହୋଇଅଛି, ତାହା ଏକ ସଂଗ୍ରାମର ଆରମ୍ଭ ମାତ୍ର ; ଏ ସଂଗ୍ରାମରେ ଜୟଲାଭ କରିବାକୁ ଅନେକ ଦିନ ଲାଗିବ । ମିଷ୍ଟର ସିମ୍ପସନଙ୍କ ପୁସ୍ତକଟି ପାଠକଲେ ଦେଖାଯିବ ଯେ ଆମେରିକାର ସଂଖ୍ୟାଲଘୁ ସଂପ୍ରଦାୟର ସମସ୍ୟା ସହିତ ଏବେମଧ୍ୟ ସଂଗ୍ରାମ ଚାଲିଛି ; ବିଜୟ ହସ୍ତଗତ ହୋଇନଥିଲେହେ ମାର୍କିନ ସମାଜ ବିଜୟ ପଥରେ ଅଗ୍ରସର ହେଉଅଛି । ସଂଖ୍ୟାଲଘୁ ସମ୍ପ୍ରଦାୟଗୁଡ଼ିକୁ ମାର୍କିନ ସମାଜରେ ପୂର୍ଣ୍ଣ ମାତ୍ରାରେ ମିଶାଇ ନେବାପାଇଁ ଯେଉଁ ସବୁ ପନ୍ଥା ଅନୁସୃତ ହୋଇଅଛି ଓ ହେଉଅଛି ସେ ସବୁ ଆମର ପଥ ପ୍ରଦର୍ଶକ ହେବ ବୋଲି ଆଶା କରାଯାଏ । ସେମାନେ ଯେଉଁ ମାର୍ଗରେ ଗତି କରି ବିଫଳ ହୋଇ ଅଛନ୍ତି, ଆମେ ସେ ପ୍ରକାର ମାର୍ଗକୁ ପରିତ୍ୟାଗ କରି ପାରିବା ; ଯେଉଁ ପନ୍ଥାରେ ଗତି କରି ସେମାନେ ଲକ୍ଷ୍ୟର ନିକଟବର୍ତ୍ତୀ ହୋଇ ଅଛନ୍ତି, ଆମେ ସେହି ପନ୍ଥାର ଅନୁସରଣ କରି କର୍ମକ୍ଷେତ୍ରରେ ଅଗ୍ରସର ହୋଇ ପାରିବା ।

ଉକ୍ତ ଲିଖିତ ଉଦ୍ଦେଶ୍ୟ ରଖି ପୁସ୍ତକଟିର ଓଡ଼ିଆ ଅନୁବାଦ ପ୍ରକାଶ କରାଗଲା । ପୁସ୍ତକଟି ଓଡ଼ିଶା ସରକାରଙ୍କର ତଥା ସମାଜସେବୀ ଅନୁଷ୍ଠାନମାନଙ୍କର ଦୃଷ୍ଟି ଆକର୍ଷଣ କରିବ ବୋଲି ଆଶା କରାଯାଏ । ସେମାନେ ଓଡ଼ିଶାର ସଂଖ୍ୟାଲଘୁ ସମ୍ପ୍ରଦାୟମାନଙ୍କର ସ୍ୱତନ୍ତ୍ର ସମସ୍ୟା ଓ ତାର ସମାଧାନର ପନ୍ଥା ବିଷୟରେ ଏହି ପୁସ୍ତକରୁ ସହାୟତା ଲାଭ କରିବେ ବୋଲି ମନେହୁଏ ।

ବୋଧହୁଏ, ସମାଜବିଜ୍ଞାନ ବିଷୟରେ ଏହା ହେଉଛି ଓଡ଼ିଆ ଭାଷାରେ ପ୍ରଥମ ପୁସ୍ତକ । ଲୋକ ସାଧାରଣଙ୍କ ଦ୍ୱାରା ଏହା ଆଦୃତ ହେଲେ ଶ୍ରମ ସାର୍ଥକ ହେଲା ବୋଲି ମନେ କରିବି । ଇତି ।

କଟକ
ତା ୧ । ୨ । ୬୨

ଅନୁବାଦକ
**ଶ୍ରୀଧର ଦାସ**

# ପ୍ରଥମ ଅଧ୍ୟାୟ

## ସମାଜ ଓ ସାମାଜିକ ସମସ୍ୟାର ଅଧ୍ୟୟନ

ଯଦି ମହାକାଶରୁ ଜଣେ ପରିଦର୍ଶକ ପୃଥିବୀକୁ ଆସି ଆମର ବର୍ଷକର ସମ୍ବାଦପତ୍ରମାନଙ୍କର ଶିରୋଲେଖା ପଢ଼ି ଓ ବେତାର ଦ୍ଵାରା ପ୍ରସାରିତ ସମ୍ବାଦମାନଙ୍କର ଟେପ୍ ରେକର୍ଡ଼ ଶୁଣି ମାନବ ଜାତିର ମୌଳିକ ଗୁଣ ସମ୍ବନ୍ଧରେ ଗୋଟାଏ ଉପସଂହାରରେ ଉପନୀତ ହେବାର ଚେଷ୍ଟା କରେ, ତାହାହେଲେ ସେ କି ସିଦ୍ଧାନ୍ତରେ ଉପନୀତ ହେବ, ଥରେ କଳ୍ପନା କର । ପରିଶେଷରେ ସେ ନରହତ୍ୟା, ସ୍ଵୈର, ଗୃହଦାହ, ଧ୍ଵଂସ, ଗଣ୍ଡଗୋଳ, କଳହ ପ୍ରଭୃତିର ଏକ ଦୀର୍ଘ ତାଲିକା ପ୍ରସ୍ତୁତ କରିବ । ବନ୍ଧୁତ୍ଵପୂର୍ଣ୍ଣ କାର୍ଯ୍ୟ, ଆପୋଷ ମିଳାମିଶା, ଲକ୍ଷ୍ୟ ସାଧନରେ ସିଦ୍ଧି — ଏ ସବୁର ବିବରଣ କ୍ଵଚିତ୍ ମିଳିବ । ତାର ପ୍ରଧାନ ଧାରଣା ହେବ ସଂଘର୍ଷର । ତାର ବିସ୍ମୟ ଜନ୍ମିବା ସ୍ଵାଭାବିକ ଯେ ଏ ମନୁଷ୍ୟ ଜାତିଟା କିପରି ତିଷ୍ଠି ରହିଛି ? ଏପରିକି ଶୀଘ୍ର ଶୀଘ୍ର ବଂଶବୃଦ୍ଧି ମଧ୍ୟ କରିପାରୁଛି ।

ସଂଘର୍ଷ ହିଁ ମନୁଷ୍ୟର ଏକମାତ୍ର ପନ୍ଥା ବୋଲି ସେ ଯଦି ଧାରଣା କରେ, ତେବେ ଆମେମାନେ କେହି ହୁଏତ ତା' ସହିତ ବିବାଦ କରିବାକୁ ବାହାରିବା ନାହିଁ । ଆମ ପାଖରେ ଏତେ ଅକାଟ୍ୟ ପ୍ରମାଣ ରହିଛି ଯେ ଆମେ ସଂଘର୍ଷର ଗୁରୁତ୍ଵ ବିଷୟରେ ସନ୍ଦେହ ପୋଷଣ କରିପାରିବା ନାହିଁ । ଏହି ପ୍ରବନ୍ଧରେ ଆମ୍ଭେମାନେ ଏପରି ସଂଘର୍ଷର ଗୋଟିଏ ସୁସ୍ପଷ୍ଟ ସାଧାରଣ ବିଷୟର ଆଲୋଚନା କରିବା । ଏଠାରେ ମନେରଖିବାକୁ ହେବ ଯେ ସମ୍ବାଦପତ୍ରର ଶିରୋଲେଖା ବା ସମ୍ବାଦରେ ଯାହାସବୁ ବାହାରେ, ସେ ସବୁ କେବଳ ଅସାଧାରଣ ସଂବାଦ, କଳ୍ପନାତୀତ ବା ନାଟକୀୟ ଘଟଣା ଯାହା ସମ୍ବାଦପତ୍ରରେ ପ୍ରକାଶ ଯୋଗ୍ୟ ବୋଲି ବିବେଚିତ ହୋଇଥାଏ ।

ମାନବ ଜୀବନର ବାସ୍ତବ ଚିତ୍ର ଖୁବ୍ ସାଧାରଣ । ପରସ୍ପର ମଧ୍ୟରେ ସାହାଯ୍ୟ ସହଯୋଗର ନିବିଡ଼ ବନ୍ଧନ, ମାନବିକ ମୂଲ୍ୟବୋଧ, ପରସ୍ପର ନିର୍ଭର-

ଶୀଳତା ସର୍ବବାଦୀ ସମ୍ମତ । ଏସବୁ ଏତେ ସାଧାରଣ ଯେ ଏଗୁଡ଼ିକୁ ଆମେମାନେ ସ୍ୱତଃ ସିଦ୍ଧ ଭାବରେ ଗ୍ରହଣ କରି ନେଇଥାଉଁ । ଗତ କେତେ ଦିନ ମଧ୍ୟରେ ନିଜର ଆବଶ୍ୟକତା ପୂରଣ ପାଇଁ ତୁମେ କେତେଥର ଅନ୍ୟମାନଙ୍କ ଉପରେ ନିର୍ଭର କରିଅଛ ? ସେମାନଙ୍କର ମୂଲ୍ୟବୋଧ ଓ ଲକ୍ଷ୍ୟ ସହିତ ସେମାନଙ୍କ କାର୍ଯ୍ୟ କେତେଦୂର ସଂପୃକ୍ତ ? ଏସବୁ ଚିନ୍ତା କରିଛ କି ? କେବଳ ନିଜ ପରିବାର ବା ବନ୍ଧୁମାନଙ୍କ କଥା ଚିନ୍ତା କଲେ ଚଳିବ ନାହିଁ, ଅପରିଚିତ ଲୋକଙ୍କ କଥା ଯେଉଁମାନଙ୍କୁ ତୁମେ ହୁଏତ କେବେ ଦେଖି ନାହିଁ, ଯେଉଁମାନଙ୍କ ବିଷୟ କେବେ ଜାଣି ନାହିଁ, କିନ୍ତୁ ଯେଉଁମାନେ ତୁମର ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟଧାରା ସହିତ ସଂପୃକ୍ତ ସେମାନଙ୍କ କଥା ଚିନ୍ତା କର । ଦୟା, ବନ୍ଧୁତ୍ୱ ପ୍ରଭୃତି ଏହାର ଏକ ଅଙ୍ଗ ସତ୍ୟ, କିନ୍ତୁ ମୁଁ ଏଠାରେ କେବଳ ଦୟାପୂର୍ଣ୍ଣ ବା ବନ୍ଧୁତ୍ୱ ପୂର୍ଣ୍ଣ କାର୍ଯ୍ୟକୁ ଲକ୍ଷ୍ୟ କରି କହୁନାହିଁ । ମୋ କହିବାର ଉଦ୍ଦେଶ୍ୟ ହେଉଛି ଦୃଢ଼ କର୍ତ୍ତବ୍ୟ ସାଧନ । ଅଧିକାଂଶ ଲକ୍ଷ୍ୟ ସାଧନରେ ଏହି କର୍ତ୍ତବ୍ୟ ସାଧନର ସମନ୍ୱୟ ଆବଶ୍ୟକ ହୋଇଥାଏ ।

ସମାଜ ବିଜ୍ଞାନର ଆରମ୍ଭ ଏହି ମୌଳିକ ବିଷୟରୁ । ପୃଥିବୀରେ ସର୍ବତ୍ର ମନୁଷ୍ୟମାନେ ସମାଜରେ ବାସ କରନ୍ତି । ସେମାନଙ୍କ ପାରସ୍ପରିକ କାର୍ଯ୍ୟାବଳୀ ବିଭିନ୍ନ ପରିମାଣରେ କେତେକ ଗୁରୁତ୍ୱପୂର୍ଣ୍ଣ ଆଦର୍ଶ, ସର୍ବସମ୍ମତ ନିୟମ ଓ ପ୍ରଣାଳୀଦ୍ୱାରା ନିୟନ୍ତ୍ରିତ । ପରବର୍ତ୍ତୀ ବଂଶଧରମାନଙ୍କୁ ଏହି ଆଦର୍ଶ ଶିକ୍ଷା ଦେବା ଲାଗି ପ୍ରତ୍ୟେକ ସମାଜ ନିଜର ପନ୍ଥା ବାହାର କରିଅଛି । ତେଣୁ ସର୍ବତ୍ର 'ଅଶିଷ୍ଟ ବର୍ବରରୂପୀ' ମାନବ ଶିଶୁକୁ ଦୀର୍ଘକାଳବ୍ୟାପୀ ସାଧାରଣ ଓ ସାମାଜିକ ଶିକ୍ଷା କରିବାକୁ ପଡ଼େ । ଏହି ପନ୍ଥାରେ ସେ ଯାହା ଶିକ୍ଷା କରେ, କେତେକ ନିର୍ଦ୍ଦିଷ୍ଟ ମୂଲ୍ୟବୋଧ ଦୃଷ୍ଟିରୁ ତାହାକୁ ନିଶ୍ଚୟ ଉତ୍ତମ ବୋଲି କୁହାଯାଇ ନପାରେ । ବସ୍ତୁତଃ ବିଭିନ୍ନ ସମାଜକୁ ତୁଳନାତ୍ମକ ଭାବରେ ଅଧ୍ୟୟନ କଲେ ସେମାନଙ୍କ ଆଦର୍ଶ, ଆକାଂକ୍ଷାଓ ସେମାନଙ୍କ କୃଷ୍ଟିର ବିରାଟ ପାର୍ଥକ୍ୟ ପରିଦୃଷ୍ଟ ହୁଏ । ତେଣୁ ମୂଲ୍ୟବୋଧ ଦୃଷ୍ଟିରୁ କୌଣସି ସମାଜଠାରୁ ଅନ୍ୟ କେତେକ ସମାଜ ଉଚ୍ଚତର ବୋଲି ପରିଗଣିତ ହୋଇପାରେ ; କିନ୍ତୁ ସମାଜବିଜ୍ଞାନୀ ବ୍ୟକ୍ତିଗତ ଜୀବନରେ ଏଭଳି ଉଚ୍ଚନୀଚ ବିଚାର କରୁଥିଲେ ସୁଦ୍ଧା, ସମାଜବିଜ୍ଞାନୀ ହିସାବରେ ଏପରି ବିଚାର କରି ନପାରେ । କେଉଁପ୍ରକାର ମୂଲ୍ୟବୋଧନିୟମ ସହିତ କେଉଁ ସାମାଜିକ ବ୍ୟାପାରର ସମ୍ବନ୍ଧ ଅଛି, ମାନବର ଆଚରଣ ବିଷୟରେ ତାର କି ପରିଣାମ ହୁଏ, ଏସବୁ ଆବିଷ୍କାର କରିବା ପାଇଁ ସମାଜବିଜ୍ଞାନୀ ଚେଷ୍ଟା କରେ । ତାର କାର୍ଯ୍ୟ ହେଉଛି ମାନବ-ଆଚରଣର ପରୀକ୍ଷା ଓ ତାର କାରଣ ପ୍ରଦର୍ଶନ ; କୌଣସି ଆଚରଣକୁ ନିନ୍ଦା ବା ପ୍ରଶଂସା କରିବା ତାର କାର୍ଯ୍ୟ ନୁହେଁ । କୌଣସି ସାମାଜିକ ଗୋଷ୍ଠୀରେ ବିଦ୍ୱେଷଭାବ ଶିକ୍ଷା ଦିଆଯାଏ କିମ୍ବା ଶିଶୁମାନଙ୍କୁ ଯତ୍ନସହକାରେ ଅନ୍ୟକୁ ଘୃଣା କରିବାକୁ ଶିକ୍ଷା ଦିଆଯାଏ ବୋଲି ସେ ଉଲ୍ଲେଖ କରିପାରେ ; କିନ୍ତୁ ସମାଜ-

ବିଜ୍ଞାନୀ ହିସାବରେ ସେ ଏପରି କାର୍ଯ୍ୟର ପ୍ରଶଂସା କରେନାହିଁ କିମ୍ବା ସେଥିପାଇଁ ବିଳାପ କରେ ନାହିଁ । ସେ କେବଳ ଏହାକୁ ବୁଝିବାକୁ ଚେଷ୍ଟା କରେ ।

ସମାଜକୁ ବୈଜ୍ଞାନିକ ଦୃଷ୍ଟିରେ ଅଧ୍ୟୟନ କରିବା ପାଇଁ ଏପ୍ରକାର ନିରପେକ୍ଷ ସ୍ଥାନ ବିଷୟରେ ମତଭେଦ ରହିଅଛି । ବାସ୍ତବରେ ଏହା ଗୋଟିଏ ଜଟିଳ ପ୍ରଶ୍ନ । ତେଣୁ ପ୍ରାରମ୍ଭରୁ ଏହି ପ୍ରଶ୍ନର ସ୍ଥୂଳ ଆଲୋଚନା କରିବା ବିଜ୍ଞତାର କାର୍ଯ୍ୟ ହେବ । ଅଧିକାଂଶ ସମାଜବିଜ୍ଞାନୀଙ୍କ ମତରେ ବସ୍ତୁନିଷ୍ଠତା (Objectivity) ଚରମ ବା ଶେଷ ଲକ୍ଷ୍ୟ ନୁହେଁ । କେବଳ ନିରୀକ୍ଷା ଓ ବ୍ୟାଖ୍ୟାନ ଅବସ୍ଥାରେ ଏହି ବସ୍ତୁନିଷ୍ଠତା ପ୍ରତି ମନୋଯୋଗ ଦେବାକୁ ହେବ । ଅନ୍ୟ କେତେକଙ୍କ ମତରେ ଏହା ଜୀବନର ଏକ ବୃହତ୍ତ୍ ଅଙ୍ଗ ହୋଇପାରେ ; କିନ୍ତୁ ଅଧ୍ୟୟନପୂର୍ବକ କାର୍ଯ୍ୟ-କାରଣ-ସମ୍ବନ୍ଧ ପ୍ରଦର୍ଶନ କରିବା ସମାଜବିଜ୍ଞାନୀର ମୌଳିକ ଲକ୍ଷ୍ୟ । ସେ ଯାହାହେଉ, ଅଧିକାଂଶ ସମାଜବିଜ୍ଞାନୀଙ୍କର ମତ ଏହି ଯେ ବୈଜ୍ଞାନିକ ପଦ୍ଧତି ଏକ ବୃହତ୍ତର ପଦ୍ଧତିର ଗୋଟିଏ ଅଙ୍ଗ । ମାନବୀୟ ସାଧନାର ସର୍ବାଧିକ ଫଳ ଲାଭପାଇଁ ଏହାକୁ ଯଥାସମ୍ଭବ ବସ୍ତୁନିଷ୍ଠ ଭାବରେ ଅନୁସରଣ କରିବାକୁ ହେବ । କୌଣସି ବିଶିଷ୍ଟ ବିଜ୍ଞାନୀ ପ୍ରକୃତିର ଗୋଟିଏ ବିଭାଗର ଆଲୋଚନାରେ ତାଙ୍କର ସମସ୍ତ ଶକ୍ତି ବିନିଯୋଗ କରି-ପାରନ୍ତି । କିନ୍ତୁ କୌଣସି ମାନବୀୟ ଲକ୍ଷ୍ୟ ସାଧନା ପାଇଁ ଅଧିକ ଜ୍ଞାନ ଆବଶ୍ୟକ କରୁଥିବା ବୃହତ୍ତର ଉଦ୍ୟମର ସେ ଗୋଟିଏ ଅଙ୍ଗ । ତେଣୁ ସେ ଏଥିରୁ ସାହାଯ୍ୟ ଓ ସମର୍ଥନ ପାଏ । ଜଣେ ରସାୟନବିତ୍ ନିଜ ଗବେଷଣାଗାରର ବିଶୁଦ୍ଧ ଗବେଷଣା ବ୍ୟତୀତ ଅନ୍ୟ କୌଣସି ବିଷୟରେ ଆଗ୍ରହ ପ୍ରକାଶ କରି ନପାରେ କିନ୍ତୁ ସେ ଜାଣେ ଯେ ତାର ରାସାୟନିକ ଜ୍ଞାନଦ୍ୱାରା ସେ ନୂତନ ନୂତନ ଔଷଧ, ବସ୍ତ୍ର ଓ ଅନ୍ୟାନ୍ୟ ଦ୍ରବ୍ୟର ଉତ୍ପାଦନରେ ସାହାଯ୍ୟ କରୁଅଛି । ସେ ତାହାର ଶୁଦ୍ଧ ଜ୍ଞାନର ପ୍ରୟୋଗରେ ନିଜ ସମୟର କେତେକାଂଶ ବ୍ୟୟ କରିପାରେ । ଜ୍ଞାନଦ୍ୱାରା ସେ ଯେ କେତେକ ସମସ୍ୟାର ସମାଧାନରେ ସାହାଯ୍ୟ କରିପାରିବ ତାହା ଏଥିରୁ ଜଣାଯାଏ ।

ସାମାଜିକ ବିଜ୍ଞାନ କ୍ଷେତ୍ରରେ ମଧ୍ୟ ଏହି ବସ୍ତୁନିଷ୍ଠତା (Objectivity) ଓ ପ୍ରୟୋଗଶୀଳତା (Application)ର ସମନ୍ୱୟ ପରିଲକ୍ଷିତ ହୁଏ । ଏହି ପରିପ୍ରେକ୍ଷୀରେ ଆମ୍ଭେମାନେ ନିରୀକ୍ଷା ଓ ବ୍ୟାଖ୍ୟାନ କରିବାର ଉଦ୍ୟମ କଲାବେଳେ ଆମ୍ଭମାନଙ୍କର ଲକ୍ଷ୍ୟ ହେବ—ଯଥାସମ୍ଭବ ନିରପେକ୍ଷ ରହି ଦୂରରୁ ପର୍ଯ୍ୟବେକ୍ଷଣ କରିବା । ଆମ ଦୃଷ୍ଟିରେ କେହି ବୀର ନୁହେଁ କି କେହି ସଇତାନ ନୁହେଁ । କେତେବେଳେ କୌଣସି ଫଖ୍ୟାଲବ୍ଧ ଗୋଷ୍ଠୀର କେହି ଜଣେ ଘୃଣ୍ୟ ଓ ଅଧମ ଅପରାଧୀ ହୋଇପାରେ । ଉଦାହରଣସ୍ୱରୂପ କୌଣସି ନିଗ୍ରୋର ଅପରାଧର ସମ୍ବାଦରେ ଆମେ ଘୃଣାରେ ନାସିକା କୁଞ୍ଚିତ କରିପାରୁ ; କିନ୍ତୁ ଏ ସ୍ଥଳରେ ଆମେ

ପ୍ରଶ୍ନ କରିବା—ଆମେ ତାର କୋଡ଼ିଏ ବର୍ଷ ତଳର ଜୀବନକୁ ଲକ୍ଷ୍ୟ କରି ପାରିବା କି ? ସେ ଶୈଶବରେ କିପରି ଥିଲା ତାହା ଜାଣି ପାରିବା କି ? ସେତେବେଳେ ତାର ହୃଦୟରେ ଘୃଣା ଓ ନିଷ୍ଠୁରତା ରହିଥିଲା କି ? ସେ ତାର ପରିବାରଠାରୁ ସ୍ନେହପୂର୍ଣ୍ଣ ସହାୟତା ପାଇଥିଲା କି ? ପ୍ରବଳ ଗୋଷ୍ଠୀର କ୍ଷମତାଶାଳୀ ଓ ପ୍ରତିପତ୍ତିଶାଳୀ ଅନ୍ୟ ଲୋକେ ତାର ହୃଦୟରେ ଆତ୍ମସମ୍ମାନ ଓ ନ୍ୟାୟଭାବର ଉଦ୍ରେକ କରିବାର ଅବସ୍ଥା ସୃଷ୍ଟି କରିଥିଲେ କି ?

ଏହି ପୁସ୍ତକର ପାଠକମାନଙ୍କ ମଧ୍ୟରୁ ଅନେକେ ସହଜରେ ଏ ପ୍ରକାର ପ୍ରଶ୍ନ ଉତ୍ଥାପନ କରିପାରନ୍ତି । ଜଣେ ପରିତେଜ୍ୟ ଲୋକର ମତିଗତି ବୁଝିବା ପାଇଁ ସେମାନେ ଏ ପ୍ରକାର ପ୍ରଶ୍ନର ଯୌକ୍ତିକତା ସହଜେ ଲକ୍ଷ୍ୟ କରିପାରିବେ । କିନ୍ତୁ ଜଣେ ଶ୍ୱେତକାୟ ପୁରୁଷ ବା ନାରୀର ପୂର୍ବଧାରଣା (Prejudice) କିମ୍ବା ନିଷ୍ଠୁର କାର୍ଯ୍ୟକୁ ହୃଦୟଙ୍ଗମ କରିବା ପାଇଁ ଆମ୍ଭେମାନେ ଠିକ୍ ସେହିପରି ପ୍ରସ୍ତୁତ କି ? କେତେକ ବର୍ଷ ପୂର୍ବେ ଯେତେବେଳେ ନ୍ୟୁଅର୍ଲିଅନସରେ ପ୍ରଥମେ କୃଷ୍ଣକାୟ ନିଗ୍ରୋବାଳକବାଳିକାମାନଙ୍କୁ ଶ୍ୱେତକାୟ ବାଳକବାଳିକାମାନଙ୍କ ସହିତ ବିଦ୍ୟାଳୟରେ ଏକତ୍ର ପଢ଼ିବାର ସ୍ଥିର କରାଗଲା, ସେତେବେଳେ ଶ୍ୱେତକାୟ ବାଳିକାଗଣ ଦଳବଦ୍ଧ ହୋଇ ବିଦ୍ୟାଳୟର ଦ୍ୱାରଦେଶରେ ନିଗ୍ରୋ ଛାତ୍ରଛାତ୍ରୀଙ୍କ ପ୍ରତି ବ୍ୟଙ୍ଗବିଦ୍ରୂପ କଲେ; ସେମାନଙ୍କ ପିତାମାତାଙ୍କ ଉପରକୁ ଛେପ ପକାଇଲେ ; ନିଗ୍ରୋବାଳକ ବାଳିକାଙ୍କୁ ଯେଉଁ କେତେଜଣ ଶ୍ୱେତକାୟ ସାହାଯ୍ୟ କରିବାକୁ ଚେଷ୍ଟା କଲେ, ସେମାନଙ୍କ ଉପରକୁ ଟେକାପଥର ଫିଙ୍ଗିଲେ; ସେମାନଙ୍କ ମତର ବିରୋଧୀମାନଙ୍କୁ କୁତ୍ସିତ ଭାଷାରେ ଗାଳିଦେଲେ । ଏହି ରମଣୀମାନଙ୍କର ବେଶଭୂଷା ନିତାନ୍ତ ଅସଂଯତ ଥିଲା ; ସେମାନଙ୍କ ଦୃଷ୍ଟିରେ ହିଂସତା ପରିଲକ୍ଷିତ ହେଉଥିଲା । ଦେଶ ମଧ୍ୟରେ ସେମାନଙ୍କ ପ୍ରତି ଯଥେଷ୍ଟ ନୈତିକ ଘୃଣା ପ୍ରକାଶ ପାଇଥିଲା । ଆମ୍ଭେମାନେ ପୁଣି ପ୍ରଶ୍ନ କରିପାରୁଁ—ଏହି ରମଣୀମାନଙ୍କର ପ୍ରଥମ ଜୀବନ କିପରି ଅବସ୍ଥା ମଧ୍ୟରେ ଗତ କରିଥିଲା, ସେଥିପ୍ରତି ଦୃଷ୍ଟିଦେଇପାରିବା କି ? ଶୈଶବରେ ଏମାନଙ୍କଠାରେ ଏହି ଘୃଣାଭାବ ଥିଲା କି ? ଜୀବନରେ ଏମାନେ ଭବିଷ୍ୟତର ସୁଖସ୍ୱପ୍ନ ଦେଖିଥିଲେ କି ? ଯେଉଁ ବିଦ୍ୱେଷମୂଳକ ମନୋଭାବ ଏମାନଙ୍କୁ ଘୃଣା କରିବାକୁ ଶିକ୍ଷା ଦେଇଥିଲା, ତାହାର ସୃଷ୍ଟି କିଅଣ ସେହିମାନେ କରିଥିଲେ ?

ଆମର କର୍ତ୍ତବ୍ୟ ହେଉଛି, ପ୍ରକୃତିର ବହୁ ଘଟନା ଲକ୍ଷ୍ୟ କରିବା । ସେ ଘଟନାଗୁଡ଼ିକ ଆମ୍ଭମାନଙ୍କୁ ଅପ୍ରୀତିକର ବୋଧ ହୋଇପାରେ ; କିନ୍ତୁ ସେଗୁଡ଼ିକୁ କେବଳ ଘଟନାଦୃଷ୍ଟିରୁ ନିରପେକ୍ଷଭାବରେ ଆମ୍ଭମାନଙ୍କୁ ଅଧ୍ୟୟନ କରିବାକୁ ହେବ । ଏଦିଗରେ ଟିକିଏ କୃତିତ୍ୱ ଆସିଲେ, ଆମର ଆସ୍ଥା ଜନ୍ମିବ ଯେ ଆମର ବିଶ୍ୱର ଅଜ୍ଞତା

ଓ ପକ୍ଷପାତିତାରୂପକ ମାନସିକଦୋଷଦ୍ୱାରା ଦୂଷିତ ହେବନାହିଁ ଏବଂ ଆମେମାନେ ନିଜ ମୂଲ୍ୟବୋଧର ପୁନଃପ୍ରତିଷ୍ଠା କରିପାରିବା । ଆମେମାନେ ଦୃଢ଼ଭାବରେ କହିପାରିବା—ଏମାନଙ୍କୁ ମୁଁ ଭଲପାଏଁ କିମ୍ବା ସେମାନଙ୍କୁ ମୁଁ ଘୃଣାକରେ । ତଥାପି ଅବସ୍ଥା ଓ ପ୍ରଣାଳୀ ବିଷୟରେ ମନୋଯୋଗ ଦେବା ବିଜ୍ଞତାର କାର୍ଯ୍ୟ ହେବ । କୌଣସି ଘଟଣା କିମ୍ବା କୌଣସି ସଂସ୍ଥାନ ପ୍ରତି ମନୋଯୋଗ ଦେବା ଅନାବଶ୍ୟକ । ଏହି ନୀତି ପାଳନ କରିବା ଅତ୍ୟନ୍ତ କଷ୍ଟକର । ବୟୋବୃଦ୍ଧି ସଙ୍ଗେ ଆମେମାନେ ଯେଉଁ କାର୍ଯ୍ୟ-କାରଣ-ସମ୍ବନ୍ଧ ସ୍ଥିର କରିବାର ନୀତି ଶିକ୍ଷା କରୁଁ, ତାହା ସାଧାରଣତଃ ଘଟଣାସହିତ ବ୍ୟକ୍ତିର ସମ୍ବନ୍ଧ ପ୍ରଦର୍ଶନରେ ଆବଦ୍ଧ । କେହି ନିୟମିତ ଭାବରେ ସମ୍ବାଦପତ୍ର ପଢ଼ୁଥିଲେ ନିଶ୍ଚୟ ଜାଣିଥିବ ଯେ ଜେମସ୍ ହଫା ( James Hoffa) ଟିମଷ୍ଟର ୟୁନିଅନ (Teamster Union) ଗଠନ କରି ତାହାକୁ ଅତ୍ୟାଗ୍ରହର ଗୋଟିଏ ଶକ୍ତିଶାଳୀ ଅସ୍ତ୍ରରେ ପରିଣତ କରିଅଛନ୍ତି । ଆମର ମୂଲ୍ୟବୋଧ ଅନୁସାରେ ଏହା ମଙ୍ଗଳଜନକ ହୋଇପାରେ କିମ୍ବା କ୍ଷତିକାରକ ହୋଇପାରେ । ମୋ ବିଶ୍ୱରରେ ପରିବହନ ବ୍ୟବସ୍ଥାର ଗଠନଗତ ଅବସ୍ଥା ବର୍ତ୍ତମାନ ଯାହା ଅଛି, ସେଥିରେ ପରିବହନ କର୍ମଚାରୀମାନଙ୍କର ମନୋଭାବକୁ ସହିତ କରିବାଦ୍ୱାରା ଯେ କୌଣସି ଅନୁଷ୍ଠାନ ଯଥେଷ୍ଟ ଶକ୍ତି ଅର୍ଜନ କରିପାରେ । ପୃଥିବୀରେ ଶୂନ୍ୟତାର (Physical Vacuum) ଯେପରି ଅସମ୍ଭବ, ଶକ୍ତିଗତ ଶୂନ୍ୟତା (Power Vacuum) ରହିବା ମଧ୍ୟ ସେହିପରି ଅସମ୍ଭବ । ଯଦି ଜେମସ୍ ହଫା ଟିମଷ୍ଟର ୟୁନିୟନର ନେତା ହୋଇନଥାନ୍ତେ, ତେବେ ଠିକ୍ ଅଭିନ୍ନ ନ ହେଲେହେଁ ତଦ୍ରୂପ ମନୋବୃତ୍ତିବିଶିଷ୍ଟ ଅନ୍ୟ କେହି ଜଣେ ଲୋକସାଧାରଣଙ୍କ ପ୍ରତି ଓ ପରିବହନ କମ୍ପାନୀମାନଙ୍କ ପ୍ରତି ଅନୁରୂପ ବ୍ୟବହାର ଦେଖାଉଥାଆନ୍ତା ।

ଏଥିରୁ ଅବଶ୍ୟ ବୁଝିବାକୁ ହେବନାହିଁ ଯେ ବ୍ୟକ୍ତିବିଶେଷଙ୍କ ମଧ୍ୟରେ କୌଣସି ପ୍ରଭେଦ ନାହିଁ । ଏହାର ଅର୍ଥ ଏହି ଯେ ମୁଖ୍ୟ ଆନୁଷ୍ଠାନିକ ଓ ବୃତ୍ତିଗତ ପ୍ରଭାବଦ୍ୱାରା କେତେକ ନିର୍ଦ୍ଦିଷ୍ଟ ସୀମା ମଧ୍ୟରେ ସେମାନଙ୍କର ଆଚରଣ ପ୍ରକାଶିତ ହୁଏ । ସେହି ଶକ୍ତିକୁ ଅସ୍ୱୀକାର କଲେ ତାହା ଲୋପ ପାଇ ନ ପାରେ । ଏପରି ଅସ୍ୱୀକାର କରିବାଦ୍ୱାରା ସମ୍ମୁଖରେ ବିଦ୍ୟମାନ ଘଟଣାକୁ ଆମର ବୁଝିବାର ଶକ୍ତି କେବଳ ହ୍ରାସ ପାଇବ ମାତ୍ର । ସଂଖ୍ୟା ଲବ୍ଧ ଓ ସଂଖ୍ୟାଗୁଡ଼ିକ ମଧ୍ୟରେ ଥିବା ସମ୍ବନ୍ଧକୁ ଅଧ୍ୟୟନ କରିବା ଆମର ଉଦ୍ଦେଶ୍ୟ । ସମାଜ କହିଲେ ସାମାଜିକ ସମ୍ବନ୍ଧକୁ ହିଁ ବୁଝାଏ । ତେଣୁ ଆମର ସାମାଜିକ ପ୍ରଥାରେ ଏହି ଦୁଇଟିର ସମ୍ବନ୍ଧ କିପରି ଦୃଢ଼ ଭାବରେ ସଂଶ୍ଳିଷ୍ଟ ତାହା ଆମମାନଙ୍କୁ ମନଯୋଗ ସହି ଲକ୍ଷ୍ୟ କରିବାକୁ ହେବ ।

# ସାମାଜିକ ସମସ୍ୟାର ସମାଜ ବିଜ୍ଞାନ

ପରସ୍ପରଠାରୁ ବିଶେଷ ପରିମାଣରେ ପାରସ୍ପରିକ ସହଯୋଗ ପ୍ରତ୍ୟାଶା କରିବା ସାମାଜିକ ଜୀବନର ଏକ ପ୍ରଧାନ ଲକ୍ଷଣ । ଏଥିରୁ ବୁଝିବାକୁ ହେବନାହିଁ ଯେ ସମାଜରେ ନାନା ସମସ୍ୟା, ସଂଘର୍ଷ ଓ ବିରୋଧ ଅଛିବୋଲି ଆମେ ଅସ୍ୱୀକାର କରୁଅଛୁ ; କିନ୍ତୁ ଏହିସବୁ ସମସ୍ୟା, ସଂଘର୍ଷ ଓ ବିରୋଧ ବିଚାର କଲାବେଳେ ସାମାଜିକ ବ୍ୟବସ୍ଥା ଦୃଷ୍ଟିରୁ ବିଚାର କରିବାକୁ ହେବ । ଏସବୁ ହେଉଛି ସାମାଜିକ ବ୍ୟବସ୍ଥାର ଆଂଶିକ ପରିଣତି । ଏହି କଥାଟି ଟିକିଏ ବିଶଦ୍ ଭାବରେ ବୁଝାଇ ଦେବା ଆବଶ୍ୟକ ମନେହୁଏ ।

ଏହା ସର୍ବବାଦୀ ସମ୍ମତ ଯେ, ସବୁ ସମାଜରେ କେତେକ ସମସ୍ୟା ରହିଥାଏ - ଖାଦ୍ୟାଭାବ, ରୋଗ, ପ୍ରାକୃତିକ ବିପର୍ଯ୍ୟୟ, ବ୍ୟକ୍ତି ବ୍ୟକ୍ତି ମଧ୍ୟରେ ସଂଘର୍ଷ ଇତ୍ୟାଦି । ଏଥିରେ ମତଦ୍ୱୈଧ ବା ଯୁକ୍ତିର ଅବକାଶ ନାହିଁ । ଆଧୁନିକ ଯୁଗର ଜଟିଳ ସମାଜମାନଙ୍କରେ କେତେକ ସମସ୍ୟାର କିଛିତ ହ୍ରାସ ଘଟିଅଛି । ତାହା ସଙ୍ଗେ ସଙ୍ଗେ କେତେକ ସମସ୍ୟାର ବୃଦ୍ଧି ମଧ୍ୟ ଘଟିଅଛି । କିନ୍ତୁ ସେମାନଙ୍କୁ ଏକ ଭିନ୍ନ ଧରଣର ସମସ୍ୟାର ସମ୍ମୁଖୀନ ହେବାକୁ ପଡ଼ୁଅଛି । ମରୁଡ଼ି ବା ବାତ୍ୟା ଫଳରେ କୌଣସି ଗୋଷ୍ଠୀର (Community) ଖାଦ୍ୟ ଶସ୍ୟ ବିନଷ୍ଟ ହୋଇଗଲେ ପ୍ରତ୍ୟେକ ହୁଏତ ସ୍ୱୀକାର କରିବେ ଯେ, ଏହା ଏକ ଦୈବ ଦୁର୍ବିପାକ । ଯଦି ସେମାନେ ଆହୁରି ଅଧିକ ଏକମତ ହୁଅନ୍ତି, ତେବେ ଏହାର ପ୍ରତିକାର ସ୍ୱରୂପ କହିପାରନ୍ତି—ଯେତେ ଯାନବାହାନ ଅଛି ସବୁ ପଠାଇ କ୍ଷତିଗ୍ରସ୍ତ ହୋଇ ନ ଥିବା ଅଞ୍ଚଳର ଗୋଷ୍ଠୀମାନଙ୍କଠାରୁ ଖାଦ୍ୟ ଶସ୍ୟ ଅଣାଯାଉ । ସେମାନଙ୍କର ସମସ୍ୟା ହେଉଛି ବିଧିଗତ (technical); ସାମାଜିକ ନୁହେଁ । ଏପରି ସ୍ଥଳରେ ପ୍ରଶ୍ନ ହେଉଛି, ଯେତେ ଯାନବାହାନ ମିଳିବ ସେତିକ ଯଥେଷ୍ଟ ହେବ କି ନା ? କିନ୍ତୁ ମନେକର, ଅଭାବଗ୍ରସ୍ତ ଅଞ୍ଚଳର କେତେକ ବାସିନ୍ଦା କହିଲେ, "ଖାଦ୍ୟାଭାବ ଗୋଟାଏ ସମସ୍ୟା ନୁହେଁ । ଏହା ଫଳରେ ଆମର ଆତ୍ମା ପବିତ୍ର ହେବ, ବା ଆମ ସ୍ୱାସ୍ଥ୍ୟର ଉନ୍ନତି ହେବ; ବା ଏହା ଈଶ୍ୱରଙ୍କର ଏକ ସଙ୍କେତ, ଏହାର ଅର୍ଥ ବୁଝିବାକୁ ହେବ, ଅନ୍ୟଠାରୁ ଖାଦ୍ୟ ଆଣିବାର ଚେଷ୍ଟା କଲେ ସେହି ସଙ୍କେତ ବୁଝି ହେବ ନାହିଁ ।" ଏପରି ବିଭିନ୍ନ ମତ ପ୍ରକାଶ ପାଇଲେ ଖାଲି ଖାଦ୍ୟାଭାବ ବୋଲି କୁହାଯିବ ନାହିଁ । ମୂଲ୍ୟ ବୋଧରେ ବିରୋଧ ଜାତ ହେଲା ବୋଲି କହିବାକୁ ହେବ । ଖାଦ୍ୟାଭାବ ସଙ୍ଗେ ଗୋଟିଏ ସାମାଜିକ ସମସ୍ୟାର ଉଦ୍ଭବ ହେଲା । କିମ୍ବା ମନେକର, ସମସ୍ତେ ସ୍ୱୀକାର କଲେ ଯେ ଖାଦ୍ୟାଭାବ ଏକ ଗୁରୁତର ସମସ୍ୟା, କିନ୍ତୁ ନିକଟବର୍ତ୍ତୀ ସ୍ୱଚ୍ଛଳ ଗୋଷ୍ଠୀଠାରୁ ଖାଦ୍ୟଦ୍ରବ୍ୟ ଆଣିବା ଉଚିତ୍ ନୁହେଁ

ସେମାନେ କହିପାରନ୍ତି, "ଆମେ ବରଂ ଖାଇବାକୁ ନ ପାଉଁ; କିନ୍ତୁ ସେମାନଙ୍କଠାରୁ ଖାଦ୍ୟ ଆଣିବା ନାହିଁ । ଆମେ ବରଂ ଏହିପରି କଷ୍ଟରେ ଚଳିବା, ମାତ୍ର ଆଉ ଋଣ-ଗ୍ରସ୍ତ ହେବା ନାହିଁ ।" ଏହା ହେଉଛି, ଏକ ଭିନ୍ନ ପ୍ରକାର ମୂଲ୍ୟବୋଧର ସଂଘର୍ଷ—ଲକ୍ଷ୍ୟ ବିଷୟରେ ମତୈକ୍ୟ ଥିଲେହେଁ ସାଧନ ବା ଉପାୟ ବିଷୟରେ ମତର ଅନୈକ୍ୟ ପରିଲକ୍ଷିତ ହୁଏ ତଥାପି ଏହା ଗୋଟିଏ ସାମାଜିକ ସମସ୍ୟା, କେବଳ ବୃତ୍ତିଗତ ( echnical) ସମସ୍ୟା ନୁହେ । ଏଠାରେ ମୌଳିକ ଗାତ ହେଲା ଯେ ସାମାଜିକ ସମସ୍ୟାର ଉତ୍ପତ୍ତି ସ୍ଥଳ ହେଉଛି ସମାଜ, ଅର୍ଥାତ୍ ଏହାର ମୂଳରେ ଗୋଷ୍ଠୀର ସଭ୍ୟମାନଙ୍କ ମଧ୍ୟରେ ଲକ୍ଷ୍ୟ ବା ଉପାୟ ବା ଏ ଉଭୟ ବିଷୟରେ ମତ-ଭେଦ ଥାଏ । [୧]

ଆପଣମାନେ ମନେକରି ପାରନ୍ତି ଯେ ମୁଁ ଯେଉଁ ଉଦାହରଣଟି ଦେଲି, ତାହା ନିତାନ୍ତ ଅସମ୍ଭବ; ତେଣୁ ଏହାର କିଛି ସାର୍ଥକତା ନାହିଁ । ଆପଣ ଏହାଠାରୁ ଅଧିକ ବାସ୍ତବ କୌଣସି ସଦୃଶ ଘଟନା କଳ୍ପନା କରିପାରୁଛନ୍ତି କି ? ଉଦାହରଣ ସ୍ୱରୂପ ମୁଁ କହିପାରେଁ, "ଆଜିକାଲି ଆମେରିକାରେ ବେକାର ସମସ୍ୟା ବିଷୟରେ ଲକ୍ଷ୍ୟ ଓ ଉପାୟ ଏ ଉଭୟ କଥା ନେଇ ମତର ଅନୈକ୍ୟ ଦେଖାଯାଉ ନାହିଁକି ?" କେତେକ ଲୋକ (ଭାଷାରେ ନ ହେଲେ ମଧ୍ୟ ଅନ୍ତତଃ କାର୍ଯ୍ୟରେ) କହନ୍ତି "ବେକାର ଅବସ୍ଥା ଗୋଟାଏ ନିତାନ୍ତ ଖରାପ କଥା ନୁହେଁ । ଏହି ଦ୍ୱାରା ବେକାର-ମାନେ ଉଦ୍ୟମୀ ହୁଅନ୍ତି; ଶ୍ରମିକ ଶକ୍ତି ଏହା ଫଳରେ ନମନୀୟ ଅବସ୍ଥାରେ ରହନ୍ତି; ଏହା ମୁଦ୍ରାସ୍ଫୀତି ଗ୍ରୃପକୁ ହ୍ରାସ କରେ, ଯେଉଁମାନଙ୍କର ପ୍ରେରଣା ଶକ୍ତିର (initiative ) ଅଭାବ, ଏହା କେବଳ ସେହିମାନଙ୍କର କ୍ଷତି କରେ ।" ହୁଏତ ଅଧିକାଂଶ ଲୋକ ଏହି ମତକୁ ଗ୍ରହଣ କରି ନ ପାରନ୍ତି; କିନ୍ତୁ ଯେତେଦିନ ଯାଏ କେତେକ ଲୋକ, ବିଶେଷତଃ ପ୍ରଭାବଶାଳୀ ଲୋକ ଏହି ମତରେ ବିଶ୍ୱାସ କରୁଥିବେ, ସେତେଦିନଯାଏ ବେକାର ସମସ୍ୟାକୁ କେବଳ ଗୋଟାଏ ବୃତ୍ତିଗତ (technical)

---

[୧] ରବର୍ଟ ମେଟନ ଓ ରବର୍ଟ ନିସବେଟଙ୍କ ଦ୍ୱାରା ସମ୍ପାଦିତ Contemporary Social problems (ସମସାମୟିକ ସାମାଜିକ ସମସ୍ୟା) ପୁସ୍ତକର ୭୦୪-୭୧୫ ପୃଷ୍ଠାରେ ରବର୍ଟ ମେଟନ ଏ ସମ୍ପର୍କରେ ଟିକିଏ ଭିନ୍ନମତ ପୋଷଣ କରିଅଛନ୍ତି ।

ସମସ୍ୟା ବୋଲି କହିହେବ ନାହିଁ କି ଗୋଟାଏ ସର୍ବଜନସମ୍ମତ ଲକ୍ଷ୍ୟ ସାଧନ ନିମନ୍ତେ ଉପାୟର ଅଭାବ ବୋଲି କହିହେବ ନାହିଁ । ଏହାଛଡ଼ା ଏ ପ୍ରଶ୍ନ ସହିତ "ମୂଲ୍ୟବୋଧର ସଂଘର୍ଷ" ଜଡ଼ିତ ଅଛି [୨]।

କୌଣସି ବ୍ୟବସ୍ଥା ଅବାଞ୍ଛନୀୟ ବୋଲି କହିଲାବେଳେ ସାଧାରଣତଃ ମତୈକ୍ୟ ଦେଖାଯାଏ ; କିନ୍ତୁ ତାହାର ପ୍ରତିକାର ବିଷୟରେ ମତର ପାର୍ଥକ୍ୟ ଅଧିକ ହୋଇଥାଏ । ସମାଜର ଗୋଟିଏ ଦିଗରୁ ଯେଉଁ ଅସୁବିଧା ଦେଖାଯାଏ ତାହା ସହିତ ଅନ୍ୟ ସାମାଜିକ ମୂଲ୍ୟବୋଧ ଓ କର୍ମପଦ୍ଧତି ଜଡ଼ିତ ଥାଏ । ତେଣୁ ମତଭେଦର ପରିମାଣ ଅତିମାତ୍ରାରେ ବୃଦ୍ଧି ପାଏ । ଯଦି ରୋଗ ଅପେକ୍ଷା ତାହାର ପ୍ରତିକାର ଅଧିକ କ୍ଷତିକାରକ ହୁଏ, ତେବେ କେହି ଚିକିତ୍ସକର ସାହାଯ୍ୟ ଲୋଡ଼େ ନାହିଁ । ଏହି ନୀତିରେ କେତେକେ କହି ପାରନ୍ତି – ବେକାର ସମସ୍ୟା କ୍ଷତିକାରକ ; କିନ୍ତୁ ଏହି କ୍ଷତି କମାଇବା ପାଇଁ ଯଦି ଶିକ୍ଷାଦିଗରେ ଅଧିକ ବ୍ୟୟ କରିବାକୁ ପଡ଼େ, କିମ୍ବା କାରିଗର କୌଶଳର ସ୍ତର ଉନ୍ନତ କରିବାପାଇଁ ଶିକ୍ଷା ଦେବାର ଅତିରିକ୍ତ ବ୍ୟୟ ହୁଏ ; ଲୋକହିତକର କାର୍ଯ୍ୟ (**Public works**) ପାଇଁ କିମ୍ବା ସଂଖ୍ୟାଲଘୁ ଗୋଷ୍ଠୀର ଶ୍ରମିକମାନଙ୍କ ଉପରୁ ପ୍ରତିବନ୍ଧକ (କଟକଣା) ଦୂର କରିବାପାଇଁ ଅଧିକ ବ୍ୟୟ ହୁଏ ଓ ଫଳରେ ଆମ ଦେଶର ଆୟବ୍ୟୟରେ ସମତା ନରହେ ତେବେ ବରଂ ବେକାର ସମସ୍ୟା ସେହିପରି ରହିଥିବା ଶ୍ରେୟସ୍କର । ଏଠାରେ ଲକ୍ଷ୍ୟ କରିବାକୁ ହେବ ଯେ, ଏହି ସବୁ ବୈକଳ୍ପିକ ପ୍ରତିକାରମାନଙ୍କ ମଧ୍ୟରେ ପ୍ରତ୍ୟେକଟି ସହିତ ମୂଲ୍ୟବୋଧ ଓ ଅନୁଷ୍ଠାନର ସମ୍ପର୍କ ଅଛି । ବିଭିନ୍ନ ପ୍ରତିକାରର ପରିଣତି ସମ୍ବନ୍ଧରେ ଆମ୍ଭମାନଙ୍କ ଜ୍ଞାନର ଯଥେଷ୍ଟ ଅଭାବ ଥିବା ହେତୁରୁ ଉପାୟ ସମ୍ବନ୍ଧରେ ଏତେ ମତଭେଦ ଦେଖାଯାଏ । ଆମର ଶିକ୍ଷାପଦ୍ଧତିର ଉନ୍ନତି ବିଧାନ ଲାଗି ଯଦି ଗୋଟାଏ ବିରାଟ

---

[୨] ରିଚ୍ଚାର୍ଡ ସି· ଫୁଲ୍ଲରଙ୍କ '**Sociological Theory and Social Problems**" ( (ସାମାଜିକ ବିଜ୍ଞାନ ବିଷୟକ ମତବାଦ ଓ ସାମାଜିକ ସମସ୍ୟା) ନାମକ ପତ୍ରିକାରେ ୧୯୩୭ ମସିହା ମେ ମାସର ସଂଖ୍ୟାର ପ୍ରକାଶିତ '**Social forces**' (ସାମାଜିକ ଶକ୍ତି) ପ୍ରବନ୍ଧରେ ସାମାଜିକ ସମସ୍ୟା ସାଧନର ପନ୍ଥା ସମ୍ପର୍କରେ ଏହି (**Values in conflict**) 'ମୂଲ୍ୟବୋଧର ସଂଘର୍ଷ ପଦଟିର ବିଶେଷ ଆଲୋଚନା କରାଯାଇଅଛି । ଆହୁରି ମଧ୍ୟ '**American Sociological Review**' ପତ୍ରିକାର ୧୯୪୧ ମସିହା ଫେବୃୟାରି ସଂଖ୍ୟାରେ ପ୍ରକାଶିତ ରିଚ୍ଚାର୍ଡ ସି· ଫୁଲ୍ଲର ଓ ରିଚ୍ଚାର୍ଡ ସି· ମାୟାର୍ସଙ୍କ ଲିଖିତ '**Some aspects of a theory of Social problems**' (ସାମାଜିକ ସମସ୍ୟା ବିଷୟକ ମତବାଦର କେତୋଟି ଦିଗ) ପ୍ରବନ୍ଧରେ ଏହା ଆଲୋଚିତ ହୋଇଅଛି ।

ଉଦ୍ୟମ କରାଯାଏ, ତେବେ ବେକାର ସମସ୍ୟା ଉପରେ ତାର କି ସାମୂହିକ ସୁଦୂରବର୍ତ୍ତୀ ପରିଣତି ଘଟିବ ତାହା କେହି ପରୀକ୍ଷା କରି ଦେଖାଇ ପାରିବ ନାହିଁ । ଯଦି ଆମର ଜ୍ଞାନ ଅଧିକ ହୋଇଥାଆନ୍ତା, ତେବେ ଆମେ କମ୍ ଯୁକ୍ତି କରନ୍ତୁ । ତେଣୁ ଗୋଟିଏ ଉନ୍ନତ ସମାଜବିଜ୍ଞାନ ଦ୍ୱାରା ଆମ୍ଭମାନଙ୍କ ସାମାଜିକ ସମସ୍ୟାମାନଙ୍କର ହ୍ରାସ ଘଟିପାରେ । କେତେକ ମତାନୈକ୍ୟର ମୂଳରେ ଯେ ମୂଲ୍ୟବୋଧର ବିରୋଧ ବିଦ୍ୟମାନ, ଏହା ନିଶ୍ଚିତ । ଏ ପ୍ରକାର ପ୍ରଶ୍ନର ସମାଧାନ ହୋଇ ନପାରେ । କିନ୍ତୁ ବିଭିନ୍ନ ମତବାଦୀଙ୍କ ଝଣାଓଟର ମଧ୍ୟରେ ଏହା ସହିତ ସଂଗ୍ରାମ କରିବାକୁ ପଡ଼ିଥାଏ । ସମାଧାନ ପାଇଁ ଯେଉଁସବୁ ପ୍ରସ୍ତାବ କରାଯାଏ, ତାହା ଅଳ୍ପକାଳ ସ୍ଥାୟୀ ହୁଏ, କାରଣ କାଳକ୍ରମେ ଏଥିରେ ନୂତନ ପ୍ରଶ୍ନ ପ୍ରବେଶ କରେ ଓ ପୂର୍ବତନ ପ୍ରସ୍ତାବମାନଙ୍କର ଫଳ ଅନୁଭୂତ ହୁଏ । ସମୟର ଗତିରେ ମୂଲ୍ୟବୋଧ ବିଷୟରେ ଅଧିକ ପରିମାଣରେ ମତୈକ୍ୟ ଘଟିପାରେ । ହୁଏତ ମୂଲ୍ୟବୋଧର ପ୍ରଥମ ସଂଘର୍ଷ କେବଳ କୌଣସି ବିଶିଷ୍ଟ ଅନୁଭୂତିର ଫଳରୁ ହେତୁ ଘଟିଥିଲା । ଜନସମୂହର ବିଭିନ୍ନ ଅଂଶ ସମସ୍ୟାର ସମାଧାନ ପାଇଁ ଯେତିକି ଚେଷ୍ଟିତ ହେଉଥିବ, ମୂଲ୍ୟବୋଧର ପରିମାପରେ ସେତିକି ପରିବର୍ତ୍ତନ ଘଟୁଥିବ ଏବଂ ଫଳତଃ ବିରୋଧର କ୍ଷେତ୍ର ସଙ୍କୁଚିତ ହୋଇ ଆସୁଥିବ ।

ସଂଖ୍ୟାଲଘୁ-ସଂଖ୍ୟାଗୁରୁ ମଧ୍ୟରେ ସମ୍ବନ୍ଧ, ସଂଖ୍ୟାଲଘୁଙ୍କ ପୃଥକ୍‌କରଣ ଓ ଏହାର ପରିପ୍ରକାଶ ରୂପକ ଭେଦଭାବ (discriminuation) ବିଷୟମାନଙ୍କର ଆଲୋଚନାରେ ମଧ୍ୟ ଉପର୍ଯ୍ୟୁକ୍ତ ନୀତିଗୁଡ଼ିକ ପ୍ରଯୁଜ୍ୟ । ପ୍ରାୟ ସମସ୍ତେ ସ୍ୱୀକାର କରନ୍ତି ଯେ "ସାମାଜିକ ଆଦର୍ଶ ଓ ବାସ୍ତବ ସାମାଜିକ ଅବସ୍ଥା ମଧ୍ୟରେ ଗୋଟାଏ ଲକ୍ଷଣୀୟ ପ୍ରଭେଦ" ଦେଖାଯାଏ । ସାମାଜିକ ସମସ୍ୟାର ସଂଜ୍ଞା ପ୍ରସଙ୍ଗରେ ଉପଯୁକ୍ତ ମର୍ଟନ ଏହା କହିଅଛନ୍ତି [ଓ] । କିନ୍ତୁ ଏହି ପ୍ରଭେଦର କାରଣ ଓ ପ୍ରତିକାର ସମ୍ବନ୍ଧରେ ଘୋର ମତଭେଦ ଦେଖାଯାଏ । କେତେକେ କହନ୍ତି, "ସଂଖ୍ୟାଲଘୁ ଗୋଷ୍ଠୀର ପୃଥକ୍‌କରଣ ମନ୍ଦ ନୁହେଁ, ବରଂ ଭଲ । ଆଜିକାଲି ଯେଉଁ ଗୋଳମାଳ ଘଟୁଛି, ତାର କାରଣ ଏହି ଯେ ନିଗ୍ରୋଙ୍କ ଭଳି ଏକ ସଂଖ୍ୟାଲଘୁ ଗୋଷ୍ଠୀ ସମାଜରେ ସେମାନଙ୍କର ସ୍ଥାନ କେଉଁଠି ତାହା ଭୁଲିଯାଇ ଆନ୍ଦୋଳନକାରୀଙ୍କ ଉତ୍ତେଜନାରେ ପ୍ରଲୁବ୍ଧ ହୋଇ ଅଯଥା ଦାବୀ କରି ବସୁଛନ୍ତି । ଅଥଚ ଅନ୍ୟମାନଙ୍କର ଦୃଢ଼ ବିଶ୍ୱାସ ଯେ ପୃଥକ୍‌କରଣ ବ୍ୟବସ୍ଥା ଅନୁଚିତ ଓ ଏହାଦ୍ୱାରା ଶତଶତ ଅନ୍ୟ ସମସ୍ୟାର ଉତ୍ପତ୍ତି ହେଉଅଛି ।

[ଓ] ରବର୍ଟ ମର୍ଟନଙ୍କ 'Contemporary social Problem' (ସମସାମୟିକ ସାମାଜିକ ସମସ୍ୟା) ପୁସ୍ତକର ପୃ୭୦୧ସ୍ଥା ।

ଯେଉଁମାନେ ଶେଷୋକ୍ତ ଅଭିମତ ପୋଷଣ କରନ୍ତି, ସେମାନଙ୍କ ଭିତରେ ଏହାର ପ୍ରତିକାର ବିଷୟରେ ମଧ୍ୟ ମତଭେଦ ଥାଇପାରେ । ତେବେ କି ପ୍ରତିକାର କରାଯାଇପାରେ ? ଶିକ୍ଷା ଓ ଲୋକଙ୍କ ସଦ୍‌ବୁଦ୍ଧି ଉପରେ ନିର୍ଭର କରି ରହିବା କି ? ଆଇନର ପ୍ରୟୋଗ କରି ଲୋକଙ୍କୁ ବାଧ୍ୟ କରିବା ଓ ସେଥିପାଇଁ ପ୍ରହରୀ ନିଯୁକ୍ତ କରିବା ଉଚିତ ହେବ କି ? ଏହିପରି ବିଭିନ୍ନ ମତ ବାହାରି ପାରେ ।

ଏହିସବୁ ଦିଗରୁ ଦେଖାଯିବ ଯେ ସଂଖ୍ୟାଲଘୁଗୋଷ୍ଠୀର ଆଲୋଚନା ହେଉଛି, ଗୋଟିଏ ସାମାଜିକ ସମସ୍ୟାର ଆଲୋଚନା । ଏହାକୁ ବୁଝିବାକୁ ହେଲେ ସମାଜର କାର୍ଯ୍ୟକଳାପକୁ ପରୀକ୍ଷା କରି ମନୁଷ୍ୟର କର୍ମକ୍ଷେତ୍ରରେ ମୂଲ୍ୟବୋଧର ସ୍ଥାନ ନିର୍ଦ୍ଦେଶ କରିବାକୁ ହେବ । ସମସ୍ୟାଠାରୁ ଦୂରରେ ରହି ପରସ୍ପରବିରୋଧୀ ଶକ୍ତି ଓ ସମ୍ପୃକ୍ତ ସାମାଜିକ ସଂଗଠନକୁ ଅଧ୍ୟୟନ କରିବା ଆମର ପ୍ରଥମ କାର୍ଯ୍ୟ ହେବ । ତାହାହେଲେ ଆମେ ନିଜର ମୂଲ୍ୟବୋଧକୁ ସରଳଭାବରେ ପ୍ରକାଶ କରିପାରିବା ଓ ସେହି ଲକ୍ଷ୍ୟସାଧନ ନିମନ୍ତେ କି ପ୍ରକାର କାର୍ଯ୍ୟ ଉତ୍କୃଷ୍ଟ ଫଳଦାୟକ ହେବ ତାହା ବାହାର କରିପାରିବା ।

---

# ଦ୍ୱିତୀୟ ଅଧ୍ୟାୟ

## ସାମାଜିକ ସ୍ତରୀକରଣ

### ସଂଖ୍ୟାଲଘୁ ସଂଖ୍ୟାଗୁରୁ ସମ୍ପର୍କର ଭିତ୍ତି

ଦୁଇଜଣ ଲୋକଙ୍କର ସମ୍ପ୍ରଦାୟ ହେଉ, ବା ଦୁଇ କୋଟି ଲୋକଙ୍କର ସମ୍ପ୍ରଦାୟ ହେଉ, ସମ୍ପ୍ରଦାୟ ସମ୍ପ୍ରଦାୟ ମଧ୍ୟରେ ସାମାଜିକ ବିଭେଦ ଦେଖିବାକୁ ମିଳିବ । ସମ୍ପ୍ରଦାୟ ମଧ୍ୟରେ ବ୍ୟକ୍ତିମାନଙ୍କର ଭିନ୍ନ ଭିନ୍ନ ସ୍ଥାନ ଅଛି, ବିଭିନ୍ନ ଅଧିକାର ଓ ଦାୟିତ୍ୱ ଅଛି ଏବଂ ସାମ୍ପ୍ରଦାୟିକ କାର୍ଯ୍ୟରେ ବିଭିନ୍ନ ପ୍ରକାରର ପ୍ରଭାବ ରହିଅଛି । ଅନେକ ସ୍ଥଳରେ ଏହି ବିଭିନ୍ନତା ଏକ ପ୍ରକାର ଶ୍ରେଣୀ ବିଭାଗ ଆକାରରେ ପ୍ରକାଶ ପାଇଥାଏ । ବ୍ୟକ୍ତିମାନେ କେବଳ ପରସ୍ପରଠାରୁ ଭିନ୍ନ ନୁହନ୍ତି ; କେହି ଉଚ୍ଚ କେହି ନୀଚ, କେହି ଜମିଦାର, କେହି ପ୍ରଜା, କେହି ସରଦାର ବା କେହି ରେଡ୍‌-ଇଣ୍ଡିୟାନ୍ । ଏହି ଶ୍ରେଣୀବିଭାଗ ଦୀର୍ଘକାଳ ଚାଲିଲା ପରେ କେତେଗୁଡ଼ିଏ ଅନୁଷ୍ଠାନ-ଗତ ପ୍ରଥା (ଚଳଣି)ର ସୃଷ୍ଟି ହୁଏ ଏବଂ ତାହା ସମ୍ପ୍ରଦାୟର ଲୋକମାନଙ୍କ ବ୍ୟକ୍ତିତ୍ୱକୁ ବିଶେଷ ଭାବରେ ପ୍ରଭାବିତ କରେ । ସେତେବେଳେ ଆମ୍ଭେମାନେ ଗୋଟିଏ ନିର୍ଦ୍ଦିଷ୍ଟ ସାମାଜିକ ବିଭେଦ ବିଷୟ କହୁଁ । ଏହାହିଁ ହେଉଛି ସ୍ତରୀକରଣ ।

ପାରିଭାଷିକ ଭାବରେ କହିବାକୁ ଗଲେବେଳେ ଯେଉଁଠାରେ ଶ୍ରେଣୀ ବିଭାଗ ଅନ୍ତତଃ ଏକ ପୁରୁଷ ହେଲା ଚାଲି ଆସୁଛି ଓ ଯେଉଁଠାରେ ଏହି ବିଭାଗ ଲୋକମାନଙ୍କ ସନ୍ତାନ-ସନ୍ତତିଙ୍କ ଉପରେ ପ୍ରବର୍ତ୍ତି ଅଛି, କେବଳ ସେହିଠାରେ ଆମ୍ଭେ ସାମାଜିକ ସ୍ତରୀକରଣର ଉଲ୍ଲେଖ କରିବୁ । ଅନେକ ମାନବିକ ସମ୍ପର୍କ ସହିତ କ୍ଷମତା ଓ ପଦମର୍ଯ୍ୟାଦାର ପ୍ରଭେଦ ଜଡ଼ିତ ଥାଏ । ଅବଶ୍ୟ ଏହି କ୍ଷମତା ଓ ପଦମର୍ଯ୍ୟାଦା ଅଳ୍ପକାଳ ସ୍ଥାୟୀ, ଏପରି କି କ୍ଷଣିକ ବୋଲି କୁହାଯାଇ ପାରେ । ବ୍ରିଜ୍ ଖେଳରେ

ଯାହାର ଡାକ ସର୍ବୋଚ୍ଚ ହୁଏ, ସେ ଖେଳର ରୁରୁପ ସ୍ଥିର କରି ସାଧାରଣତଃ ସେ ବାଜକ ପାଇଁ ପ୍ରାଧାନ୍ୟ ଦେଖାଏ । ଏହା ଯେପରି କ୍ଷଣିକ, କ୍ଷମତା ଓ ପଦ-ମର୍ଯ୍ୟାଦାର ପ୍ରଭେଦ ମଧ୍ୟ ସେହିପରି କ୍ଷଣିକ ।

ଅନ୍ୟ ପକ୍ଷରେ ବିଦ୍ୟାଳୟ ଭଳି କେତେକ ସ୍ଥଳରେ ଏହି ପ୍ରଭେଦ କେତେକ ବର୍ଷ ପାଇଁ ରହିପାରେ । ଜ୍ଞାନର ଆଧିକ୍ୟ ହେତୁ ଶିକ୍ଷକ ବିଦ୍ୟାଳୟରେ ନେତୃ-ସ୍ଥାନ ଅଧିକାର କରନ୍ତି ; କିନ୍ତୁ ଏଠାରେ ଲକ୍ଷ୍ୟ ହେଉଛି, କ୍ରମଶଃ ଶିକ୍ଷକ ଓ ଛାତ୍ର ମଧ୍ୟରେ ଥିବା ତାରତମ୍ୟକୁ ଦୂର କରିବା । ଯେଉଁ ସ୍ଥଳରେ ସମାଜରେ ବ୍ୟକ୍ତିର ଆସନ ନିର୍ଦ୍ଦିଷ୍ଟ ଥାଏ ଏବଂ ଅନେକ ପରିମାଣରେ ବଂଶାନୁଗତ ହୋଇଥାଏ, ସେଠାରେ ଯେଉଁ ପ୍ରଭେଦ ଦେଖାଯାଏ, ତାହାର ପରିଣାମ ବିଦ୍ୟାଳୟର ଶିକ୍ଷକ ଛାତ୍ର ମଧ୍ୟରେ ଥିବା ଭେଦର ପରିଣାମଠାରୁ ଭିନ୍ନ । ବ୍ରୀଜ୍ ଖେଳରେ ଯଦି ଜଣେ ଲୋକ ସବୁବେଳେ ରୁରୁପ ଡାକୁଥାନ୍ତା, ତେବେ ଖେଳ ସମ୍ପୂର୍ଣ୍ଣ ଭିନ୍ନ ପ୍ରକାରର ହୋଇଥାନ୍ତା ଓ ଖେଳର ନିୟମ ପରିବର୍ତ୍ତନ କରିବା ପାଇଁ ଗୋଟିଏ ବିପ୍ଳବ ଆବଶ୍ୟକ ହୋଇଥାନ୍ତା ।

ସମାଜ ମଧ୍ୟରେ ଶ୍ରେଣୀ ବିଭାଗ ଏକାଧିକ ପୁରୁଷ ଧରି ଗ୍ଲଲେ କେବଳ ଯେ ବ୍ୟକ୍ତି ବିଶେଷଙ୍କ କ୍ରିୟାପ୍ରତିକ୍ରିୟା ମଧ୍ୟରେ ତାର ପରିପ୍ରକାଶ ଘଟେ, ତାହାନୁହେଁ । ସେପରି ହୋଇଥିଲେ, ବ୍ୟକ୍ତି ବିଶେଷଙ୍କ ମୃତ୍ୟୁ ସଙ୍ଗେ ଶ୍ରେଣୀ ବିଭାଗର ଲୋପ ହୁଅନ୍ତା । ସାମାଜିକ ସ୍ତରୀକରଣ କେତେକ ସମ୍ପ୍ରଦାୟର ବିଶେଷତଃ ସମାଜର ଗୋଟିଏ ପ୍ରକୃତ । ପ୍ରଧାନତଃ ପରିବାର ପ୍ରଥାଦ୍ୱାରା ଏହା ଏକ ପୁରୁଷରୁ ଅନ୍ୟ ପୁରୁଷକୁ ଯାଏ । ଏଥିରେ ପ୍ରତ୍ୟେକ ବ୍ୟକ୍ତିର ଆସନ ନିର୍ଦ୍ଧାରିତ ହୋଇଥାଏ । ଅଧିକାଂଶ ସମାଜ ହେଉଛି ସ୍ତରୀକୃତ (Stratified) ସମାଜ । ଏ ପ୍ରକାର ସମାଜରେ ଶିଶୁଟିଏ ଜନ୍ମ ହେବା ପୂର୍ବରୁ ମଧ୍ୟ ସମାଜର କେଉଁ ସ୍ତରରେ ତାହାର ସ୍ଥାନ ହେବ, ତାହା ଜଣା ପଡ଼ିଥାଏ । ଅବଶ୍ୟ ଏହାର ଅର୍ଥ ନୁହେଁ ଯେ ସେ ସେହି ସ୍ତରରେ ନିଶ୍ଚୟ ରହିବ ବୋଲି ଜଣା ଯାଇଥାଏ । ମୋର ମନେହୁଏ ଓ ଆପଣମାନେ ମଧ୍ୟ ମନେ କରିବେ ଯେ ଏପରି ସ୍ତରୀକରଣ ଅନ୍ୟାୟ । କିନ୍ତୁ ଏଭଳି ଏକ ସାମାଜିକ ବ୍ୟବସ୍ଥାରେ କି କି ନୈତିକ ସମସ୍ୟା ଜଡ଼ିତ ଅଛି ତାହା ଜାଣିବାକୁ ହେଲେ ଆମ୍ଭେମାନେ ଏହାର ପ୍ରକାର ଭେଦ, ଏହାର କାରଣ ଓ ପରିଣାମ ବିଷୟ ଉତ୍ତମରୂପେ ଜାଣିବା ଉଚିତ୍ । କେତେକ ଲୋକ ତିନି ବର୍ଷରେ, କେତେକ କୋଡ଼ିଏ ବର୍ଷରେ, ଆଉକେତେକ ପଞ୍ଚାଳିଶ ବର୍ଷରେ କର୍କଟ ରୋଗରେ ଆକ୍ରାନ୍ତ ହେବା ଯେଉଁ ଅର୍ଥରେ ଗୋଟିଏ ଅନ୍ୟାୟ, ସାମାଜିକ ସ୍ତରୀକରଣ ସେହିପରି ଅର୍ଥରେ

ଅନ୍ୟାୟ୍ୟ ବୋଲି ବୁଝାଯାଇପାରେ । ସାମାଜିକ ସ୍ତରୀକରଣକୁ ଗୋଟିଏ ପ୍ରାକୃତିକ ଘଟଣାର ପେ ଗ୍ରହଣ କରି ଏହା ସହିତ ସଂଶ୍ଳିଷ୍ଟ ସାମାଜିକ ଓ ବ୍ୟକ୍ତିଗତ ପ୍ରଭାବକୁ ବୁଝିବାକୁ ଚେଷ୍ଟା କଲେ ଆମ୍ଭେମାନେ ଏହାର କୁ-ପରିଣାମକୁ କେତେକ ପରିମାଣରେ ଦମନ କରିପାରିବା ।

ଏଠାରେ ଯେଉଁସବୁ ପ୍ରଭେଦ ଦେଖାଇ ଦିଆଗଲା, ତଦନୁସାରେ ଆମ୍ଭେମାନେ ସମ୍ପ୍ରଦାୟମାନଙ୍କୁ ନିମ୍ନଲିଖିତ ମତେ ବିଭାଗ କରିପାରୁ ।

୧ । ଯେଉଁ ସମ୍ପ୍ରଦାୟମାନଙ୍କରେ ସମସ୍ତଙ୍କର ଏକାଭଳି କାର୍ଯ୍ୟ ଓ ଆସନ ଥାଏ, ଯଥା—କୌଣସି କ୍ଷୁଦ୍ର ବନ୍ଧୁ ସମାଜ । ଏଭଳି ସମ୍ପ୍ରଦାୟରେ ମଧ୍ୟ ସାଧାରଣତଃ ସାମାନ୍ୟ ପ୍ରଭେଦ ଥାଏ ।

୨ । ଯେଉଁ ସମ୍ପ୍ରଦାୟମାନଙ୍କରେ ଭେଦଭାବ ଥାଏ ।

(କ) ଯହିଁରେ ପ୍ରଭେଦର କୌଣସି ସ୍ତର ନ ଥାଏ । ଯଥା ଶ୍ରମିକ ଦଳ, ବା ଖେଳାଳି ଦଳ । ଏଥିରେ ପ୍ରତ୍ୟେକର ସ୍ଥାନ ଭିନ୍ନ ହୋଇପାରେ । ଏଭଳି ସମ୍ପ୍ରଦାୟରେ ଅନେକ ସମୟରେ ଶ୍ରେଣୀ ବିଭାଗ ଆପେ ଆପେ ଗଢ଼ି ଉଠେ ; କିନ୍ତୁ ଏ ଶ୍ରେଣୀ ବିଭାଗ ନିୟମାବଦ୍ଧ ନୁହେଁ ।

(ଖ) ଯହିଁରେ ପ୍ରଭେଦର ସ୍ତର ଥାଏ । ଏହାର ଦୁଇଟି ଉପବିଭାଗ ଅଛି ।

(୧) "ସାମୟିକ" (ଯଥା—ଗୁରୁ ଶିଷ୍ୟ ସମ୍ବନ୍ଧ କିମ୍ବା ନିର୍ବାଚିତ କର୍ମଚାରୀଙ୍କ ସମ୍ପ୍ରଦାୟ) ।

(୨) "ଚିରସ୍ଥାୟୀ" (ଯଥା—ଜାତି ପ୍ରଥା, ସଂଖ୍ୟା ଲଘୁ ଓ ସଂଖ୍ୟା ଗୁରୁ ସମ୍ପ୍ରଦାୟ ବିଶିଷ୍ଟ ସମାଜ, ଶ୍ରେଣୀ ପ୍ରଥା ) ।

ଆମ୍ଭେମାନେ ଏଠାରେ କେବଳ ଶେଷୋକ୍ତ ବିଭାଗର (ବସ୍ତୁତଃ ଏହି ବିଭାଗର ଦ୍ୱିତୀୟ ଉପବିଭାଗ ଅର୍ଥାତ୍ ସଂଖ୍ୟାଲଘୁ ଓ ସଂଖ୍ୟାଗୁରୁ ବିଷୟକ 'ଚିରସ୍ଥାୟୀ' ସ୍ତରୀକରଣ ପଦ୍ଧତିର) ଆଲୋଚନା କରିବୁ । ଲକ୍ଷ୍ୟ କରାଯାଇ ପାରେ ଯେ 'ସାମୟିକ' ଓ 'ଚିରସ୍ଥାୟୀ; ଶବ୍ଦ ଦୁଇଟିକୁ ଉଦ୍ଧୃତ ଚିହ୍ନ ମଧ୍ୟରେ ରଖା ଯାଇଅଛି । ଏହାର ଉଦ୍ଦେଶ୍ୟ ହେଉଛି ଯେ ଏଠାରେ ଆମ୍ଭେମାନେ ଦୁଇଟି ସ୍ୱତନ୍ତ୍ର ଶ୍ରେଣୀର ବିଚାର କରୁନାହୁଁ, ଗୋଟିଏ ସ୍ତରର ଆଲୋଚନା କରୁଅଛୁଁ । ଏହାର ସୀମା କ୍ଷଣିକ ନେତୃତ୍ୱଠାରୁ ଆରମ୍ଭ କରି ଶତଶତ ବର୍ଷ ଧରି ପ୍ରାୟ ଅପରିବର୍ତ୍ତିତ ଆକାରରେ ରହିଥିବା ସାମାଜିକ ସଂଗଠନ ପର୍ଯ୍ୟନ୍ତ ବିସ୍ତୃତ । ବିଭିନ୍ନ ସ୍ତରୀକରଣ ପଦ୍ଧତିର ପାର୍ଥକ୍ୟ ଉପଲବ୍ଧି କରିବାକୁ ହେବ । ତାହାହେଲେ ଆମେ ସେହି ପଦ୍ଧତିମାନଙ୍କର ସାମ୍ୟ ଓ ବୈଷମ୍ୟ ପରୀକ୍ଷା କରିପାରିବା । ପ୍ରଥମତଃ ଆମ୍ଭେମାନେ ସାମାଜିକ ସ୍ତରୀକରଣ ସମ୍ବନ୍ଧରେ କେତେକ ସାଧାରଣ ପ୍ରଶ୍ନର ଆଲୋଚନା କରିବା ।

ପଦ ବହୁମୂଲ୍ୟ ଓ ଦୁର୍ଲ୍ଲଭ ବସ୍ତୁମାନଙ୍କର ଅସମ ବଣ୍ଟନହିଁ ସ୍ତରୀ-କରଣର ଅର୍ଥ ହୁଏ, ତାହାହେଲେ ସେହିସବୁ ବସ୍ତୁ କଅଣ, ତାହା ଜାଣିବା ଆବଶ୍ୟକ । ଏହି ବସ୍ତୁଗୁଡ଼ିକ ତିନୋଟି ମୌଳିକ ଶ୍ରେଣୀରେ ବିଭକ୍ତ—(କ) ଆୟ (ଲାଭଦାୟକ ଦ୍ରବ୍ୟ ଓ ଶ୍ରମ ଉପରେ କର୍ତ୍ତୃତ୍ୱ), (ଖ)ପଦମର୍ଯ୍ୟାଦା (ସାମାଜିକ ସମ୍ମାନ ଉପରେ କର୍ତ୍ତୃତ୍ୱ ଓ (ଗ) କ୍ଷମତା (ଅନ୍ୟ ଲୋକର କାର୍ଯ୍ୟ କଳାପ ଉପରେ କର୍ତ୍ତୃତ୍ୱ) [୧] ଏଗୁଡ଼ିକ ଅଭିନ୍ନ ନ ହେଲେ ହେଁ ପରସ୍ପର ସହିତ ସଂପୃକ୍ତ । କୌଣସି ସମାଜ ବା ବ୍ୟକ୍ତି ବିଷୟରେ କିଛି ଜାଣିବାକୁ ହେଲେ ଗୋଟିଏ ପ୍ରଧାନ ଜାଣିବାର କଥା ହେଉଛି, ସେହି ସମାଜର ବା ସେହି ବ୍ୟକ୍ତିର ଆୟ, ପଦ ମର୍ଯ୍ୟାଦା ଓ କ୍ଷମତା କେତେଦୂର ସମାନ ଭାବରେ ବା ଅସମାନ ଭାବରେ ବଣ୍ଟନ ହୋଇଅଛି । କୌଣସି ବ୍ୟକ୍ତି ଏହି ତିନୋଟି ମଧ୍ୟରୁ ପ୍ରତ୍ୟେକରେ ସମାନ ଆସନ ଅଧିକାର କରୁଥିଲେ ତାହାର ସ୍ଥାୟୀଭୂତ ସ୍ଥିତି (Crystallized Status) ଅଛି ବୋଲି କୁହାଯାଏ । ଯଦି ଗୋଟିକରେ ତାହାର ଆସନ ଅନ୍ୟଟିରେ ତାହାର ଆସନଠାରୁ ଭିନ୍ନ ହୁଏ, ତେବେ ତାହାର ସ୍ଥିତିକୁ (status) ଅସ୍ଥାୟୀଭୂତ (uncrystallized) ବୋଲି କୁହାଯିବ । ଏଥିରେ ଅବଶ୍ୟ ବିକଳ୍ପର ପ୍ରଶ୍ନ ନାହିଁ (ଅର୍ଥାତ୍ ଜଣକର ସ୍ଥାନ କୌଣସି ବିଷୟରେ ଠିକ୍ ଅମୁକ ଜାଗାରେ, ତା ନ ହେଲେ ଅମୁକ ଜାଗାରେ ହେବ ବୋଲି କୁହା ଯାଇନପାରେ) । ନିର୍ଦ୍ଦିଷ୍ଟ ସୀମା ଭିତରେ ଏହି ସ୍ଥାନ ପରିବର୍ତ୍ତିତ ହୋଇପାରେ । ଏହି ସୀମା ମଧ୍ୟରେ ବ୍ୟକ୍ତି ବିଶେଷର ସ୍ଥାନ ବିଭିନ୍ନ ଶ୍ରେଣୀରେ ପୂରା ବା ପ୍ରାୟ ଅଭିନ୍ନ ହୋଇପାରେ କିମ୍ବା ସମ୍ପୂର୍ଣ୍ଣ ଭିନ୍ନ ମଧ୍ୟ ହୋଇପାରେ । ବ୍ୟକ୍ତି-ବିଶେଷର ଆସନର ସ୍ଥାୟୀତ୍ୱ ତାହାର ଅନୁଭୂତିର ଗୋଟିଏ ଗୁରୁତ୍ୱପୂର୍ଣ୍ଣ ଦିଗ ଏବଂ ଏହା ତାହାର କାର୍ଯ୍ୟକଳାପକୁ ବହୁ ପରିମାଣରେ ପ୍ରଭାବିତ କରେ । ଉଦାହରଣ ସ୍ୱରୂପ--ଯେଉଁମାନେ ରାଜନୀତିରେ ଉଦାରପନ୍ଥୀ ସେମାନଙ୍କର ଆସନ ବହୁ ପରିମାଣରେ ଅସ୍ଥାୟୀଭୂତ । ବିଶେଷତଃ ଶିକ୍ଷା ଓ ବ୍ୟବସାୟ କ୍ଷେତ୍ରରେ ସେମାନଙ୍କ ଆସନ ଉଚ୍ଚ ହୋଇଥିବାରୁ ଏବଂ ସମ୍ଭବତଃ ସଂଖ୍ୟାଲଘୁ ସମ୍ପ୍ରଦାୟର ଅନ୍ତର୍ଗତ ହୋଇ-ଥିବାରୁ ସେମାନଙ୍କର 'ସାମାଜିକ ଗୌରବ' (Social honour) ଊଣା

[୧] ଅକ୍ସଫୋର୍ଡ ଇଉନିଭରସିଟି ପ୍ରେସ ଦ୍ୱାରା ୧୯୪୬ ମସିହାରେ ପ୍ରକାଶିତ ଓ ହାନ୍ସ ଗର୍ଥ ଓ ରାଇଟ ମିଲ୍ସଙ୍କଦ୍ୱାରା ସମ୍ପାଦିତ From Max Weber ପୁସ୍ତକର ପୃ୧୮୦-୧୯୫ଷ୍ଠା ଦ୍ରଷ୍ଟବ୍ୟ ।

ହୋଇଥିଲେ ଏପରି ଘଟିଥାଏ । ଅନ୍ୟାନ୍ୟ ଅବସ୍ଥାର ମିଳନ ହେଲେ ଭିନ୍ନ ଫଳ ଘଟିଥାଏ । ଉଦାହରଣ ସ୍ୱରୂପ ଜାତି ଦୃଷ୍ଟିରୁ (ethnic) ଉଚ୍ଚ ଆସନ ସହିତ ଶିକ୍ଷା ଓ ବ୍ୟବସାୟ ଦୃଷ୍ଟିରୁ ନୀଚ ଆସନର ମିଳନ ଫଳରେ ଘୋର ମନସ୍ତାତ୍ତ୍ୱିକ ଗଣ୍ଡଗୋଳ ହୋଇପାରେ [୨]

ସମାଜ ପକ୍ଷରେ ଆସନର ଅସାମଞ୍ଜସ୍ୟ ଗୋଟିଏ ଗୁରୁତ୍ୱ ପୂର୍ଣ୍ଣ ବିଷୟ । ଯେଉଁ ସମାଜରେ ଅଧିକ ଆୟ କରୁଥିବା ଲୋକମାନଙ୍କର ପଦମର୍ଯ୍ୟାଦା ଓ କ୍ଷମତା ଅଧିକ, ସେ ସମାଜ ସାଧାରଣତଃ ସ୍ଥିତିଶୀଳ (static) ହୋଇଥାଏ । ଏପରି ସମାଜର ଲୋକେ ଏ ପ୍ରକାର ବ୍ୟବସ୍ଥାକୁ ସ୍ୱାଭାବିକ ଓ ଅପରିହାର୍ଯ୍ୟ ବୋଲି ଧରି ନେଇଥାନ୍ତି । ଏପରିକି ଯେଉଁମାନେ ଅତି ନୀଚ ଅବସ୍ଥାରେ ଥାଆନ୍ତି, ସେମାନେ ନିଜର ଅଭ୍ୟସ୍ତ ସ୍ତର (accustomed level) ମଧ୍ୟରେ କିଛିଏ ସୁଖକର ଓ ସମ୍ମାନ ଜନକ ସ୍ଥାନ ପାଇବାକୁ ଚେଷ୍ଟା କରନ୍ତି ; କିନ୍ତୁ ଅନ୍ୟ ସ୍ତରକୁ ଯିବା ପାଇଁ ବା ଏକ ପ୍ରକାର ବ୍ୟବସ୍ଥାର ବିରୋଧ କରିବା ପାଇଁ ଚେଷ୍ଟିତ ହୁଅନ୍ତି ନାହିଁ । ଯଦି ସେମାନଙ୍କ ମନରେ ଧାରଣା ହୁଏ ଯେ ସେମାନଙ୍କ ପ୍ରତି ଅନ୍ୟାୟ କରାଯାଉଅଛି, ତେବେ ସେମାନଙ୍କର ଏହି ମନୋଭାବ ଧର୍ମଗତ ମାଧ୍ୟମରେ ପ୍ରକାଶ ପାଏ । ଏଥିରେ ସେମାନଙ୍କ ଆସନର ଅନ୍ୟ ଅର୍ଥ ଦିଆଯାଇଥାଏ । କିନ୍ତୁ ତାହାକୁ ପରିବର୍ତ୍ତନ କରିବାର ପ୍ରୟାସ ନ ଥାଏ । ସେମାନଙ୍କର ଆୟ, ସମ୍ମାନ ଓ କ୍ଷମତାର ଅଭାବ ଥିବାରୁ ସେମାନେ ନିଜ ଆସନର ପରିବର୍ତ୍ତନ କରିବାରେ ଏକାନ୍ତ ଅସମର୍ଥ ହୁଅନ୍ତି ।

---

[୨] ଗରହାର୍ଡ ଲେନ୍‌ସ୍କିଙ୍କ ଲିଖିତ ଓ **American Sociological Review** ପତ୍ରିକାର ୧୯୫୪ ମସିହାର ଅଗଷ୍ଟ ସଂଖ୍ୟାରେ ପ୍ରକାଶିତ "**Status Crystallization : A Non—Vertical Dimension of Social Status**" ପ୍ରବନ୍ଧର ପୃ୪୦୫-୪୧୩ରୁ ଓ ଉକ୍ତ ପତ୍ରିକାର ୧୯୬୨ ମସିହାର ଅଗଷ୍ଟ ସଂଖ୍ୟାରେ ପୃ୪୬୯-୪୮୦ରୁ ପ୍ରକାଶିତ । ଏଲ୍ଟନ୍ ଏଫ୍ ଜାକସନଙ୍କ ଲିଖିତ "**Status Consistency and Symptoms of Stress**" ପ୍ରବନ୍ଧମାନ ଦେଖ ।

ଯେଉଁମାନେ ଏହି ବ୍ୟବସ୍ଥା ଅନୁସାରେ ଉଚ୍ଚ ଆସନ ଅଧିକାର କରିଥାଆନ୍ତି, ସେମାନେ ସ୍ୱଭାବତଃ ମନେ କରନ୍ତି ଯେ ଏପ୍ରକାର ବ୍ୟବସ୍ଥା ସ୍ୱାଭାବିକ ବାଞ୍ଛନୀୟ ଓ ସମ୍ମାନଜନକ । ସେମାନଙ୍କଠାରୁ ଅଧମ ଲୋକମାନଙ୍କ ବିଷୟ ସେମାନେ ଚିନ୍ତା କରି ପାରନ୍ତି, ଉଦାରତା ଦେଖାଇ ପାରନ୍ତି, ଏପରିକି ସେହିଭଳି ଲୋକଙ୍କ ପ୍ରତି ସେମାନଙ୍କର ଗୋଟିଏ ଦାୟିତ୍ୱ ଅଛି ବୋଲି ମନେ କରି ପାରନ୍ତି ଓ 'ସେମାନଙ୍କ' ରୟତ, ଭୃତ୍ୟ ବା ଶ୍ରମିକମାନଙ୍କର ଚିରାଚରିତ ଅଧିକାରର ସୁରକ୍ଷା କରି ସେମାନଙ୍କ ପ୍ରତି ବ୍ୟକ୍ତିଗତ ଉଦାରତା ଦେଖାଇ ପାରନ୍ତି । ତଥାପି ଏଥିରୁ ବୁଝିବାକୁ ହେବ ନାହିଁ ଯେ ସେମାନଙ୍କର ସ୍ତରୀକରଣ ପ୍ରଥାପ୍ରତି ସମର୍ଥନର ଅଭାବ ଅଛି ।

ଆୟ, ପଦମର୍ଯ୍ୟାଦା ଓ କ୍ଷମତା ବିଷୟ ଭିନ୍ନ ଭିନ୍ନ ଭାବରେ ବିଚାର କଲେ ଅବସ୍ଥା ଭିନ୍ନ ବୋଧ ହେବ । ହୁଏତ ଜଣେ ନୀଚ ଅବସ୍ଥାପନ୍ନ ଲୋକ ସୁନାର ସନ୍ଧାନ ପାଇଲା, କିମ୍ବା ଜଣେ ଧର୍ମ ପ୍ରଚାରକ ଜାଣିପାରିଲେ ଯେ, ତାଙ୍କର ଶ୍ରୋତା-ମାନେ ଗୋଟିଏ ନୂତନ ସମାଜ ଗଠନ କରିବାକୁ ଉଦ୍ୟତ ; କିମ୍ବା ହିଟ୍‌ଲରଙ୍କ ଭଳି ଯୁଦ୍ଧ ବିଭାଗରୁ ଅବସର ପ୍ରାପ୍ତ ଜଣେ ସୈନିକ ଦେଖିଲେ ଯେ, ତାଙ୍କର ପରି ଆହୁରି ଅନେକ ଲୋକ ଜୀବନରେ ନୈରାଶ୍ୟ ଅନୁଭବ କରି ତାଙ୍କ ନେତୃତ୍ୱରେ ଚାଳିତ ହେବାକୁ ପ୍ରସ୍ତୁତ କିମ୍ବା କୌଣସି ବୈଷୟିକ ଉଦ୍‌ଭାବନ (technical invention) ଦ୍ୱାରା କିମ୍ବା ସ୍ୱଦେଶ ତ୍ୟାଗ କରି ଉପନିବେଶ ସ୍ଥାପନ ଦ୍ୱାରା ଅର୍ଥାଗମର ପନ୍ଥା ଉନ୍ମୁକ୍ତ । ଏପରି କୌଣସି ଘଟଣା ଘଟିଲେ ପ୍ରତିଷ୍ଠିତ ସ୍ତରୀଭୂତ (stratified) ପଦ୍ଧତି ବିରୋଧରେ ଭୟଙ୍କର ପ୍ରତିରୋଧ ହୁଏ ।

କେତେକ ପଦମର୍ଯ୍ୟାଦାଶୂନ୍ୟ ବା କ୍ଷମତା ହୀନ ବ୍ୟକ୍ତି ଯଥେଷ୍ଟ ଆୟର ଅଧିକାରୀ ହୋଇପାରନ୍ତି କିମ୍ବା ଧନହୀନ ବା ପଦମର୍ଯ୍ୟାଦା ହୀନ ବ୍ୟକ୍ତି କ୍ଷମତାର ଅଧିକାରୀ ହୋଇ ପାରନ୍ତି । ତାହାହେଲେ ସେମାନେ ପୁରାତନ ବ୍ୟବସ୍ଥାକୁ ଗ୍ରହଣ କରିନେବା ପାଇଁ ଅନିଚ୍ଛୁକ ହୁଅନ୍ତି । ଠିକ୍ ସେହିପରି ଯେଉଁମାନେ ପୂର୍ବରୁ ଆୟ, ପଦମର୍ଯ୍ୟାଦା ଓ କ୍ଷମତାର ଅଧିକାରୀ ଥିଲେ, ସେମାନଙ୍କ ମଧ୍ୟରୁ କେତେକ ଏକ ବା ଏକାଧିକ ସୁଯୋଗରୁ ଉଣାଅଧିକେ ବଞ୍ଚିତ ହୋଇ ପାରନ୍ତି । ଉଦାହରଣ ସ୍ୱରୂପ କେହି ପୈତୃକ ଧନ ସମ୍ପତ୍ତିକୁ ଉଡ଼ାଇ ଦେଇପାରେ ; କେହି ସାମାଜିକ ପରିବର୍ତ୍ତନ ଫଳରେ ତାହାର କ୍ଷମତା ହରାଇ ପାରେ ।

ଏ ସବୁ କହିବାର ଉଦ୍ଦେଶ୍ୟ ହେଉଛି, ଅନେକ ଅବସ୍ଥାରେ, ବିଶେଷତଃ ଆଧୁନିକ ଯୁଗର ପରିବର୍ତ୍ତନଶୀଳ ଓ ଗତିଶୀଳ ସାମାଜିକ ଅବସ୍ଥାରେ, ଜୀବନର ଦୁର୍ଲ୍ଲଭ ମୂଲ୍ୟବୋଧକୁ ଉପଭୋଗ କରିବା ଲାଗି କେତେକ ବ୍ୟକ୍ତିଙ୍କର ଓ କେତେକ ସମ୍ପ୍ରଦାୟର ସୁଯୋଗ କେତେବେଳେ ପ୍ରଶସ୍ତତର ହେଉଅଛି, କି ବା କେତେବେଳେ ଅଧିକତର ସଂକୁଚିତ ହେଉଅଛି । ସ୍ତରୀକରଣ ପଦ୍ଧତିଗୁଡ଼ିକ ଅତି ଜଟିଳ ଓ ଗତିଶୀଳ । ଯେଉଁମାନଙ୍କର ପଦମର୍ଯ୍ୟାଦା ଅସ୍ଥାୟୀଭୂତ ହୋଇଯାଏ, ସେମାନଙ୍କ ଛଡ଼ା ଅନ୍ୟମାନଙ୍କ ଉପରେ ମଧ୍ୟ ଏହି ପରିବର୍ତ୍ତନର ପ୍ରଭାବ ପଡ଼େ । କେତେକଙ୍କ ଜୀବନରେ ଏପରି ଘଟିଲେ ଅନ୍ୟମାନେ ସ୍ପଷ୍ଟ ବୁଝି ପାରନ୍ତି ଯେ ଜୀବନର ସୁଯୋଗ ଯେପରି ବଣ୍ଟନ କରାଯାଇଅଛି, ତାହା ଅପରିହାର୍ଯ୍ୟ ନୁହେଁ । କେତେକ ଆଦର୍ଶର ଉତ୍ପତ୍ତି ହୋଇପାରେ ଏବଂ ତାହା ସମାଜର ନିମ୍ନସ୍ତରରେ ଥିବା ଲୋକମାନଙ୍କ ମଧ୍ୟରେ ବ୍ୟାପିପାରେ । ତେଣୁ ଓ୍ୱେବରଙ୍କର ଉକ୍ତ ମୌଳିକ ମୂଲ୍ୟବୋଧ ବା ସୁଯୋଗ ସହିତ ଆଉ ଦୁଇଟି ଯୋଗ କରିବା ଉଚିତ । ସେ ଦୁଇଟି ହେଉଛି, ସ୍ୱପ୍ନ ଓ ଆଶା । ଯେଉଁମାନଙ୍କର ଆୟ, ପଦମର୍ଯ୍ୟାଦା ଓ କ୍ଷମତାର ଅଭାବ ଅଛି, ସେମାନେ ଯଦି ନିଜ ଭିତରୁ କେତେଜଣ ପରିବର୍ତ୍ତନ ଆଣିବାର ସମ୍ଭାବନା ପ୍ରଦର୍ଶନ କରିବା ଦେଖି ଗୋଟାଏ ପୃଥକ୍ ବ୍ୟବସ୍ଥାର ସ୍ୱପ୍ନ ଦେଖନ୍ତି, ତେବେ ସେମାନଙ୍କର ଆସନ କାର୍ଯ୍ୟତଃ ନ ହେଲେହେଁ କଳ୍ପନାରେ ଅସ୍ଥାୟୀଭୂତ ହୋଇଯିବ ।

୧୯୬୩ ମସିହାର ଅଗଷ୍ଟ ମାସରେ ଦିନେ ଓ୍ୱାଶିଙ୍ଗଟନରେ ୨୧୦୦୦୦ ଲୋକଙ୍କର ଏକ ସମ୍ମିଳିତ ଜନତାକୁ ସମ୍ବୋଧନ କରି ମାର୍ଟିନ ଲୁଥର କିଙ୍ଗ୍ କହିଥିଲେ "ମୁଁ ଗୋଟାଏ ସ୍ୱପ୍ନ ଦେଖୁଅଛି ।" "ମୁଁ ଗୋଟାଏ ସ୍ୱପ୍ନ ଦେଖୁଅଛି" ଏହି ବାକ୍ୟଟିର ବିସ୍ଫୋରକ ଶକ୍ତି ଥିଲା । ଜନତାଙ୍କ ମୁଖରେ ଏହି ବାକ୍ୟ ପ୍ରତିଧ୍ୱନିତ ହେଲା ଏବଂ କ୍ଷମତାହୀନ, ପଦମର୍ଯ୍ୟାଦାହୀନ ଲକ୍ଷ ଲକ୍ଷ ନିଗ୍ରୋ ନିଜ ଜୀବନକୁ ଭିନ୍ନ ଦୃଷ୍ଟିରେ ଦେଖିବାକୁ ଲାଗିଲେ । ସମ୍ପୂର୍ଣ୍ଣରୂପେ ସ୍ଥାୟୀଭୂତ ଓ ସ୍ତରୀଭୂତ ପଦ୍ଧତି ଅପରିବର୍ତ୍ତିତ ରହିବାକୁ ହେଲେ ଅନ୍ୟାନ୍ୟ ସୁଯୋଗ ପରି ସ୍ୱପ୍ନର ବଣ୍ଟନ ମଧ୍ୟ ଅସମ ଭାବରେ ହେବା ଆବଶ୍ୟକ ।

'ଆଶା' କହିଲେ ଯାହା ବୁଝାଯାଏ, 'ସ୍ୱପ୍ନ' କହିଲେ ତାହା ବୁଝାଯାଏ ନାହିଁ । ଆଶା ବ୍ୟତୀତ ସ୍ୱପ୍ନ ସମ୍ଭବପର ହୋଇପାରେ, କିନ୍ତୁ ସ୍ୱପ୍ନ ବ୍ୟତୀତ ଆଶା ସମ୍ଭବପର ନୁହେଁ । ଏ ଦୁଇଟିକୁ ପୃଥକ୍ କଲେ କି ପରିଣାମ ହେବ,

ତାହା ଉତ୍ତମରୂପେ କଳ୍ପନା କରିବା ଉଚିତ । କୌଣସି ସ୍ତରଭୁକ୍ତ ସମାଜର ନିମ୍ନ ଦେଶରେ ଥିବା ଲୋକେ ଯେତେବେଳେ ନିଜ ପଦମର୍ଯ୍ୟାଦାର ଉନ୍ନତି ଅନୁଭବ କରନ୍ତି ଏବଂ ଜାଣି ପାରନ୍ତି ଯେ ଅନ୍ୟ କେତେକ ବ୍ୟକ୍ତି ସେମାନଙ୍କଠାରୁ ମଧ୍ୟ ଉଚ୍ଚତର ପଦମର୍ଯ୍ୟାଦା ପାଇ ପାରିଛନ୍ତି, ସେତେବେଳେ ଏହି ପରିଣାମଟି ଉତ୍ତେଜକ ଏକନ୍ତ ଦେଖାଯାଏ । କେତେକ କାଳ ପରେ ସେମାନେ କ୍ରମଶଃ ଉନ୍ନତିର ପଥରେ ଘୋର ପ୍ରତିବନ୍ଧକର ସମ୍ମୁଖୀନ ହୋଇ ପାରନ୍ତି । ଉଦାହରଣ ସ୍ୱରୂପ ଆମେରିକାର ନିଗ୍ରୋମାନେ ୧୯୪୦ ମସିହାଠାରୁ ୧୯୫୩ ମସିହା ପର୍ଯ୍ୟନ୍ତ କ୍ରମଶଃ ଆର୍ଥିକ ଉନ୍ନତି କରି ଆସୁଥିଲେ । ମାତ୍ର ତତ୍ପରବର୍ତ୍ତୀ ଦଶନ୍ଧିରେ ଆଉ ଉନ୍ନତି କରି ପାରି ନ ଥିଲେ । ୧୯୬୦ ମସିହା ପରେ ଯେଉଁ 'ପ୍ରତିବାଦ ଆନ୍ଦୋଳନ' ହୋଇଥିଲା, ତାହା ଏହି ଘଟଣାର ଆଂଶିକ ପ୍ରତିଛବି ମାତ୍ର । ସେମାନଙ୍କର ସ୍ୱପ୍ନ ମ୍ଳାନ ହୋଇ ଯାଇ ନ ପାରେ ; ଅନ୍ତତଃ ଅଳ୍ପକାଳ ମଧ୍ୟରେ କ୍ଷୀଣ ହୋଇ ନ ପାରେ । ମାତ୍ର କ୍ରମିକ ଉନ୍ନତିଲାଭର ଆଶା ମ୍ଳାନ ହୋଇଯାଏ । ଏପରି ଅବସ୍ଥା ଘଟିଲେ ପ୍ରଚଳିତ ସ୍ତରୀକରଣ ପଦ୍ଧତି ବିରୋଧରେ ପ୍ରବଳ ପ୍ରତିରୋଧ ହେବା ପ୍ରାୟ ସୁନିଶ୍ଚିତ । [illegible]ତିରୋଧର ଭିତ୍ତି ବିଭିନ୍ନ ଘଟନା ଉପରେ ନିର୍ଭର କରେ । ପରିବର୍ତ୍ତନରେ ଯେଉଁ ଧାରା ଦ୍ୱାରା ପ୍ରଥମତଃ ଆଶାର ବୃଦ୍ଧି ଘଟେ, ତାହା ଫଳରେ ଯଦି ନିମ୍ନସ୍ତରର ଲୋକମାନଙ୍କର ଉଲ୍ଲେଖଯୋଗ୍ୟ ଆୟବୃଦ୍ଧି ହୁଏ, ତେବେ ଏହି ପ୍ରତିରୋଧ ଆମେରିକାର ନିଗ୍ରୋମାନଙ୍କ ମଧ୍ୟରେ ଚାଲିଥିବା 'ନାଗରିକ ଅଧିକାର ଆନ୍ଦୋଳନ' ଏକ ରୂପ ଧାରଣ କରିପାରେ । ଏହି ଆନ୍ଦୋଳନ ସ୍ତରୀକରଣ ପ୍ରଥାର ପରିବର୍ତ୍ତନ ଦିଗରେ ଏକ ଶକ୍ତିଶାଳୀ ଉଦ୍ୟମ ହେଲେ ହେଁ ବର୍ତ୍ତମାନର ଆଦର୍ଶ ମଧ୍ୟରେ ଏହା ସୀମାବଦ୍ଧ । ଅପର ପକ୍ଷରେ ଯେଉଁଠାରେ ଆଶା ଅପେକ୍ଷା ସ୍ୱପ୍ନର ପରିଣାମ ଅଧିକ ଥାଏ, ସେଠାରେ ଏହି ପ୍ରତିରୋଧ ଭୀଷଣ ଆକାର ଧାରଣ କରିପାରେ । ସହରତଳି ଅଞ୍ଚଳରେ ବାସ କରୁଥିବା ଶ୍ରମିକ ଓ ସ୍ୱଳ୍ପ ଶିକ୍ଷିତ ନିଗ୍ରୋମାନଙ୍କ ମଧ୍ୟରେ ଏହି ପ୍ରକାର ମନୋଭାବ ଦେଖା ଯାଇଅଛି । ନୈରାଶ୍ୟ ଓ ବିଫଳତା ହେତୁ ନୈତିକତାର ହାନି ଘଟିଲେ ଲୋକ ନିଜ ଉପରେ ଆକ୍ରମଣ କରେ—ମାଦକ ଦ୍ରବ୍ୟ ସେବନ କରେ ଓ ମାନସିକ ରୋଗରେ ପଡେ । ଏପରି ଅବସ୍ଥାରେ କେତେକେ ସମାଜ ତ୍ୟାଗ କରିପାରନ୍ତି, ଅପରାଧପ୍ରବଣ ହୋଇ ପାରନ୍ତି ; କିମ୍ବା କୃଷ୍ଣକାୟ ମୁସଲମାନ ସମ୍ପ୍ରଦାୟ ଭଳି ଦଳବଦ୍ଧ ଭାବରେ ସମାଜ ପରିତ୍ୟାଗ କରିପାରନ୍ତି ।

ପରବର୍ତ୍ତୀ ଅଧ୍ୟାୟମାନଙ୍କରେ ଅନେକ ସ୍ଥଳରେ ଆମ୍ଭମାନଙ୍କୁ ଏହି ପ୍ରଶ୍ନର ବିଭିନ୍ନ ଦିଗ ଆଲୋଚନା କରିବାକୁ ପଡ଼ିବ । ଏଠାରେ ମୁଁ କେବଳ ଏତିକି କହିବାକୁ ଚାହେଁ — ଯେଉଁ ସ୍ତରୀକରଣ ପ୍ରଥାରେ ଜୀବନର ଦୁର୍ଲଭ ସୁଯୋଗଗୁଡ଼ିକ ଭିନ୍ନ ଭିନ୍ନ ଭାବରେ ବଣ୍ଟନ କରାଯାଏ, ତାହାର କି ସମ୍ଭାବ୍ୟ ପରିଣତି ଘଟିପାରେ, କଳ୍ପନା କର । ବାସ୍ତବ ପରିସ୍ଥିତିର ଜଟିଳତାକୁ ଛାଡି ଦେଇ ଆମ୍ଭେମାନେ ଆମେରିକାର ନିଗ୍ରୋମାନଙ୍କ ଅବସ୍ଥାକୁ ନିମ୍ନଲିଖିତ ନକ୍ସା ଆକାରରେ ପ୍ରକାଶ କରିପାରିବା ।




ବିଭିନ୍ନ ସୁଯୋଗ ସମ୍ବନ୍ଧରେ ଆମ୍ଭମାନଙ୍କର ଏହି ଅନୁମାନ ବାସ୍ତବତା'ର ଖୁବ୍ ନିକଟବର୍ତ୍ତୀ ହେଉ ବା ନ ହେଉ ଏଥିରୁ ଗୋଟିଏ କଥା ଜଣାଯାଏ । ତାହା ହେଉଛି ସ୍ତରୀକରଣ ସୁଯୋଗମାନଙ୍କର ସୂକ୍ଷ୍ମ ବଣ୍ଟନ ଓ ବଣ୍ଟନର ପ୍ରକାର ଭେଦରେ ପରିବର୍ତ୍ତନର ଦିଗସହିତ ସଂପୃକ୍ତ ।

ଦୁର୍ଲଭ ସୁଯୋଗମାନଙ୍କର ବଣ୍ଟନ ସର୍ବଦା ତୁଳନାତ୍ମକଭାବରେ ବିଚାର କରିବାକୁ ହେବ । ପଦମର୍ଯ୍ୟାଦା ଓ କ୍ଷମତାର ଅଭାବ ପ୍ରାୟ ସର୍ବଦା ଘଟିଥାଏ । କାରଣ ଜଣେ ବ୍ୟକ୍ତି ବା ଗୋଷ୍ଠିଏ ସମ୍ପ୍ରଦାୟ ଏ ଦୁଇଟିର ଅଧିକାରୀ ହେଲେ ଅନ୍ୟମାନେ ନିଶ୍ଚୟ ସେଥିରୁ ବଞ୍ଚିତ ହେବେ । କିନ୍ତୁ ଆୟ ଏପରି ଆକ୍ଷରିକ ଅର୍ଥରେ

ତୁଳନାତ୍ମକ ନୁହେଁ ; ତଥାପି ଆୟ ଦୃଷ୍ଟିରୁ ଆମେ ନିଜକୁ ଅନ୍ୟ ସହିତ ତୁଳନା କରି ପ୍ରବୃତ୍ତ ହୋଇଥାଉଁ । କୌଣସି ସମାଜରେ କେହି ଯଦି ୫୦୦୦ ଡଲାର ଆୟରେ ସେହି ସମାଜର ସର୍ବୋଚ୍ଚ ଧନୀଜଣଙ୍କ ମଧ୍ୟରେ ସ୍ଥାନ ଲାଭ କରେ, ତେବେ ସେ ଯେପରି ଅନୁଭବ କରିବ ସେହି ଆୟରେ ସର୍ବନିମ୍ନ ଧନୀଜଣଙ୍କ ମଧ୍ୟରେ ସ୍ଥାନ ପାଇଲେ ସେପରି ଅନୁଭବ କରିପାରିବ ନାହିଁ ଯଦିଓ ସେହି ଆୟରେ ସେ ସମାନ ପରିମାଣରେ ଦ୍ରବ୍ୟ ବା ଶ୍ରମ କ୍ରୟ କରି ପାରିବ । ଆୟର ଏହି ତୁଳନାତ୍ମକ ଗୁରୁତ୍ୱର କଥା ଜାଣିଥିବାରୁ ଲୋକମାନଙ୍କର ପଦମର୍ଯ୍ୟାଦାରେ ସ୍ଥାୟିତ୍ୱର ଅଭାବ ସହିତ ଶ୍ରେଣୀକାୟମାନଙ୍କର ବିଭିନ୍ନ ସମ୍ପ୍ରଦାୟର ସମ୍ବନ୍ଧ ଆଲୋଚନା କରିବା ଆବଶ୍ୟକ । ଏହି ସମ୍ପ୍ରଦାୟମାନଙ୍କ ମଧ୍ୟରେ ସହରତଳି ଅନୁନ୍ନତ ଅଞ୍ଚଳରେ ନୂତନ ଗୃହ ନିର୍ମାଣ କରି ବାସ କରୁଥିବା ନିମ୍ନମଧ୍ୟବିତ୍ତ ଶ୍ରେଣୀର ଲୋକେ ଓ ଅନ୍ୟମାନେ ଅନ୍ତର୍ଭୁକ୍ତ । ବିଭିନ୍ନ ପ୍ରକାର ଆଶା ଓ ଆଶଙ୍କା ମଧ୍ୟରେ ବାସ କରୁଥିବା ବିଭିନ୍ନ ସମ୍ପ୍ରଦାୟମାନଙ୍କ ଭିତରେ ବିଦ୍ୟମାନ ସମ୍ବନ୍ଧଦ୍ୱାରା ଜାତିସମ୍ବନ୍ଧ ନିର୍ଣ୍ଣୀତ ହୋଇଥାଏ ।

## ସାମାଜିକ ସ୍ତରୀକରଣର ଉତ୍ପତ୍ତିସ୍ଥଳ

ଏଥିମଧ୍ୟରେ ତୁମ୍ଭମନରେ ଗୋଟିଏ ପ୍ରଶ୍ନ ଜାଗିଥିବ । ପୃଥିବୀରେ ସମାଜସବୁ ସ୍ତରୀଭୂତ ହେବାର କାରଣ କଅଣ ? ମନୁଷ୍ୟ ଜାତି ପ୍ରତ୍ୟେକ ବିଷୟ ପରୀକ୍ଷା କରି ଶିଖେ । ସମାଜମାନଙ୍କୁ ତୁଳନା କରି ଦେଖିଲେ ଆଶ୍ଚର୍ଯ୍ୟ ଲାଗିପାରେ ଯେ, ଅଧିକାଂଶ ସମାଜରେ ଆୟ, କ୍ଷମତା ଓ ପଦମର୍ଯ୍ୟାଦାର ବଣ୍ଟନ କାହିଁକି ସମାନ ଭାବରେ ହେଉନାହିଁ । ସମାନଭାବରେ ନ ହେଲେ ଅନ୍ତତଃ ପ୍ରତ୍ୟେକ ଶିଶୁ ଏସବୁ ପାଇଁ ପ୍ରତିଯୋଗିତା କରିବାକୁ ସମାନ ସୁଯୋଗ ପାଉନାହିଁ କାହିଁକି ? ସମାଜବିଜ୍ଞାନୀମାନେ ସର୍ବଦା ଗୋଟାଏ ସାର୍ବଜନୀନ ରୀତି ବା ପ୍ରଥା ଦେଖିଲେ ବିସ୍ମିତ ହେବାର କଥା । ଏହି ପ୍ରଥାଦ୍ୱାରା କି ଉପକାର ହେଉଅଛି ? ସ୍ତରୀକରଣ ପ୍ରଥାକୁ ଏହି ଦୃଷ୍ଟିରୁ ବିଚାର କରି ଡେଭିସ୍ ଓ ମୁର୍ ସିଦ୍ଧାନ୍ତ କରିଅଛନ୍ତି ଯେ, ସବୁ ସମାଜରେ ସ୍ତରୀକରଣର ଗୋଟିଏ ସହଜ କାରଣ ଅଛି । ସମସ୍ତେ ପ୍ରତିଭାଶାଳୀ ନୁହନ୍ତି । କେତେଗୁଡ଼ିଏ କଠିନ

ଓ କୌଶଳପୂର୍ଣ୍ଣ କାର୍ଯ୍ୟ କରିବା ପାଇଁ କେବଳ ଅଳ୍ପ ଲୋକ ସମର୍ଥ । ସେମାନଙ୍କୁ ଏପ୍ରକାର କାର୍ଯ୍ୟ କରିବା ପାଇଁ କୌଣସି ଉଦ୍ଦୀପନା ନ ଦେଲେ ସେମାନେ ସେ କାର୍ଯ୍ୟ କରିବେ ନାହିଁ । ଫଳତଃ ଉକ୍ତ କାର୍ଯ୍ୟଗୁଡ଼ିକ ଅବହେଳିତ ହେବ । "ଏଣୁ ସାମାଜିକ ଅସମାନତା ଅଜ୍ଞାତସାରରେ ସୃଷ୍ଟି ହୋଇ ଚାଲିଛି । ଏହାଦ୍ୱାରା ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟଗୁଡ଼ିକ କରିବା ପାଇଁ ସର୍ବାପେକ୍ଷା ଉପଯୁକ୍ତ ଲୋକ ସ୍ୱତଃ ମିଳିପାରିବେ ବୋଲି ସମାଜ ନିଶ୍ଚିତ ହୋଇ ପାରିଅଛି" [୩] । ଏହା ଆମ ପ୍ରଶ୍ନର ଆଂଶିକ ଉତ୍ତର ହୋଇପାରେ, କିନ୍ତୁ ଏହାଦ୍ୱାରା ଆହୁରି ଅନେକ ସମସ୍ୟାର ସମାଧାନ ହୋଇପାରିବ ନାହିଁ । ପ୍ରଶ୍ନ ହୋଇପାରେ—ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ କରିବା ପାଇଁ ଉଦ୍ଦୀପନା ଦେବାକୁ ହେଲେ କେତେ ପରିମାଣରେ ପୁରସ୍କାର ଦେବା ଉଚିତ ? ଉଦାହରଣ ସ୍ୱରୂପ ମାର୍କିନ ଯୁକ୍ତରାଷ୍ଟ୍ରରେ କେତେକ ଲୋକ ଦିନକୁ ଏକହଜାର ଡଲାର ଅର୍ଜନ କରିଥାନ୍ତି । ଅଳ୍ପ କେତେକ ଲୋକ ଦିନକୁ ଦଶହଜାର ଡଲାର ପର୍ଯ୍ୟନ୍ତ ଅର୍ଜିପାରନ୍ତି । କିନ୍ତୁ ଅଧିକାଂଶ ଲୋକଙ୍କର ବାର୍ଷିକ ଆୟ ପ୍ରାୟ ଏକହଜାର ଡଲାରରୁ ମଧ୍ୟ କମ୍ । ଏହି ପରିମାଣର ପାର୍ଥକ୍ୟ ରହିବା ବାଞ୍ଛନୀୟ କି ? 'କର୍ମମତବାଦ' ସମ୍ବନ୍ଧରେ ଡେନିସ୍ ରଙ୍ଗ୍ କହିଅଛନ୍ତି, "ଗୋଟାଏ ଜଟିଳ କର୍ମବିଭାଗର ସ୍ଥାୟିତ୍ୱ ପାଇଁ ନିତାନ୍ତପକ୍ଷେ ସେତିକି ଅସମତା ରହିବା ଆବଶ୍ୟକ, କୌଣସି ନିର୍ଦ୍ଦିଷ୍ଟ ଐତିହାସିକ ସମାଜରେ ପ୍ରଚଳିତ ପୁରସ୍କାର ବିଭାଗ ତାହାଠାରୁ ଯଥେଷ୍ଟ ବେଶି ହୋଇପାରେ ।'କର୍ମମତବାଦ' କୌଣସିମତେ ଏହା ଅସ୍ୱୀକାର କରେନାହିଁ । କେତେକ ଗୁରୁତ୍ୱହୀନ, କୌଶଳହୀନ ଏବଂ ସୁଖଦାୟକ କାର୍ଯ୍ୟପାଇଁ ଯଥେଷ୍ଟ ପୁରସ୍କାର ମିଳିପାରେ ; କେବଳ ଏ ସବୁର ବିପରୀତ ଧର୍ମୀ କାର୍ଯ୍ୟ ସଙ୍ଗେ ସଫଳ ଭାବରେ ପ୍ରତିଯୋଗିତା କରି ସେଗୁଡ଼ିକର ପରିମାଣ ବା ଗୁଣକୁ ଗୋଟାଏ ନିମ୍ନତମସ୍ତରର ନିମ୍ନକୁ ନ ନେଲେ ହେଲା ! ଏହା ମଧ୍ୟ ଉକ୍ତ ମତବାଦ ଅସ୍ୱୀକାର କରେନାହିଁ । [୪]

---

[୩] କିଙ୍ଗ୍ସଲି ଡେଭିସ ଓ ଉଇଲବର୍ଟ ମୁର୍ଙ୍କ ଦ୍ୱାରା ଲିଖିତ ଓ ୧୯୪୫ ମସିହାର ଅପ୍ରେଲ ସଂଖ୍ୟା 'ଆମେରିକାନ ସୋସିଓଲୋଜିକ୍ୟାଲ ରିଭିଉ' ପତ୍ରିକାର ପୃ ୨୪୩ଷ୍ଠାରେ ପ୍ରକାଶିତ "ସାମ ପ୍ରିନ୍ସିପ୍ଲସ ଅଫ୍ ଷ୍ଟ୍ରାଟିଫିକେସନ" ପ୍ରବନ୍ଧ ଦ୍ରଷ୍ଟବ୍ୟ ।

[୪] 'ଆମେରିକାନ୍ ସୋସିଓଲୋଜିକ୍ୟାଲ ରିଭିଉ', ପତ୍ରିକାର ୧୯୫୯ ମସିହାର ଡିସେମ୍ବର ସଂଖ୍ୟାରେ ୭୭୪ ପୃଷ୍ଠାରେ ପ୍ରକାଶିତ ଡେନିସ ଏଚ୍, ରଙ୍ଗ୍ଙ୍କର ଫାଙ୍କସନ୍ୟାଲ ଥିଓରି ଅଫ୍ ଷ୍ଟ୍ରାଟିଫିକେସନ ପ୍ରବନ୍ଧ ଦେଖ ।

ତାହାହେଲେ କାର୍ଯଗତ ଆବଶ୍ୟକତା 'ପୁରସ୍କାରରେ ପାର୍ଥକ୍ୟ' ପଦ୍ଧତିର ଜନ୍ମ ଦେଇପାରେ ; କିନ୍ତୁ ଏହା ପରେ ସେହି ପଦ୍ଧତି ନିଜକୁ ଚିରସ୍ଥାୟୀ କରିନିଏ । ଏଠାରେ ମନେରଖିବାକୁ ହେବ ଯେ ସ୍ତରୀକରଣର ପ୍ରଧାନ ଲକ୍ଷଣ ହେଉଛି ଏହାର ଚିରସ୍ଥାୟିତ୍ୱ [*] । ଯେଉଁମାନଙ୍କର ଅବସ୍ଥା ଅନୁକୂଳ ଥାଏ, ଓ ଯେଉଁମାନେ ଜୀବନରେ ସୁବିଧାଜନକ ସ୍ଥାନ ଅଧିକାର କରିଥାଆନ୍ତି, ସେମାନେ ଜାଣନ୍ତି ଯେ ସେମାନଙ୍କ ପୁତ୍ର କନ୍ୟାମାନେ ଜୀବନ ଆରମ୍ଭ କରିବାରେ କେତେକ ସୁବିଧା ପାଇବେ । ବୋଧହୁଏ, ଉଚ୍ଚତମ ଉଦ୍ଦୀପନା ଲାଭ ପାଇଁ ଏହା ହେଉଛି ଗୋଟିଏ ପ୍ରଧାନ ସୁବିଧା । ସନ୍ତାନମାନେ ତାର ପରିଶ୍ରମ ଫଳରେ ଉପକୃତ ହେବେ ବୋଲି ଜାଣିଥିବାରୁ ଲୋକ କଠିନ ପରିଶ୍ରମ କରେ । କିନ୍ତୁ ଏହି ସରଳ ଉକ୍ତିରେ ଗୋଟାଏ ଗୁରୁତର ଅସୁବିଧା ଅଛି । ଯେଉଁମାନେ ଜାଣନ୍ତି ଯେ ସେମାନେ ନିଜର ସନ୍ତାନ ସନ୍ତତିଙ୍କ ପାଇଁ କିଛି ଦେଇପାଇ ପାରିବେ ନାହିଁ, ସେମାନଙ୍କର ଶ୍ରମ ନିମନ୍ତେ କି ଉଦ୍ଦୀପନା ଅଛି ? ତାହାହେଲେ ଯେଉଁ ହେତୁରୁ ମନୁଷ୍ୟ କଠିନ ପରିଶ୍ରମ କରିବା ନିଶ୍ଚିତ ବୋଲି କୁହାଯାଉଅଛି, ଠିକ୍ ତାହାରି ହେତୁରୁ ଅନ୍ୟ କେତେକ ଲୋକ କଠିନ କାର୍ଯ କରିବାକୁ ନିରୁତ୍ସାହ ହୋଇ ପାରନ୍ତି ।

ସମାଜର କଠିନ ଓ କୌଶଳପୂର୍ଣ୍ଣ କାର୍ଯ ସାଧନ ନିମନ୍ତେ ସ୍ତରୀକରଣର ସୃଷ୍ଟି ; ଏ ପ୍ରକାର ବ୍ୟାଖ୍ୟା କେବଳ ବ୍ୟାଖ୍ୟାରେ ଆରମ୍ଭ ମାତ୍ର । ଏହା ସଙ୍ଗେ କ୍ଷମତାର ବିଷୟ ମଧ୍ୟ ଗ୍ରହଣ କରିବା ଆବଶ୍ୟକ । କେତେକ ଲୋକ ସମାଜର ବିଶିଷ୍ଟ କାର୍ଯ କରୁଥିବା ଗୋଟିଏ କାରଣ ହୋଇପାରେ, ମାତ୍ରଏହା ଆଂଶିକ ସତ୍ୟ । ହୁଏତ କେତେକ ଲୋକ ଦୈବାତ୍ ଉଚ୍ଚତର ଆୟ, କ୍ଷମତା ଓ ପଦ-ମର୍ଯାଦାର ଅଧିକାରୀ ହୋଇ ନିଜର ଆସନକୁ ରକ୍ଷା କରି ପାରିଥାନ୍ତି । ଏହି

---

[*] ୧୯୫୮ ମସିହା ଅଗଷ୍ଟମାସର 'ଆମେରିକାନ ସୋସିଓଲଜି ରିଭିଉ ପତ୍ରିକାର ପୃଷ୍ଠା୬୧—୪୭୦ପୃଷ୍ଠାରେ ପ୍ରକାଶିତ ଓ୍ୱାଲ୍ଟର ବକ୍ଲେଙ୍କ ଲିଖିତ ସୋସିଆଲ ଷ୍ଟ୍ରାଟିଫିକେସନ ଏଣ୍ଡ ଦ' ଫ୍ୟାକ୍ସନ ଥିଓରି ଅଫ୍ ସୋସିଆଲ ଡିଫାରେ-ନସିଏସନ ପ୍ରବନ୍ଧ ଦେଖ ।

ଉଭୟ କାରଣରୁ ସମାଜରେ ସ୍ତରୀକରଣ ଉତ୍ପତ୍ତି ହୋଇଅଛି । ହଠାତ୍ ପରିବର୍ତ୍ତନ ଘଟିଲେ ସେମାନଙ୍କର ଆସନ ନିମ୍ନପଦ ହୋଇ ନ ପାରେ । ପୂର୍ବରୁ ଏହା ଉଲ୍ଲେଖ କରାଯାଇଅଛି । ଯେଉଁ ଲୋକଙ୍କର 'କେତେକ' ସୁବିଧା ଅଛି ମାତ୍ର 'ଅଧିକାଂଶ' ସୁବିଧା ନାହିଁ, ସେମାନେ ସ୍ତରର ଶୀର୍ଷସ୍ଥାନ ଅଧିକାର କରିବା ଲୋକଙ୍କଠାରୁ ଅଧିକ ଉଦ୍ୟମୀ ହୋଇ ଦୁର୍ଲ୍ଲଭ ସୁଯୋଗମାନଙ୍କର ଅନୁସରଣ କରିପାରନ୍ତି । ଗୋଟାଏ ପ୍ରବାଦ ଅଛି ଯେ, 'ଯାହା ଦିନ ମୂରୁଷ ହେଲା ଚଳି ଆସିଲାଣି ତାହା ନିଶ୍ଚୟ ଚଳିବ ।' ଏଥିରେ କିଛି ସତ୍ୟ ଅଛି । ଏହା ସଙ୍ଗେ ଆଉ ଗୋଟିଏ ପ୍ରବାଦର ସତ୍ୟତା ମଧ୍ୟ ଦେଖିବାକୁ ହେବ । 'ରଜାପୁଅ ରଜା, ଯୋଗୀ ପୁଅ ଯୋଗୀ' । ଅର୍ଥାତ୍ ଜୀବନରେ ସଫଳତା ଅର୍ଜିବାକୁ ହେଲେ କୃତୀ ପିତାର ସନ୍ତାନ ହେବା ଦରକାର । ଯଦି ଏପରି ପିତାର ଅଭାବ ଘଟିଥାଏ, ତେବେ ଏପରି ସମାଜ ବାଛି ନେବା ଦରକାର ଯାହାର ଆଦର୍ଶ ଓ ଅନୁଷ୍ଠାନ ସମୂହ ସର୍ବସାଧାରଣ ସୁବିଧାଗୁଡ଼ିକର ବିଶେଷତଃ ଶିକ୍ଷା ଲାଭର ସୁଯୋଗ ପ୍ରତ୍ୟେକଙ୍କ ପାଇଁ ଉନ୍ମୁକ୍ତ ରଖିଥାଏ ।

## ସ୍ତରୀକରଣ ପ୍ରଥାର ଶ୍ରେଣୀବିଭାଗ

ଉଲ୍ଲିଖିତ ଆଲୋଚନାରୁ ଆମ୍ଭେମାନେ ସ୍ତରୀକରଣ ପ୍ରଥାର ତୃତୀୟ ପ୍ରଶ୍ନରେ ଉପନୀତ ହେଉଁ ।

ବିଭିନ୍ନ ସମାଜ ବିଭିନ୍ନ ପରିମାଣରେ 'ରୁଦ୍ଧ' ବା ଉନ୍ମୁକ୍ତ ହେବାଦ୍ୱାରା ସେମାନଙ୍କ ମଧ୍ୟରେ କି ପାର୍ଥକ୍ୟ ଦେଖାଯାଏ ?

ଅବଶ୍ୟ ଏହି ପ୍ରଶ୍ନ ସହିତ ସମାଜର 'ସ୍ତରୀଭୂତ ଅବସ୍ଥା'ର ନିକଟ ସମ୍ପର୍କ ଅଛି । ମାତ୍ର ଏହି ଦୁଇ ପ୍ରଶ୍ନ ଠିକ୍ ଏକ ପ୍ରଶ୍ନ ନୁହେଁ । ସମାଜର ଅନ୍ତର୍ଗତ ବ୍ୟକ୍ତି ବିଶେଷ କେତେ ସହଜରେ ଓ କେତେବାର ନିଜର 'ଆସନ' ପରିବର୍ତ୍ତନ କରିପାରେ, ଏହା ସହିତ ସମାଜର ଉନ୍ମୁକ୍ତତାର ସମ୍ପର୍କ ଅଛି । ଯଦି ପ୍ରତ୍ୟେକ ବ୍ୟକ୍ତି

ନିଜ ପିତାମାତାଙ୍କ ଆପଣ ସ୍ତରରେ ରହେଁ ତେବେ ସେ ସାମାଜିକ ପଦ୍ଧତିକୁ 'ରୁଦ୍ଧ' ବୋଲି କହିବାକୁ ହେବ । ମାତ୍ର ଯଦି ପ୍ରତ୍ୟେକ ବ୍ୟକ୍ତି ନିଜ ପିତାମାତାଙ୍କ ସାମାଜିକ ସ୍ତରରୁ ଅନ୍ୟ ସ୍ତରକୁ—ସେ ସ୍ତର ଉଚ୍ଚତର ହେଉ ବା ନୀଚତର ହେଉ ଯାଇପାରେ, ତେବେ ତାକୁ ସମ୍ପୂର୍ଣ୍ଣ 'ମୁକ୍ତ' ବୋଲି କୁହାଯିବ । କିନ୍ତୁ ବାସ୍ତବ କ୍ଷେତ୍ରରେ ଏପରି ସମ୍ପୂର୍ଣ୍ଣ ମୁକ୍ତ ସମାଜ ଦେଖିବାକୁ ମିଳେନାହିଁ । ତେବେ କେତେକ ସମାଜ ଯେ ପ୍ରାୟ 'ରୁଦ୍ଧ' ଏହା ନିଶ୍ଚିତରୂପେ କୁହାଯାଇ ପାରେ । ତେଣୁ ଆମ୍ଭେମାନେ କହିପାରୁଁ ଯେ ସବୁ ସମାଜ ଦୁଇଟି ସଂପୂର୍ଣ୍ଣ ବିଭିନ୍ନ (ବା ବିରୋଧୀ) ଶ୍ରେଣୀରେ ବିଭକ୍ତ କରିହେବ ନାହିଁ । ସମସ୍ତ ସମାଜକୁ ଏକ ଅଖଣ୍ଡ ପ୍ରବାହ ବୋଲି ବିଚାର କରିବା ଯୁକ୍ତିଯୁକ୍ତ । ଆଧୁନିକ ଶିଳ୍ପ ପ୍ରଧାନ ସମାଜରେ ଦେଖିବାକୁ ମିଳେ ଯେ ପ୍ରାୟ ଏକ ତୃତୀୟାଂଶ ଲୋକ ସେମାନଙ୍କ ପିତାମାତାଙ୍କ ସାମାଜିକ ସ୍ତରରେ ନ ରହି ଉଚ୍ଚତର ସ୍ତରକୁ ଉଠି ଯାଇଥାନ୍ତି ବା ନିମ୍ନତର ସ୍ତରକୁ ଖସି ଆସନ୍ତି । [୭] । ଭାରତର ପ୍ରାଚୀନ ଜାତିଭେଦ ପ୍ରଥାରେ ସାମାଜିକ ସ୍ତରର କୌଣସି ପରିବର୍ତ୍ତନ ପ୍ରାୟ ଘଟୁ ନ ଥିଲା [୮] । ଆମ୍ଭେମାନେ ଏହି କେତୋଟି

---

[୭] ସିମୋର ମାର୍ଟିନ ଲିପସେଟ ଓ ରେନହାର୍ଡ ବେଣ୍ଡିକ୍ସଙ୍କ ଦ୍ୱାରା ଲିଖିତ ଓ କାଲିଫର୍ଣ୍ଣିଆ ବିଶ୍ୱବିଦ୍ୟାଳୟ ପ୍ରେସ ଦ୍ୱାରା ୧୯୫୯ ମସିହାରେ ପ୍ରକାଶିତ ସୋସିୟାଲ ମୋବିଲିଟି ଇନ୍ ଇଣ୍ଡଷ୍ଟ୍ରିୟାଲ ସୋସାଇଟିର ପୁସ୍ତକର ୨୫ ପୃଷ୍ଠା ଦ୍ରଷ୍ଟବ୍ୟ ।

[୮] ଏ ସଂପର୍କରେ ନିମ୍ନଲିଖିତ ପୁସ୍ତକଗୁଡ଼ିକ ଦ୍ରଷ୍ଟବ୍ୟ । (କ) ଏଡ୍ରିୟାନ ସି, ମେୟରଙ୍କଦ୍ୱାରା ଲିଖିତ ଓ ୧୯୬୦ ମସିହାରେ କାଲିଫର୍ଣ୍ଣିଆ ବିଶ୍ୱବିଦ୍ୟାଳୟଦ୍ୱାରା ପ୍ରକାଶିତ କାଷ୍ଟ ଏଣ୍ଡ କିନସିପ୍ ଇନ୍ ସେଣ୍ଟ୍ରାଲ ଇଣ୍ଡିଆ (ଖ) ଜେ. ଏଇଚ୍ ହଟନଙ୍କଦ୍ୱାରା ଲିଖିତ ଓ ୧୯୬୧ ମସିହାରେ ଅକ୍ସଫୋର୍ଡ ବିଶ୍ୱବିଦ୍ୟାଳୟ ପ୍ରେସରୁ ପ୍ରକାଶିତ । କାଷ୍ଟ ଇନ୍ ଇଣ୍ଡିଆ ଇଟସ୍ ନେଚର ଫାଙ୍କସନ ଏଣ୍ଡ ଅରିଜିନ (ଚତୁର୍ଥ ସଂସ୍କରଣ) (ଗ) ଇ. ଆର୍. ଲିଚଙ୍କ ଦ୍ୱାରା ସଂପାଦିତ ଓ ନିଉୟର୍କର କଲମ୍ବିଆ ବିଶ୍ୱବିଦ୍ୟାଳୟ ପ୍ରେସରୁ ୧୯୬୦ ମସିହାରେ ପ୍ରକାଶିତ ଆସପେକଟସ ଅଫ କାଷ୍ଟ ଇନ ସାଉଥ ଇଣ୍ଡିଆ, ସିଲନ, ନର୍ଥ ଓ୍ୱେଷ୍ଟ ପାକିସ୍ଥାନ ।

ପର୍ଯ୍ୟବେକ୍ଷଣଲବ୍ଧ ସାମାଜିକ ପରିସୀମାକୁ ଅବଲମ୍ବନ କରି ସେମାନଙ୍କୁ ତଥ୍ୟମୂଳକ ସମ୍ଭାବ୍ୟ ପରିସୀମା ସହିତ ତୁଳନା କରିପାରୁଁ ।




ସମ୍ପୂର୍ଣ୍ଣ 'ଉନ୍ମୁକ୍ତ' ସମାଜରେ ସର୍ବକ୍ଷଣ ପରିବର୍ତ୍ତନ ଘଟୁଥିବ; ପ୍ରତ୍ୟେକ ଉଚ୍ଚସ୍ତରର ଲୋକ ନୀଚସ୍ତରକୁ ଯାଉଥିବ ଓ ନୀଚସ୍ତରର ଲୋକ ଉଚ୍ଚ ସ୍ତରକୁ ଉଠୁଥିବ । କିନ୍ତୁ ବାସ୍ତବ ସମାଜର ଚିତ୍ର ପାଇବାକୁ ହେଲେ ଆମେ କହିପାରିବା ଯେ ଉନ୍ମୁକ୍ତତାର ଉଚ୍ଚତମ ପରିମାପ ପ୍ରାୟ ଶତକଡ଼ା ପଚାଶ ଭାଗ ମଧ୍ୟରେ ଗତି କରିବା ସମ୍ଭବପର । ଅତଏବ ଏହାର ପରିସୀମା ନିମ୍ନ ପ୍ରକାରେ ବ୍ୟକ୍ତ କରାଯାଇପାରେ ।




ଏଠାରେ ଲକ୍ଷ୍ୟ କରାଯାଇପାରେ ଯେ ମାର୍କିନ ଯୁକ୍ତରାଷ୍ଟ୍ର ଓ ସୋଭିଏଟ ଇଉନିୟନ ଭଳି ଦୁଇଟି ବିଭିନ୍ନ ପ୍ରକାରର ରାଷ୍ଟ୍ରର ସମାଜମାନଙ୍କରେ ମଧ୍ୟ ପ୍ରାୟ ଏକ ପରିମାପର ସାମାଜିକ ଗତିଶୀଳତା ଦେଖାଯାଇପାରେ । ଏଥିରୁ ଜଣାଯାଏ ଯେ ଜୀବନରେ ଆଦର୍ଶ ଅପେକ୍ଷା ନାଗରିକ ଜୀବନର ଅଭିବୃଦ୍ଧି ଓ ଶିଳ୍ପ ପ୍ରସାର ଦ୍ୱାରା ସାମାଜିକ ଗତିଶୀଳତା ଅଧିକ ପରିମାଣରେ ନିୟନ୍ତ୍ରିତ ହୋଇଥାଏ ।

ଆମ୍ଭେମାନେ ଏଥିପୂର୍ବରୁ କହିଅଛୁଁ ଯେ 'ଆସନ ପଦ୍ଧତି'ର ଉନ୍ମୁକ୍ତତାର ପରିମାପ କହିଲେ ଯାହା ବୁଝାଯାଏ, 'ଆସନ ସ୍ଥାୟିତ୍ୱ'ର ପରିମାପ କହିଲେ ତାହା ବୁଝାଯାଏ ନାହିଁ । କୌଣସି ଜଣେ ବ୍ୟକ୍ତି ସମାଜର ବିଭିନ୍ନ ସୋପାନରେ (ଯଥା—ତାର ଆୟ, ପଦମର୍ଯ୍ୟାଦା ଓ କ୍ଷମତା) ସମାନଭାବରେ ଊର୍ଦ୍ଧ୍ୱକୁ ବା ନିମ୍ନକୁ ଗତି କରିପାରେ । ଏହାର ଅର୍ଥ ହେଉଛି, ଜଣେ ଲୋକ ସାମାଜିକ ଗତିଶୀଳତା ଅନୁଭବ କରୁଥିଲେ ସୁଦ୍ଧା ତାହାର ଆସନ ସ୍ଥାୟୀଭୂତ ହୋଇପାରେ ।

ବିପରୀତ ପକ୍ଷରେ ଜଣେ ବ୍ୟକ୍ତିର ସାମାଜିକ ଆସନ ଅସ୍ଥାୟୀଭୂତ ହୋଇପାରେ—ହୁଏତ ତାର ଉଚ୍ଚ ପଦମର୍ଯ୍ୟାଦା ଥାଇପାରେ ମାତ୍ର ତାର ଆୟ ଓ କ୍ଷମତା ଅତି ନ୍ୟୂନ ହୋଇପାରେ - ଏବଂ ସେ ତାର ନିଜ ସ୍ତରରେ ରହିପାରେ । ତଥାପି ରୁଦ୍ଧ ସମାଜରେ ଉନ୍ମୁକ୍ତ ସମାଜ ଅପେକ୍ଷା ଅଧିକ ପରିମାଣରେ 'ଆସନ'ର ସ୍ଥାୟିତ୍ୱ ଦେଖାଯାଏ, ଏକଥା ସତ୍ୟ ।

କୌଣସି ସମାଜ କେତେ ପରିମାଣରେ ଉନ୍ମୁକ୍ତ ବା କେତେପରିମାଣରେ ରୁଦ୍ଧ, ତାହା ନିର୍ଦ୍ଦିଷ୍ଟ ହୋଇ ନଥାଏ । କୌଣସି ସମାଜର ପ୍ରକୃତି ଜାଣିବାକୁ ହେଲେ ତାହାର ବିକାଶର ଏହି ଦିଗଟିକୁ ଲକ୍ଷ୍ୟ କରିବା ନିତାନ୍ତ ଆବଶ୍ୟକ । ଏଥିରୁ ଯେଉଁ ପ୍ରମାଣ ମିଳିବ, ତାହାର ମୂଲ୍ୟ ସ୍ଥିର କରିବା ସହଜ ବ୍ୟାପାର ନୁହେଁ ।' ଉଦାହରଣସ୍ୱରୂପ ମାର୍କିନ ଯୁକ୍ତରାଷ୍ଟ୍ରରେ ସମାଜର ଅଭିମୁଖ୍ୟ ସମ୍ବନ୍ଧରେ ନାନାମତ ଦେଖାଯାଏ । ୧୯୦୦ ଖ୍ରୀଷ୍ଟାବ୍ଦ ବେଳେ ଦେଶ (ସମାଜ) ଯେତେ ଉନ୍ମୁକ୍ତ ଥିଲା, ବର୍ତ୍ତମାନ ତାହା ଠାରୁ ଅଧିକ ଉନ୍ମୁକ୍ତ କି ? ଜଣେ ଦରିଦ୍ର ବାଳକ ଉଚ୍ଚତର ସୋପାନକୁ ଉଠିବାର ସମ୍ଭାବନା ବୃଦ୍ଧି ପାଇ ଅଛି କି ? ଜଣେ ସୁଯୋଗପ୍ରାପ୍ତ ବାଳକ ନିମ୍ନତର ସୋପାନକୁ ଖସି ପଡ଼ିବାର ସମ୍ଭାବନା ବୃଦ୍ଧି ପାଇଅଛି କି ? ଅଥବା ଦେଶ (ସମାଜ) ଅଧିକ ରୁଦ୍ଧ ହୋଇ ଯାଇଅଛି କି ? ଉନ୍ନତି ପଥରେ ଅଧିକ ପ୍ରତିବନ୍ଧକ ସୃଷ୍ଟି ହୋଇଅଛି କି ? କ୍ଷତିରୁ ରକ୍ଷା ପାଇବାର ଅଧିକ ବ୍ୟବସ୍ଥା ହୋଇଅଛି କି ? ଅଥବା ଏଥି ମଧ୍ୟରେ କୌଣସି ପରିବର୍ତ୍ତନ ଘଟିନାହିଁ କି ? ଯାହା ହେଉ, ମୁଁ ଏ ପ୍ରଶ୍ନର କୌଣସି ନିର୍ଦ୍ଦିଷ୍ଟ ଉତ୍ତର ଦେବାର ଉପାୟ ଦେଖୁନାହିଁ । କିନ୍ତୁ ଏହି ପ୍ରଶ୍ନର ଅନ୍ତର୍ଗତ ସମସ୍ୟା ଗୁଡ଼ିକୁ ପରୀକ୍ଷା କରି ଦେଖିବା ପାଇଁ ଆମେ ଗୋଟିଏ କାଳ୍ପନିକ ଆଲୋଚନାର ଆଶ୍ରୟ ନେଇପାରୁଁ—ମନେକର ଜଣକର ବିଶ୍ୱାସ ଯେ ସମାଜ ଅଧିକ ଉନ୍ମୁକ୍ତ ହୋଇଅଛି ; ଅନ୍ୟ ଜଣକର ମତରେ ସମାଜ ଅଧିକ ରୁଦ୍ଧ ହୋଇ ଯାଇଅଛି । ସେ ଦୁହିଁଙ୍କର ଯୁକ୍ତି ନିମ୍ନଲିଖିତ ରୂପ ଧାରଣ କରିପାରେ ।

| ଅଧିକ ଉନ୍ମୁକ୍ତ | ଅଧିକ ରୁଦ୍ଧ |
|---|---|
| ୧ । ଯେଉଁ ସମାଜରେ ଗୋଟିଏ ରୁଦ୍ଧ ଶ୍ରେଣୀ ପ୍ରଥା ଥାଏ, ସେଥିରେ ଏକ କ୍ଷମତାଶାଳୀ ଭଦ୍ର ଗୋଷ୍ଠୀ ଥାଆନ୍ତି । ଏହି ଗୋଷ୍ଠୀ ସମସ୍ତ ପ୍ରଧାନ ଅନୁଷ୍ଠାନରେ ପ୍ରାଧାନ୍ୟ ବିସ୍ତାର କରନ୍ତି । କିନ୍ତୁ ୧୯୦୦ ଖ୍ରୀଷ୍ଟାବ୍ଦ ଠାରୁ ଶ୍ରମିକ ସଙ୍ଘ ମାନ- | ୧ । ଶୀତଳ ଯୁଦ୍ଧ, ବୃହତ୍ ଶିଳ୍ପମାନଙ୍କର ଅଭ୍ୟୁତ୍ଥାନ, ଅଧିକାଂଶ ଲୋକଙ୍କ ପକ୍ଷରେ ଉଚ୍ଚ ସରକାରୀ ସଂସ୍ଥାରେ ସ୍ଥାନାଭାବ ହେତୁ ନମନୀୟତାର ହ୍ରାସ ଓ କ୍ଷମତାର କେନ୍ଦ୍ରୀକରଣ ଘଟିଅଛି । |

ଙ୍କର, ସରକାରୀ କର୍ମଚାରୀ ଓ ଅନ୍ୟାନ୍ୟ ସାମ୍ୟ ପ୍ରତିଷ୍ଠାକାରୀ ଶକ୍ତିର ବିଶେଷ ବୃଦ୍ଧି ଘଟିଅଛି ।

| | |
|---|---|
| ୨ । ୧୯୦୦ ଖ୍ରୀଷ୍ଟାବ୍ଦରେ ଆମେରିକାର ଜାତୀୟ ଆୟ ଯେପରି ବଣ୍ଟନ ହେଉଥିଲା, ତାହା ଅଧିକ ସମ-ଭାବରେ ବଣ୍ଟନ ହେଉଅଛି । ଉଚ୍ଚତମ ଆୟବିଶିଷ୍ଟ ଶତକଡ଼ା ୨୦ ଜଣ ଲୋକ ସମଗ୍ର ଆୟର ଯେତେ ପାଉଥିଲେ, ଏବେ ତାହା ଅପେକ୍ଷା ଅନେକ କମ ପାଉ-ଅଛନ୍ତି । | ୨ । ହୁଏ ତ ଏହା ସତ୍ୟ ; କିନ୍ତୁ ଏହାର ଯଥେଷ୍ଟ ପ୍ରମାଣ ନାହିଁ । ପୂର୍ବ ଅପେକ୍ଷା ଏବେ ଅଧିକ କୋଟିପତିଙ୍କର ସୃଷ୍ଟି ହୋଇ-ଅଛି । ଜୀବନଯାତ୍ରା ନିର୍ବାହ ପାଇଁ ବ୍ୟୟର ପରିମାଣ ସ୍ଥିର କରିବା ଏକ କଠିନ ବ୍ୟାପାର । |
| ୩ । ଜୀବନ ଧାରଣ ରୀତି—ଫେଶନ, ଭିନ୍ନ ଭିନ୍ନ ଉପଲକ୍ଷରେ ବିଭିନ୍ନ ପୋଷାକ, ଭାଷାର ବିଭିନ୍ନତା—ଏ ସବୁ ଦୃଷ୍ଟିରୁ ଆଗେ ଯେତେ ଶ୍ରେଣୀ ଦେଖା ଯାଉଥିଲେ ଏବେ ତାହା ଅପେକ୍ଷା କମ ଶ୍ରେଣୀ ଦେଖା-ଯାଉଅଛନ୍ତି । | ୩ । ଏହା ସତ୍ୟ ; ମାତ୍ର ଅନ୍ୟ ପ୍ରକା-ରର ବିଭେଦ ଏସବୁର ସ୍ଥାନ ଅଧିକାର କରିଅଛି । ଭ୍ରମଣ, ବ୍ୟୟବହୁଳ ଆମୋଦ ପ୍ରମୋଦ, କଳାବିଦ୍ୟା ଶିକ୍ଷା ପ୍ରଭୃତି ଦେଖା ଦେଇଅଛି । |
| ୪ । ଜାତି ଜାତି ମଧ୍ୟରେ ଏବେ ଭେଦଭାବ ପୂର୍ବପରି ତୀବ୍ର ନୁହେଁ । ନିଗ୍ରୋମାନେ ବହୁ ସଂଖ୍ୟାରେ ଶିକ୍ଷା ପାଉଅଛନ୍ତି ଓ ସେମାନଙ୍କ ମଧ୍ୟରୁ ଅନେକେ ମଧ୍ୟବିତ୍ତ ଶ୍ରେଣୀର ଅନ୍ତର୍ଗତ । | ୪ । ଏହା ନିଃସନ୍ଦେହ ସତ୍ୟ ହେଲେହେଁ ଏବେ ମଧ୍ୟ ଭେଦଭାବ ରହିଅଛି । ନିଗ୍ରୋମାନେ ଯାହା ପାଇବାକୁ ଆଶା କରନ୍ତି ଓ ଯାହା ପାଇ ଅଛନ୍ତି ତାହା ମଧ୍ୟରେ ପୂର୍ବ ଅପେକ୍ଷା ତାରତମ୍ୟ ବଢ଼ିଛି, କମିନାହିଁ । |
| ୫ । ଆମ ଅର୍ଥନୀତିର ପରିବର୍ତ୍ତନ ଫଳରେ ମଧ୍ୟବିତ୍ତ ଶ୍ରେଣୀ ପାଇଁ ଅଧିକ ପରିମାଣରେ ଚାକିରି ସୃଷ୍ଟି ହୋଇଅଛି । ତେଣୁ ଅଧିକ ଲୋକ ଉନ୍ନତି କରି ପାରୁଅଛନ୍ତି ; ଅଳ୍ପ ଲୋକଙ୍କର ଅବନତି ଘଟୁଛି । | ୫ । ଏହି ଲାଭ ସଙ୍ଗେ ଦଳକୁ ଦଳ କୋଟି କୋଟି ଲୋକ କିପରି ବେକାର ହେଉଅଛନ୍ତି ସେଥି-ପ୍ରତି ସ୍ୱୟଂକ୍ରିୟ ଯନ୍ତ୍ରର ପ୍ରଚଳନର ଫଳ ପ୍ରତି ମଧ୍ୟ ଦୃଷ୍ଟି ଦେବା ଆବଶ୍ୟକ । |

୬ । ୧୯୦୦ ଖ୍ରୀଷ୍ଟାବ୍ଦ ପରେ ଶିକ୍ଷା କ୍ଷେତ୍ରରେ ଆମେରିକାରେ ଅଭୂତପୂର୍ବ ଉନ୍ନତି ଦେଖାଯାଇଅଛି । ଅଧିକ ସଂଖ୍ୟକ ଛାତ୍ରଛାତ୍ରୀ ସ୍ୱଳ୍ପ ବ୍ୟୟରେ ବିଶ୍ୱବିଦ୍ୟାଳୟ ସ୍ତରର ଶିକ୍ଷା ପାଇପାରୁଛନ୍ତି ।

୬ । ଏକଥା ସତ୍ୟ । କିନ୍ତୁ ଏବେ ମଧ୍ୟ ଶିକ୍ଷାର ଗୁଣଗତ ପାର୍ଥକ୍ୟ ରହିଛି । ଶିକ୍ଷା ଲାଭର ସୁଯୋଗକୁ ଅର୍ଥନୈତିକ ସୁଯୋଗର ସହଗାମୀ କରାଯାଇପାରି ନାହିଁ । କଲେଜଗୁଡ଼ିକ ସ୍ୱତନ୍ତ୍ରଭୂତ ହୋଇଥିବାରୁ ପ୍ରାଚୀନ ପ୍ରଥା ସ୍ଥାୟୀ ହେଉଅଛି ।

ଏ ପ୍ରକାର ସପକ୍ଷ ଓ ବିପକ୍ଷ ଯୁକ୍ତି ଆହରଣ କରାଯାଇପାରେ । ସଂକ୍ଷେପରେ ବିପରୀତ ଭାବରେ ଯୁକ୍ତିଗୁଡ଼ିକର ଆଲୋଚନା କରାଯାଉ । ଏବେ ଡାହାଣ ପାଖର ଯୁକ୍ତି ପ୍ରଥମେ ପଢ଼ି ତାହାପରେ ବାମ ପାଖର ଯୁକ୍ତିକୁ ପାଠ କର ।

୭ । କିନ୍ତୁ ନୂତନ ନୂତନ ଶିଳ୍ପର କ୍ରମିକ ବିକାଶ ଫଳରେ ଗୋଟିଏ ନୂତନ ଆଧୁନିକ ସୀମାନ୍ତ ଦେଖା ଦେଇଅଛି ।

୭ । ଊନବିଂଶ ଶତାବ୍ଦୀର ଶେଷଭାଗରେ ଆମେରିକାର ସୀମାନ୍ତ ବନ୍ଦ ହେବା ପରେ ଏହା ଗୋଟିଏ ଉନ୍ମୁକ୍ତ ସମାଜ ହେବାର ପ୍ରଧାନ ଶକ୍ତି ହରାଇଲା ।

୮ । ଆଭ୍ୟନ୍ତରୀଣ ଚଳନଶୀଳତା, ବିଶେଷତଃ କୃଷି ପରିବର୍ତ୍ତେ ସହରରର ଶିଳ୍ପ ପ୍ରତି ଆଗ୍ରହର ଫଳ ମଧ୍ୟ ତାହାହିଁ ।

୮ । ଆମେରିକାର ସମାଜ ପଦ୍ଧତି ଉନ୍ମୁକ୍ତ ହେବାର ଗୋଟିଏ ପ୍ରଧାନ କାରଣ ଥିଲା, ବହୁ ସଂଖ୍ୟକ ଔପନିବେଶିକଙ୍କର ଆଗମନ । ପ୍ରତ୍ୟେକ ନବାଗତ ଔପନିବେଶିକ ଦଳ ଅନ୍ୟ ଦଳମାନଙ୍କୁ ଟିକିଏ ଅଗ୍ରଗତି କରିବାକୁ ବାଧ୍ୟ କରୁଥିଲେ । ଏବେ ଏହା ବିଶେଷ ଭାବରେ ହ୍ରାସଲାଭ କରିଅଛି ।

୯ । କିନ୍ତୁ ଅମଲାତନ୍ତ୍ର ଅନୁଷ୍ଠାନସମୂହ ମୁକ୍ତିଯୁକ୍ତ, ବସ୍ତୁନିଷ୍ଠ ନିର୍ବାଚନ ଓ ପ୍ରତିଯୋଗିତାମୂଳକ ପରୀକ୍ଷା ଦ୍ୱାରା ନିଯୁକ୍ତ ହେଉଥିବାରୁ ନିମ୍ନ ସ୍ତରର ଲୋକେ ମଧ୍ୟ ନିଯୁକ୍ତି ପାଇପାରୁଅଛନ୍ତି ।

୯ । ଏବେ ଆମର ଗୋଟିଏ ପ୍ରାଚୀନ, ସୁପ୍ରତିଷ୍ଠିତ ଭଦ୍ର ସମାଜ ଅଛି ; ଗୋଟିଏ ସୁଦୃଢ଼ ଅର୍ଥନୀତି ଅଛି ; ନୂତନ ପ୍ରତିଦ୍ୱନ୍ଦୀଙ୍କ ସହ ବିରୋଧ କରିପାରିବା ଭଳି ବିରାଟ କର୍ପୋରେଶନମାନ ଅଛି । ଏଥିରେ କ୍ଷୁଦ୍ର ବ୍ୟବସାୟୀ ଓ କ୍ଷୁଦ୍ର କମ୍ପାନୀ ତିଷ୍ଠି ରହିବାର ଆଶା ପ୍ରାୟ ନାହିଁ ।

ବାସ୍ତବରେ ପ୍ରଶ୍ନଟି ବଡ଼ ଜଟିଳ । ମୋର ବ୍ୟକ୍ତିଗତ ମତ ଏହି ଯେ ମାର୍କିନ୍ ଯୁକ୍ତରାଷ୍ଟ୍ର ୧୯୦୦ ଖ୍ରୀଷ୍ଟାବ୍ଦ ବେଳକୁ ଯେତେ ଉନ୍ମୁକ୍ତ ଥିଲା, ଏବେ ତାହା ଅପେକ୍ଷା ସାମାନ୍ୟ ପରିମାଣରେ ଅଧିକ ଉନ୍ମୁକ୍ତ ହୋଇଅଛି । ଉପରେ ଏ ସମ୍ବନ୍ଧରେ ଯେଉଁ ଚତୁର୍ଥ, ପଞ୍ଚମ ଓ ଷଷ୍ଠ ଯୁକ୍ତି ପ୍ରଦର୍ଶିତ ହୋଇଅଛି, ତାହା ଯଥାର୍ଥ । ଅବଶ୍ୟ ଏହାର ବିରୋଧରେ କେତେକ ଯୁକ୍ତି ଅଛି । ମୋର ମତ ଠିକ୍ ହେଉ ବା ନ ହେଉ ଉଭୟ ପକ୍ଷର ଯୁକ୍ତିଗୁଡ଼ିକୁ ତୁଳନା କରିବାକୁ ହେବ ; କାରଣ କୌଣସି ସମାଜକୁ ବିଚାର କଲାବେଳେ ଏହା ହେଉଛି ମୌଳିକ ବିଷୟ । ବିଶେଷତଃ ସଂଖ୍ୟାଲଘୁ ସମ୍ପ୍ରଦାୟ ବିଷୟର ଆଲୋଚନାରେ ଏହା ବିଶେଷ ଗୁରୁତ୍ୱପୂର୍ଣ୍ଣ [୮]

[ ୮ ] ଏ ବିଷୟରେ ଅନେକ ଗ୍ରନ୍ଥ ଲେଖାଯାଇଅଛି । ମରିସ୍ ରୋସେନବର୍ଗଙ୍କ ଲିଖିତ ଓ ସୋସିଅ୍ୟାଲ ଫୋର୍ସେସ୍ ପତ୍ରିକାର ୧୯୫୩ ମସିହା ଅକ୍ଟୋବର ସଂଖ୍ୟାର ୨୨-୨୭ ପୃଷ୍ଠାରେ ପ୍ରକାଶିତ ପାରସିପ୍ଟ୍ୟୁଆଲ ଅବ୍‌ଷ୍ଟାକ୍ଲସ୍ ଟୁ କ୍ଲାସ୍ କନସାସ୍‌ନେସ୍ ପ୍ରବନ୍ଧ ; ରବିନ୍ ଉଇଲିଅମସ୍‌ଙ୍କ ଲିଖିତ ଓ ନିଉୟର୍କର ଆଲଫ୍ରେଡ଼ ଏ. ନପଙ୍କ ଦ୍ୱାରା ୧୯୬୦ ମସିହାରେ ପ୍ରକାଶିତ ଆମେରିକାନ୍ ସୋସାଇଟି ପୁସ୍ତକର (ଦ୍ୱିତୀୟ ସଂସ୍କରଣ ) ପଞ୍ଚମ ଅଧ୍ୟାୟ ; ଆମେରିକାନ ସୋସିଓଲଜିକାଲ ରିଭିଉ ପତ୍ରିକାର ୧୯୫୧ ମସିହା ଡିସେମ୍ବର ସଂଖ୍ୟାର ୭୭୫-୭୮୩ ପୃଷ୍ଠାରେ ପ୍ରକାଶିତ ଓ ଗିଡ଼ିଅନ ଜୋବାର୍ଗଙ୍କ ଲିଖିତ ଆର ସୋସିଅ୍ୟାଲ କ୍ଲାସେସ୍ ଇନ ଆମେରିକା ବିକାମିଂ ମୋର ରିଜିଡ ?' ପ୍ରବନ୍ଧ ; ମିନିଆପଲିସର ମିନେସୋଟା ଇଉନିଭରସିଟି ପ୍ରେସରୁ ୧୯୫୫ ମସିହାରେ ପ୍ରକାଶିତ ଏବଂ ଡବ୍ଲ୍ୟୁ ଲଏଡ଼ ୱାରନାର ଓ ଜେମସ୍ ସି ଆବେ-ଗଲେନ୍‌ଙ୍କ ଦ୍ୱାରା ଲିଖିତ ଅକୁପେସନ୍ୟାଲ ମୋବିଲିଟି ଇନ ଆମେରିକାନ୍ ବିଜିନେସ୍ ଆଣ୍ଡ ଇଣ୍ଡଷ୍ଟ୍ରି ୧୯୨୮-୧୯୫୨ , ଅକ୍ସଫୋର୍ଡ ଇଉନିଭରସିଟି ପ୍ରେସରୁ ୧୯୫୬ ମସିହାରେ ପ୍ରକାଶିତ ସି. ରାଇଟ ମିଲସ୍‌ଙ୍କର ଦ ପାୱାର ଇଲାଇଟ ପୁସ୍ତକ ; କାଲିଫର୍ଣ୍ଣିଆର ଷ୍ଟାନଫୋର୍ଡ ଇଉନିଭରସିଟି ପ୍ରେସରୁ ୧୯୫୯ ମସିହାରେ ପ୍ରକାଶିତ ରାଲ୍ଫ ଡାହ୍ରେନ୍‌ଡ୍ରଫ୍‌ଙ୍କର କ୍ଲାସ ଆଣ୍ଡ କନଫ୍ଲିକ୍ଟ ଇନ ଇଣ୍ଡଷ୍ଟ୍ରିୟାଲ ସୋସାଇଟି ପୁସ୍ତକ ; ଡରହାମର ଡିଉକ୍ ଇଉନିଭରସିଟି ପ୍ରେସରୁ ପ୍ରକାଶିତ ମିଲଟନ୍ ଏମ୍. ଗାର୍ଡନଙ୍କ ଲିଖିତ ସୋସିଅ୍ୟାଲ କ୍ଲାସ ଇନ ଆମେରିକାନ ସୋସାଇଟି ପୁସ୍ତକ , ନିଉୟର୍କର ହଲ୍ଟ , ରାଇନ ହାର୍ଟ ଓ ଉଇନସନ୍‌ଙ୍କ ଦ୍ୱାରା ୧୯୫୭ରେ ପ୍ରକାଶିତ ଓ ଜୋସେଫ୍ କ୍ୟାହ୍ଲଙ୍କ ଦ୍ୱାରା ଲିଖିତ ଆମେରିକାନ କ୍ଲାସ ଷ୍ଟ୍ରାକ୍‌ଚର ପୁସ୍ତକ ; ନିଉୟର୍କର ଫ୍ରି ପ୍ରେସରୁ ୧୯୬୦ ମସିହାରେ ପ୍ରକାଶିତ ଲିଓନାର୍ଡ ରିସ୍‌ମ୍ୟାନ୍‌ଙ୍କ କ୍ଲାସ ଇନ ଆମେରିକାନ ସୋସାଇଟି ପୁସ୍ତକ ଏବଂ ନିଉୟର୍କର ହାରକୋର୍ଟ, ବ୍ରେସ୍ ଏଣ୍ଡ ୱାଲ୍‌ଡଙ୍କ ଦ୍ୱାରା ୧୯୫୭ ମସିହାରେ ପ୍ରକାଶିତ ଓ ବାରନାର୍ଡ ବାରବାରଙ୍କଦ୍ୱାରା ଲିଖିତ, ସୋସିଅ୍ୟାଲ ଷ୍ଟ୍ରାଟିଫିକେସନ ପୁସ୍ତକ ଦ୍ରଷ୍ଟବ୍ୟ ।

ସାମାଜିକ ସ୍ତରୀକରଣ ବିଷୟକ ଆଲୋଚନାରେ ଅନ୍ୟାନ୍ୟ ଅନେକ ବିଷୟ ପ୍ରତି ଦୃଷ୍ଟି ଦେବାକୁ ହେବ । ସମାଜର ସଭ୍ୟମାନେ ବ୍ୟକ୍ତିଗତ ଭାବରେ କେତେଦୂର ଶ୍ରେଣୀ-ସଚେତନ ଅଟନ୍ତି ? ଅର୍ଥାତ୍ ସେମାନଙ୍କର ସାମାଜିକ ସ୍ଥାନ ବିଷୟରେ କେତେଦୂର ସଚେତନ ଓ ଏହି ସଚେତନତାର ପରିମାଣ ଅନୁସାରେ ଫଳ କଅଣ ? ବିଭିନ୍ନ ସ୍ତର ମଧ୍ୟରେ ବିରୋଧର ମାତ୍ରା କେତେ ? ଏହି ବିରୋଧର ପ୍ରଚୁରତା ବା ବିରଳତାର ସମ୍ଭାବନା ସମାଜର କେଉଁ କେଉଁ ବିଭାବ ଉପରେ ନିର୍ଭର କରେ ? ସମାଜର ଅନ୍ୟାନ୍ୟ ଅଙ୍ଗ ସହିତ ସ୍ତରୀକରଣ ପଦ୍ଧତି କିପରି ସଂଯୁକ୍ତ ? ଏହା ଗୋଟିଏ ମୌଳିକ ସାମାଜିକ ସମସ୍ୟା ହୋଇଥିବାରୁ ଆମ୍ଭେମାନେ ଏଠାରେ ସଂକ୍ଷେପରେ ଏହାର ଆଲୋଚନା କରିବା । ଉଦାହରଣ ସ୍ୱରୂପ ଲିପସେଟ ଓ ବେଣ୍ଡିକ୍ସ ଧର୍ମଗତ ବିଶ୍ୱାସ ଓ ପରିବାର ସହିତ ସ୍ତରୀକରଣର ସମ୍ବନ୍ଧ ଉଲ୍ଲେଖ କରିଅଛନ୍ତି ।

ଯେଉଁସବୁ ସଂସ୍କୃତିରେ ସଫଳତା ଉପରେ ଗୁରୁତ୍ୱଆରୋପ କରାଯାଏ, ସେସବୁରେ ଲୋକ ବିଫଳ ହେଲେ ମଧ୍ୟ ନିଜକୁ ଚଳାଇ ନେବାର ଆବଶ୍ୟକତା ସ୍ୱୀକାର କରାଯାଇଥାଏ । ଏହି ଆବଶ୍ୟକତା ପୂରଣ କରିବାର କେତେଗୁଡ଼ିଏ ଉପାୟ ବା କୌଶଳ ଅଛି । ଆମେରିକା ପକ୍ଷରେ ଯେଉଁ ଦୁଇଟି ଉପାୟ ବିଶେଷ ଭାବରେ ଗୁରୁତ୍ୱପୂର୍ଣ୍ଣ ବୋଲି ବିବେଚିତ, ତାହାର ଉଲ୍ଲେଖ କରାଯାଇପାରେ । ସେ ଦୁଇଟି ହେଉଛି :—(୧) ପରକାଳରେ ବିଶ୍ୱାସ କରୁଥିବା ଧର୍ମ । ଏହା ଶିକ୍ଷା ଦିଏ ଯେ, ପରକାଳରେ ଧାର୍ମିକ ଲୋକେ ସୁଖଭୋଗ କରନ୍ତି, ଧନୀଲୋକେ କରନ୍ତି ନାହିଁ । (୨) ଅତିରିକ୍ତ ସନ୍ତାନବାତ୍ସଲ୍ୟ । ଏହା ଫଳରେ ପିତାମାତାମାନେ ନିଜ ନିଜର ଲକ୍ଷ୍ୟ ସିଦ୍ଧିରେ ବିଫଳ ହୋଇଥିଲେହେଁ ନିଜ ସନ୍ତାନମାନଙ୍କର ଜୀବନ ସମ୍ବନ୍ଧରେ ଉଚ୍ଚାକାଂକ୍ଷା ପୋଷଣ କରି ସନ୍ତୋଷଲାଭ କରିବାର ପ୍ରୟାସ କରିଥାନ୍ତି । ଏ ଦୁଇଟି ଉପାୟ ସାମାଜିକ ଅସ୍ଥିରତା (ଇନଷ୍ଟାବିଲିଟି) ନିରୋଧ କରିବାର ପନ୍ଥାରୂପେ ଗ୍ରହଣ କରାଯାଇପାରେ । ଉଦାହରଣ ସ୍ୱରୂପ ଆମେରିକାରେ ସମାଜ ଦଳିତ ସ୍ତରର ଲୋକେ ବାସ୍ତବ (ରାଡିକ୍ୟାଲ) ରାଜନୀତିର ଚର୍ଚ୍ଚା ନ କରି ପାରମାର୍ଥିକ ଖ୍ରୀଷ୍ଟିଆନ ଧର୍ମର ଚର୍ଚ୍ଚାରେ ନିଯୁକ୍ତ ରହନ୍ତି । ରୁଷିଆରେ ରାଜନୈତିକ ପ୍ରତିବାଦ ନିଷିଦ୍ଧ । ସେଠାରେ ମଧ୍ୟ ଅପେକ୍ଷାକୃତ ଦରିଦ୍ରଶ୍ରେଣୀର ଲୋକେ 'ଧର୍ମକୁ ପ୍ରତ୍ୟାବର୍ତ୍ତନ' କରିବାର କେତେକ ପ୍ରମାଣ ମିଳେ । ଏହି ଉଭୟ ସମାଜ

ନିଜ ଭାବଧାରା ଅନୁସାରେ ସନ୍ତାନମାନଙ୍କର ଉନ୍ନତତର ଜୀବନଯାପନ ଉପରେ ବିଶେଷ ଗୁରୁତ୍ୱ ଆରୋପ କରିବାର ଅନୁମାନ ହୁଏ । ଏସିଆ ଏବଂ ଇଉରୋପର ସମାଜରେ 'ସମସ୍ତଙ୍କ ପାଇଁ ସମାନ ସୁଯୋଗ' ନୀତି ଉପରେ ସେତେ ଗୁରୁତ୍ୱ ଦିଆଯାଏ ନାହିଁ । ସେଠାରେ ସମାଜର ନିମ୍ନସ୍ତରର ଲୋକମାନଙ୍କ ମଧ୍ୟରେ ବାମପନ୍ଥୀ ରାଜନୈତିକ ଆନ୍ଦୋଳନ ବିଶେଷ ପରିମାଣରେ ପରିଦୃଷ୍ଟ ହୁଏ । ବୋଧହୁଏ, ଏହାର କାରଣ ହେଉଛି- ବାମପନ୍ଥୀମାନେ ଶିକ୍ଷା ଦିଅନ୍ତି ଯେ ସାମାଜିକ ପଦ୍ଧତିକୁ ପରିବର୍ତ୍ତିତ କରିପାରିଲେ ଚିରାଚରିତ ବୈଷମ୍ୟ ଦୂରୀଭୂତ ହୋଇପାରିବ [ ୯ ] ।

ଏସବୁ କହିବାର ଉଦ୍ଦେଶ୍ୟ ହେଉଛି ଯେ ସାଧାରଣ ଭାବରେ ହେଉ ବା ଯେଉଁ ସଂଖ୍ୟା ଲଘୁ ସମ୍ପ୍ରଦାୟର ସମାଜରେ ସ୍ଥାନ ବିଷୟ ଆମେ ଆଲୋଚନା କରିବାକୁ ଯାଉଛୁ ସେଥିପ୍ରତି ବିଶେଷ ଦୃଷ୍ଟି ଦେଇହେଉ, କୌଣସି ସମାଜର ସ୍ତରୀକରଣ ପଦ୍ଧତିକୁ ଅଧ୍ୟୟନ କଲାବେଳେ ପାଠକକୁ ସେହି ସମାଜର ଅନ୍ୟାନ୍ୟ ଅନେକ ଗୁରୁତ୍ୱପୂର୍ଣ୍ଣ ବିଷୟ ମଧ୍ୟ ଆଲୋଚନା କରିବାକୁ ହେବ ।

---

[ ୯ ] ଲିପସେଟ ଓ ବେଣ୍ଡିକ୍ସଙ୍କ ପୂର୍ବୋଲ୍ଲିଖିତ ପୁସ୍ତକର ୬୩ ପୃଷ୍ଠା ଦେଖ ।

# ତୃତୀୟ ଅଧ୍ୟାୟ

## ସଂଖ୍ୟାଲଘୁ ସମ୍ପ୍ରଦାୟ, ଜାତି ବା ବର୍ଣ୍ଣ ଓ ଶ୍ରେଣୀ

ପୂର୍ବବର୍ତ୍ତୀ ଅଧ୍ୟାୟରେ ଆମ୍ଭେମାନେ ଦେଖିଅଛୁଁ ଯେ ସମାଜସବୁ କେବଳ ପୃଥଗ୍‌ଭୂତ (ଡିଫରେନ୍‌ସିଏଟେଡ) ନୁହନ୍ତି, ସ୍ତରୀଭୂତ (ଷ୍ଟ୍ରାଟିଫାଇଡ) ମଧ୍ୟ । ସମାଜର ଯାହା କିଛି ଦାନ, ତାହା ଅସମ ଭାବରେ ବଣ୍ଟନ କରାଯାଉଅଛି । ଏହି ଅସମତା ସମାଜର ଅନୁଷ୍ଠାନମାନଙ୍କ ଆକାରରେ ରୂପାୟିତ ହୋଇଅଛି ; ତେଣୁ ଏହା ପୁରୁଷାନୁକ୍ରମେ ଚାଲିଆସିଅଛି । କେବଳ ତୁଳନା ନିମନ୍ତେ ଗୋଟାଏ ଭିତ୍ତି ବାହାର କରିବା ପାଇଁ ଆମ୍ଭେମାନେ ପ୍ରକୃତ ଅବସ୍ଥାର ଗୋଟାଏ ସହଜବୋଧ ଚିତ୍ର ଦେଇ କହିଅଛୁଁ ଯେ ସମାଜସମୂହକୁ ଦୁଇଟି ସୀମା ମଧ୍ୟରେ ଅବସ୍ଥାପିତ କରାଯାଇପାରେ । ଉକ୍ତ ସୀମା ଦୁଇଟି ହେଉଛି, ଉନ୍ମୁକ୍ତ ସମାଜ ଓ ରୁଦ୍ଧ ସମାଜ । ବର୍ତ୍ତମାନ ଆମ୍ଭେମାନେ ପୂର୍ବରୁ ବାଦ ଦେଇଥିବା କେତେକ ଜଟିଳ ବିଷୟର ଉତ୍‌ଥାପନ କରିବା ଆବଶ୍ୟକ । ସ୍ତରୀକରଣ (ଷ୍ଟ୍ରାଟିଫିକେଶନ) ସହିତ ଧର୍ମ, ରାଜନୀତି ଓ ଆଇନ ପ୍ରଭୃତି ଅନ୍ୟାନ୍ୟ ସାମାଜିକ ସଂଗଠନର (ଷ୍ଟ୍ରାକ୍‌ଚର) ସମ୍ବନ୍ଧ, ପ୍ରଧାନ କୃଷ୍ଟିଗତ ମୂଲ୍ୟବୋଧର ପ୍ରଭାବ ଏବଂ ଏସବୁ ସଙ୍ଗେ ସଂପୃକ୍ତ ବ୍ୟକ୍ତିମାନଙ୍କର ଦୃଷ୍ଟିକୋଣ (ଆଟିଚୁଡ) ଏହି ଜଟିଳତାର ଅନ୍ତର୍ଗତ ।

ଏହି ପୁସ୍ତକଟି ମୁଖ୍ୟତଃ ସଂଖ୍ୟାଲଘୁ ସମ୍ପ୍ରଦାୟ ଓ ସଂଖ୍ୟାଗୁରୁ ସମ୍ପ୍ରଦାୟ ସହିତ ତାହାର ସମ୍ବନ୍ଧକୁ ନେଇ ଲିଖିତ । ସଂଖ୍ୟାଲଘୁ, ସଂଖ୍ୟାଗୁରୁ ଏପରି ଶବ୍ଦ ବ୍ୟବହାର କରିବାର ଆବଶ୍ୟକତା କଅଣ ? କେବଳ ନିମ୍ନ ଶ୍ରେଣୀ, ମଧ୍ୟମ ଶ୍ରେଣୀ ଓ ଉଚ୍ଚ ଶ୍ରେଣୀ କିମ୍ବା ଏଗୁଡ଼ିକର ସାମାନ୍ୟ ପରିବର୍ତ୍ତନ କରି ଅନ୍ୟ ଶବ୍ଦ ବ୍ୟବହାର କଲେ କ୍ଷତି କଅଣ ? ସଂଖ୍ୟାଲଘୁ ସମ୍ପ୍ରଦାୟକୁ ଜାତି ବା ବର୍ଣ୍ଣ କୁହାଯାଇପାରିବ କି ? ଅଥବା ଆମ୍ଭେମାନେ ପ୍ରକୃତ ଅବସ୍ଥାର ଯେଉଁ ଅଂଶର ଆଲୋଚନା କରିବାକୁ ଯାଉଅଛୁ, ସେଥିରେ ଏତେ ଯଥେଷ୍ଟ ପ୍ରଭେଦ ଅଛି ଯେ, ଏପରି ଦୁଇଟି ଶବ୍ଦ ବ୍ୟବହାର କରିବା ବାଞ୍ଛନୀୟ କି ?

ଆମ୍ଭେମାନେ ଜଟିଳ ବିଭେଦର ଆଲୋଚନା କରିବାକୁ ଯାଉଅଛୁଁ ; ତେଣୁ ଆମ୍ଭମାନଙ୍କର ଟିକିଏ ସାବଧାନତା ଅବଲମ୍ବନ କରିବା ଆବଶ୍ୟକ । ଏପରି ସ୍ଥଳେ ସଂଖ୍ୟାଲଘୁ ସମ୍ପ୍ରଦାୟର ଗୋଟିଏ ବିଧିବଦ୍ଧ ସଂଜ୍ଞାରୁ ଆରମ୍ଭ କରିବା ଭଲ ହେବ ।

## ଲୁଇସ ୱାଇର୍ଥଙ୍କ ମତରେ—

ଯେଉଁମାନେ ନିଜର ଶାରୀରିକ ବା କୃଷ୍ଟିଗତ ସ୍ୱାତନ୍ତ୍ର୍ୟ ହେତୁ ସେମାନେ ବାସ କରୁଥିବା ସମାଜର ଅନ୍ୟମାନଙ୍କଠାରୁ ବାରି ହୋଇପଡ଼ି ଭେଦମୂଳକ ଓ ଅସମ ବ୍ୟବହାର ପାଇଥାନ୍ତି ଏବଂ ଫଳତଃ ନିଜକୁ ସମଷ୍ଟିଗତ ଭାବରେ ଭେଦ ଭାବର ପାତ୍ର ବୋଲି ମନେକରନ୍ତି, ସେମାନଙ୍କୁ ସଂଖ୍ୟାଲଘୁ ସମ୍ପ୍ରଦାୟ ବୋଲି କୁହାଯାଇପାରେ [ ୧ ] ।

'ଭେଦମୂଳକ ଓ ଅସମ ବ୍ୟବହାର' କହିବା ଦ୍ୱାରା ବୁଝିବାକୁ ହେବ ନାହିଁ ଯେ ସେମାନେ ନିଶ୍ଚୟ ସମାଜର ନିମ୍ନ ସ୍ତରରେ ଅବସ୍ଥିତ । ଯଦି କୌଣସି ସମ୍ମାନାସ୍ପଦ ଉଚ୍ଚ ବେତନ ବିଶିଷ୍ଟ ପଦ ପାଇଁ ଦୁଇଜଣ ସୁଶିକ୍ଷିତ ଓ ସୁଯୋଗ୍ୟ ପ୍ରାର୍ଥୀ ଥାଆନ୍ତି ଓ ସେ ଦୁହିଁଙ୍କ ମଧ୍ୟରୁ ଜଣେ କେବଳ କୌଣସି ନିର୍ଦ୍ଦିଷ୍ଟ ସମ୍ପ୍ରଦାୟର ଅନ୍ତର୍ଗତ ହୋଇଥିବାରୁ ଉକ୍ତ ପଦରେ ନିଯୁକ୍ତି ନ ପାଏ, ତେବେ ଏହାର ଅର୍ଥ ନୁହେ ଯେ ତାହାର ଆସନ ( ଷ୍ଟେଟାସ୍ ) ନିମ୍ନ ଶ୍ରେଣୀରେ ; ବରଂ ତାହାର ଆସନ ସଂଖ୍ୟାଲଘୁ ସମ୍ପ୍ରଦାୟରେ ବୋଲି କୁହାଯିବ । ଯେଉଁ ସମ୍ପ୍ରଦାୟର ଲୋକଙ୍କୁ ଜୀବନର ମୂଲ୍ୟବୋଧ ଅନୁସରଣରେ ସେମାନଙ୍କର ସମଯୋଗ୍ୟସମ୍ପନ୍ନ ସମ୍ପ୍ରଦାୟର ଲୋକଙ୍କ ଅପେକ୍ଷା ଅଧିକ ପ୍ରତିବନ୍ଧକର ସମ୍ମୁଖୀନ ହେବାକୁ ପଡ଼େ ସେ ସମ୍ପ୍ରଦାୟ ସମାଜ ପାବଚ୍ଛର ଯେଉଁ ସୋପାନରେ ଥାଉ ନା କାହିଁକି, ତାହାକୁ ସଂଖ୍ୟାଲଘୁ ସମ୍ପ୍ରଦାୟ କୁହାଯିବ । ଶ୍ରେଣୀ ପଦ୍ଧତି ଉପରେ ଏହି ପ୍ରଭେଦଟି ପ୍ରତିଷ୍ଠିତ । ଅତଏବ ବୁଝିବାକୁ ହେବ ଯେ ସଂଖ୍ୟାଲଘୁ ସମ୍ପ୍ରଦାୟର ଲୋକ ହେଲେ ସେ ଯେ ଅବଶ୍ୟ ନିମ୍ନ ଶ୍ରେଣୀର ହେବ, ଏପରି ନୁହେଁ ; କିନ୍ତୁ ସେ ଉକ୍ତ ସମ୍ପ୍ରଦାୟର ଅନ୍ତର୍ଗତ ହୋଇ ନ ଥିଲେ ସାମାଜିକ ସ୍ତରୀକରଣରେ ଯେଉଁ ସୋପାନରେ ରହିଥାନ୍ତା, ତାହାଠାରୁ ନିମ୍ନତର ସୋପାନରେ ରହିଅଛି । ଏହାକୁ ଆମ୍ଭେମାନେ ଏକପ୍ରକାର ଆସନଗତ ଅସଙ୍ଗତି ( ଷ୍ଟେଟାସ୍ ଡିସ୍ କ୍ରେପେନସି) ବା ଦୃଢ଼ୀକରଣର ଅଭାବ ବୋଲି ( ଲ୍ୟାକ୍ ଅବ୍ କ୍ରିଷ୍ଟାଲାଇ ଲାଇଜେସନ୍ ) କହିପାରୁଁ ।

---

[ ୧ ] ଲୁଇସ୍ ୱାଇର୍ଥଙ୍କ ଦ୍ୱାରା ଲିଖିତ ଓ ନିଉୟର୍କର କଲମ୍ବିଆ ୟୁନିଭରସିଟି ଦ୍ୱାରା ୧୯୪୫ ମସିହାରେ ପ୍ରକାଶିତ 'ଦ ସାଇନସ୍ ଅଫ୍ ମ୍ୟାନ୍ ଇନ ଦ ୱାର୍ଲଡ କ୍ରାଇସିସ୍' ପୁସ୍ତକର ୩୪୭ ପୃଷ୍ଠା ଦେଖ ।

ଏହି ବିଷୟଟିକୁ ଆମ୍ଭେମାନେ ଗୋଟିଏ ସରଳ ଗାଣିତିକ ଭାଷାରେ ପ୍ରକାଶ କରିପାରୁଁ । ଉଦାହରଣସ୍ୱରୂପ ଆମ୍ଭେମାନେ ବ୍ୟବସାୟଗତ ମର୍ଯ୍ୟାଦା, ଆୟ, ଶିକ୍ଷା ଓ ସାମ୍ପ୍ରଦାୟିକ ଆସନ ପାଇଁ ଗୋଟିଏ ଲେଖାଏଁ ନମ୍ବର ସ୍ଥିର କରିବା । ସମାନ ଶିକ୍ଷାପ୍ରାପ୍ତ ଓ ସମାନ ଆୟବିଶିଷ୍ଟ ଜଣେ ନିଗ୍ରୋ ଡାକ୍ତର ଓ ଜଣେ ଶ୍ୱେତାଙ୍ଗ ଡାକ୍ତର ମଧ୍ୟରେ ତୁଳନା କଲେ ଯେଉଁ କ୍ଷେତ୍ରରେ କାହାକୁ ପ୍ରାଧାନ୍ୟ ଦିଆଯାଏ, ସେଠାରେ ନିଗ୍ରୋ ଡାକ୍ତର ଶ୍ୱେତାଙ୍ଗ ଡାକ୍ତରଙ୍କ ଠାରୁ ନିମ୍ନସ୍ଥାନ ପାଇବେ ।

ସେ ଦୁହେଁ ନିମ୍ନଲିଖିତମତେ ନମ୍ବର ପାଇ ପାରନ୍ତି ।

| | ବ୍ୟବସାୟଗତ ମର୍ଯ୍ୟାଦା | | ଆୟ | | ଶିକ୍ଷା | | ସାମ୍ପ୍ରଦାୟିକ ଆସନ |
|---|---|---|---|---|---|---|---|
| ଶ୍ୱେତାଙ୍ଗ ଡାକ୍ତର | ୧୦ | + | ୧୦ | + | ୧୦ | + | ୧୦ |
| ନିଗ୍ରୋ ଡାକ୍ତର | ୧୦ | + | ୧୦ | + | ୧୦ | + | ୧ |

ହୁଏତ ସାମ୍ପ୍ରଦାୟିକ ଆସନକୁ ଏତେ ଅଧିକ ଗୁରୁତ୍ୱ ଦିଆଯାଇପାରେ ଯେ ନିଗ୍ରୋ ଡାକ୍ତରଙ୍କ ସ୍ଥାନ ଜଣେ ଶ୍ୱେତାଙ୍ଗ ଶ୍ରମିକଙ୍କର ସ୍ଥାନ ଠାରୁ ନିମ୍ନତର ହୋଇପାରେ । ସତେ ଯେପରିକି ସେମାନଙ୍କର ନମ୍ବର ନିମ୍ନଲିଖିତ ରୂପେ ହୋଇଗଲା [୨] ।

| | | | | | | | |
|---|---|---|---|---|---|---|---|
| ନିଗ୍ରୋ ଡାକ୍ତର | ୧୦ | + | ୧୦ | + | ୧୦ | + | ୧ |
| ଶ୍ୱେତାଙ୍ଗ ଶ୍ରମିକ | ୧ | + | ୧ | + | ୧ | + | ୫୦ |

କେତେକ ବର୍ଷ ପୂର୍ବେ ଡେଟ୍ରୟଟର ସହରତଳି ଅଞ୍ଚଳର ଲୋକେ ପ୍ରକୃତରେ ଏହିପରି ଗୋଟିଏ ନମ୍ବର ଦେବା ପ୍ରଥା ବାହାର କରିଥିଲେ । ସେଠାରେ ଜଣେ ଇହୁଦୀ ଡାକ୍ତର ଥିଲେ । ତାଙ୍କର ଉଚ୍ଚ ବ୍ୟବସାୟଗତ ମର୍ଯ୍ୟାଦା ଓ ଉଚ୍ଚ ଶିକ୍ଷା ଥିଲେହେଁ ସେ ଏହି ପ୍ରଥା ଅନୁସାରେ ଏତେ କମ ନମ୍ବର ପାଇଥିଲେ ଯେ ସେ ସେହି ଅଞ୍ଚଳରେ ଖଣ୍ଡିଏ ଘର କିଣିବାରୁ ବଞ୍ଚିତ ହୋଇଥିଲେ ; ଅଥଚ ଅନେକ ଅଣଇହୁଦୀ ଡକାୟତ ସେହି ଅଞ୍ଚଳରେ ବିରାଟ ପ୍ରାସାଦମାନ ତୋଳିବାରେ କୌଣସି ବାଧା ଆସି ନଥିଲା [୩] ।

[୨] ୧୯୫୨ ମସିହାର ଅକ୍ଟୋବର ସଂଖ୍ୟାରେ ଆମେରିକାନ ସୋଶିଓଲଜିକାଲ ରେଭିଅ୍ୟୁ ପତ୍ରିକାର ପୃ୩୪୭ଠାରେ ପ୍ରକାଶିତ ଫ୍ରାଙ୍କ୍ ଓୟେଷ୍ଟିଙ୍କର 'ନିଗ୍ରୋ-ହ୍ୱାଇଟ୍ ସ୍ୱେଟାସ୍ ଡିଫାରେନ୍ସି ଆଲ ଏଣ୍ଡ ସୋସିଆଲ ଇଣ୍ଟ୍ୟାକ୍‌ସ୍' ପ୍ରବନ୍ଧ ଦ୍ରଷ୍ଟବ୍ୟ । ଏଥିରେ ଏହି ପ୍ରଶ୍ନର ଆଲୋଚନା ଟିକିଏ ଭିନ୍ନଭାବରେ କରାଯାଇଅଛି ।

[୩] ବେଞ୍ଜାମିନ ଏପଷ୍ଟେନ ଓ ଆର୍ଣ୍ଣୋଲଡ୍ ଫଷ୍ଟରଙ୍କ ଦ୍ୱାରା ଲିଖିତ ଓ ଫରାର୍, ଷ୍ଟ୍ରସ ଓ କୁଡ଼ାହିଙ୍କ ଦ୍ୱାରା ୧୯୬୨ ମସିହାରେ ପ୍ରକାଶିତ ସାମ ଆର ବେଷ୍ଟ ଫ୍ରେଣ୍ଡସ୍ ପୁସ୍ତକର ପୃ୧୦୫-୧୧୫ଷ୍ଠା ଦେଖ ।

ଅତଏବ ଦେଖାଯିବ ଯେ ସଂଖ୍ୟାଲଘୁ ସମ୍ପ୍ରଦାୟରେ ଆସନ ଯାହା, ନିମ୍ନଶ୍ରେଣୀରେ ଆସନ ତାହା ନୁହେଁ । ଏଥିରୁ ଅବଶ୍ୟ ବୁଝିବାକୁ ହେବ ନାହିଁ ଯେ ଏ ଦୁଇଟିର କୌଣସି ସମ୍ବନ୍ଧ ନାହିଁ । ଏହା ନିଃସନ୍ଦେହ ଯେ ସମୟ-ସମୟରେ ସଂଖ୍ୟାଲଘୁ ସମ୍ପ୍ରଦାୟର ଅଧିକାଂଶ ଲୋକଙ୍କୁ ଯେଉଁ ସବୁ ଅସୁବିଧା ଭୋଗିବାକୁ ପଡ଼େ ; ସେସବୁ ଏତେ କଠୋର ଯେ ସେମାନଙ୍କୁ ଶ୍ରେଣୀର ନିମ୍ନ ସୋପାନରେ ରହିବାକୁ ହୋଇଥାଏ । ତେଣୁ ଏଭଳି ଏକ ଜଟିଳ ପ୍ରଶ୍ନର ଆଲୋଚନା କଲାବେଳେ ଦୁଇଟଯାକ ବିଷୟକୁ ବିଶ୍ଳେଷଣପୂର୍ବକ ସ୍ୱତନ୍ତ୍ରଭାବରେ ବିଗ୍ଭର କରିବାକୁ ହେବ । ତା ସଙ୍ଗେ ସଙ୍ଗେ ଦୁହିଁଙ୍କର ଅନୁଭବସିଦ୍ଧ ନିକଟ-ସମ୍ପର୍କକୁ ମଧ୍ୟ ମନେ ରଖିବାକୁ ହେବ ।

ଜାତି ବା ବର୍ଣ୍ଣ ଓ ସଂଖ୍ୟାଲଘୁ ସମ୍ପ୍ରଦାୟ ମଧ୍ୟରେ ସେହିପରି ଏକ ନିକଟ ସମ୍ପର୍କ ବିଦ୍ୟମାନ । ସଂଖ୍ୟାଲଘୁ ସମ୍ପ୍ରଦାୟର ଯେ ଜାତିଗତ ସ୍ୱାତନ୍ତ୍ର୍ୟଭଳି କେତେକ ଗୁଣ ଅଛି, ଏହା ନିଶ୍ଚିତ । କେତେକ ଅବସ୍ଥାରେ ଏହି ଗୁଣ ଅଧିକ ପରିମାଣରେ ପରିଦୃଷ୍ଟ ହୋଇଥାଏ । କିନ୍ତୁ ଏ ଦୁଇଟି ମଧ୍ୟରେ କେତେକ ଗୁରୁତ୍ୱପୂର୍ଣ୍ଣ ପ୍ରଭେଦ ମଧ୍ୟ ଅଛି । ବୋଧହୁଏ, ଆମ୍ଭେମାନେ ଜାତି ବା ବର୍ଣ୍ଣକୁ ଗ୍ଭରୋଟି ସ୍ୱତନ୍ତ୍ର ଲକ୍ଷଣ ଦ୍ୱାରା ଚିହ୍ନି ପାରିବା । ପ୍ରଥମତଃ ଜାତି ହେଉଛି ଜନ୍ମଗତ ଅର୍ଥାତ୍ ଯେଉଁ ଜାତିରେ ଯେ ଜନ୍ମ, ତାହାର ସେହି ଜାତି ହେବ । ଆଗ୍ଭର ବ୍ୟବହାର ଦ୍ୱାରା ଜାତି ନିର୍ଣ୍ଣିତ ହୁଏ ନାହିଁ । ଦ୍ୱିତୀୟତଃ ପ୍ରତ୍ୟେକ ଲୋକ କେବଳ ନିଜ ଜାତି ଭିତରେ ବିବାହ କରିପାରେ । ତୃତୀୟତଃ ପ୍ରତ୍ୟେକ ଜାତିର ଲୋକ, ଉଚ୍ଚ ହେଉ ବା ନୀଚ ହେଉ, ଜାତି ଭିତରେ ନିଜର ଆସନକୁ ନ୍ୟାଯ୍ୟ ବୋଲି ଗ୍ରହଣ କରିନିଅନ୍ତି [୪] । ଚତୁର୍ଥତଃ ଏଥିରେ ପୌରହିତ୍ୟ ପ୍ରଥା ଥାଏ ଓ ସମାଜର ରାଜନୈତିକ, ବ୍ୟବସାୟଗତ, ଧର୍ମସମ୍ବନ୍ଧୀୟ, ପାରିବାରିକ ଅନୁଷ୍ଠାନସମୂହ ଏହି ପୌରୋହିତ୍ୟ ପ୍ରଥାକୁ ସମର୍ଥନ କରିଥାଏ ।

ଏହି ଲକ୍ଷଣଗୁଡ଼ିକ ମଧ୍ୟରୁ ପ୍ରତ୍ୟେକଟିର ନ୍ୟୂନାଧିକ୍ୟ ଘଟିପାରେ । କୌଣସିଟି ପୂରାମାତ୍ରାରେ ଥାଏ ବା ନଥାଏ, ଏପରି କୁହାଯାଇ ପାରିବ ନାହିଁ । ଏହାର ଅର୍ଥ ହେଉଛି, ସ୍ଥଳବିଶେଷରେ ଏହା ମିଶ୍ରିତ ଆକାରରେ ଓ ଅସ୍ପଷ୍ଟ ଅବସ୍ଥାରେ ଦେଖାଯାଇପାରେ ଏହି ଜଟିଳତାକୁ ଛାଡ଼ି ଦେଇ ଆମ୍ଭେ କହିପାରୁଁ ଯେ ଉପର୍ଯ୍ୟୁକ୍ତ ଗ୍ଭରୋଟି ବିଷୟରେ ଶ୍ରେଣୀ ପ୍ରଥା ଜାତି ପ୍ରଥା ଠାରୁ ପୃଥକ୍ । ଶ୍ରେଣୀ ପ୍ରଥାରେ

---

[୪] 'ସୋଶିଆଲ ଫୋରସେସ୍' ପତ୍ରିକାର ୧୯୫୧ ମସିହା ମାର୍ଚ୍ଚ ସଂଖ୍ୟାର ପୃ ୨୪୮-୨୫୪ ସ୍ଥାରେ ମାର୍ଭିନ ହାରିସ୍ ତାଙ୍କର କାଷ୍ଟ, [illegible] ପ୍ରବନ୍ଧରେ ଏହି ତିନୋଟି ନିଦର୍ଶନର ଉଲ୍ଲେଖ କରିଅଛନ୍ତି

ଆଚାର ବ୍ୟବହାର ଦ୍ୱାରା ବ୍ୟକ୍ତି ବିଶେଷର ଶ୍ରେଣୀ ଯେତେ ପରିମାଣରେ ନିର୍ଦ୍ଧାରିତ ହୁଏ ଜନ୍ମଦ୍ୱାରା ସେତେ ପରିମାଣରେ ନିର୍ଦ୍ଧାରିତ ହୁଏ ନାହିଁ । ଶ୍ରେଣୀ ପ୍ରଥାରେ ଏକ ଶ୍ରେଣୀ ମଧ୍ୟରେ ବିବାହ ନୀତି ଦୃଢ଼ଭାବରେ ଅନୁସୃତ ହୁଏ ନାହିଁ । ଅବଶ୍ୟ ଅନେକ କ୍ଷେତ୍ରରେ ଏକ ଶ୍ରେଣୀ ମଧ୍ୟରେ ବିବାହ ହୋଇଥାଏ । ଶ୍ରେଣୀ ପ୍ରଥାରେ ଲୋକ ନିଜ ନିଜର ଆସନକୁ ଅବାଞ୍ଛନୀୟ ଓ ଅନ୍ୟାୟ ବୋଲି ମନେ କରି ପାରନ୍ତି ; ଏହାର ପରିବର୍ତ୍ତନ ପାଇଁ ଚେଷ୍ଟା କରିପାରନ୍ତି । ଉନ୍ମୁକ୍ତ-ଶ୍ରେଣୀ ବିଶିଷ୍ଟ ସମାଜର ଅନୁଷ୍ଠାନସମୂହ ଏ ପ୍ରକାର ଚଳନଶୀଳତା, ଆସନ ପରିବର୍ତ୍ତନ ଓ ବ୍ୟକ୍ତିବିଶେଷର ଯୋଗ୍ୟତା ଅନୁସାରେ ସମାଜରେ ତାହାର ସ୍ଥାନ-ଏସବୁ ନୀତିକୁ ସମର୍ଥନ କରେ । ଏଥିରେ ବଂଶ ବା କୁଳର ବିଚାର ନଥାଏ ।

ଅପର ପକ୍ଷରେ ସଂଖ୍ୟାଲଘୁ ସଂଖ୍ୟାଗୁରୁ ପ୍ରଶ୍ନ ଜାତି ପ୍ରଶ୍ନ ସହିତ ଦୁଇଟି ବିଷୟରେ ସଦୃଶ ଓ ଅନ୍ୟ ଦୁଇଟି ବିଷୟରେ ପୃଥକ୍ । ଉଭୟରେ ଜନ୍ମଗତ ପ୍ରାଧାନ୍ୟ ବିଦ୍ୟମାନ । ଜଣେ ଲୋକ ସଂଖ୍ୟାଗୁରୁ ସମ୍ପ୍ରଦାୟରେ ଜନ୍ମ ହୋଇପାରେ ବା ସଂଖ୍ୟା ଲଘୁ ସମ୍ପ୍ରଦାୟରେ ଜନ୍ମ ହୋଇପାରେ । ଠିକ୍ ସେହିପରି ଜଣେ ଲୋକ ଯେ କୌଣସି ଜାତିରେ ଜନ୍ମ ହୋଇପାରେ । ଉଭୟ କ୍ଷେତ୍ରରେ ଏକ ସ୍ତର ମଧ୍ୟରେ ବିବାହ ହୁଏ । ହୁଏତ ସଂଖ୍ୟାଗୁରୁ ସଂଖ୍ୟାଲଘୁ କ୍ଷେତ୍ରରେ ଏହି ନୀତି ସେତେ ଦୃଢ଼ଭାବରେ ପାଳିତ ହୁଏ ନାହିଁ । କିନ୍ତୁ ସଂଖ୍ୟାଲଘୁ ସମ୍ପ୍ରଦାୟର ଲୋକେ ସେମାନଙ୍କର ଅବସ୍ଥାକୁ ନ୍ୟାୟସଙ୍ଗତ ଓ ଗ୍ରହଣୀୟ ବୋଲି ମନେକରନ୍ତି ନାହିଁ, ଆହୁରି ମଧ୍ୟ ସଂଖ୍ୟାଲଘୁ କହିଲେ ଯେଉଁ ଭେଦଭାବ ବୁଝାଯାଏ ତାହାକୁ କିମ୍ବା ସାମାଜିକ ଅନୁଷ୍ଠାନମାନଙ୍କ ଦ୍ୱାରା ସମର୍ଥିତ ଅସମ ବ୍ୟବହାରକୁ ନ୍ୟାୟସଙ୍ଗତ ବୋଲି ଗ୍ରହଣ କରନ୍ତି ନାହିଁ । ସ୍ଥଳ ବିଶେଷରେ ଏସବୁ ସାମାନ୍ୟ ସମର୍ଥନ ଲାଭ କରିପାରେ ; କିନ୍ତୁ ଆଇନର ମୌଳିକ ନୀତି ଓ ଧର୍ମର ମୌଳିକ ଆଦର୍ଶ (ଆଇଡୋଲୋଜି) ଏସବୁର ବିରୋଧୀ । ଅତଏବ ଏହି ଦୁଇଟି ବିଷୟରେ ସଂଖ୍ୟାଗୁରୁ ସଂଖ୍ୟାଲଘୁ ପରିସ୍ଥିତି ଓ ଶ୍ରେଣୀ ପ୍ରଥା ପରସ୍ପରର ସଦୃଶ ।

ବାସ୍ତବ କ୍ଷେତ୍ରରେ ନାନା ଅନିଶ୍ଚୟତା ଥିଲେହେଁ ଏହି ଛଗୋଟି ଧରଣର (ପେଟାର୍ଣ୍ଣ) ସ୍ତରୀକରଣ ମଧ୍ୟରେ ଥିବା ସମ୍ବନ୍ଧକୁ ଆମ୍ଭେମାନେ ନିମ୍ନଲିଖିତରୂପେ ପ୍ରକାଶ କରିପାରୁଁ ।

| | ଜନ୍ମ ଦ୍ୱାରା ନିର୍ଣ୍ଣୟ | ସମଶ୍ରେଣୀରେ ବିବାହ | ଅନୁଷ୍ଠାନମାନଙ୍କଦ୍ୱାରା ଭିନ୍ନ ବ୍ୟବହାରର ସମର୍ଥନ | ନିମ୍ନସମ୍ପ୍ରଦାୟ ଦ୍ୱାରା ନିଜ ଆସନର ସ୍ୱୀକାର |
|---|---|---|---|---|
| ଜାତି ବା ବର୍ଣ୍ଣ ପଦ୍ଧତି | ହିଁ | ହିଁ | ହିଁ | ହିଁ |
| ସଂଖ୍ୟାଗୁରୁ ସଂଖ୍ୟାଲଘୁ ପଦ୍ଧତି | ହିଁ | ହିଁ | ନା | ନା |
| ଶ୍ରେଣୀ ପଦ୍ଧତି | ନା | ନା | ନା | ନା |

ପ୍ରକୃତ ପକ୍ଷରେ ଏହା ଏକ ଅତି ସହଜ ବିଭାଗ; କାରଣ ପ୍ରତ୍ୟେକର ଯେଉଁ ଗୁଡ଼ିଏ ଲକ୍ଷଣ ଦିଆଯାଇଅଛି, ସେଥିମଧ୍ୟରୁ କାହାର ପରିମାଣରେ କମ ବେଶି ହେବାର ପ୍ରଶ୍ନ ନାହିଁ । ଧରି ନିଆଯାଉ ଯେ ପ୍ରତ୍ୟେକ ଲକ୍ଷଣ ୦ (ଶୂନ୍ୟ) ଠାରୁ ୧୦୦ (ଶହେ) ମଧ୍ୟରେ ରହିପାରେ । ଯଦି ଏହିପରି ଧରିନିଆଯାଏ, ତେବେ ଦେଖାଯିବ ଯେ ଶ୍ରେଣୀକରଣ ପଦ୍ଧତିକୁ ତିନି ପ୍ରକାରରେ ବିଭାଗ କରି ନ ଯାଇ ଅନେକ ପ୍ରକାରରେ କରାଯାଇପାରିବ । ହୁଏତ ବିଭାଗଗୁଡ଼ିକ ଏହିପରି ହୋଇପାରେ ।

| | | ଜନ୍ମ ଦ୍ୱାରା ନିର୍ଣ୍ଣୟ | ସମଶ୍ରେଣୀରେ ବିବାହ | ଅନୁଷ୍ଠାନମାନଙ୍କଦ୍ୱାରା ଭିନ୍ନ ବ୍ୟବହାରର ସମର୍ଥନ | ନିମ୍ନ ସମ୍ପ୍ରଦାୟ ଦ୍ୱାରା ନିଜ ଆସନର ସ୍ୱୀକାର |
|---|---|---|---|---|---|
| ଜାତି ବା ବର୍ଣ୍ଣ ପଦ୍ଧତି | (କ) | ୧୦୦ | ୧୦୦ | ୧୦୦ | ୧୦୦ |
| | (ଖ) | ୧୦୦ | ୧୦୦ | ୧୦୦ | ୨୦୦ |
| | (ଗ) | ୧୦୦ | ୧୦୦ | ୯୦ | ୮୦ |
| ସଂଖ୍ୟାଗୁରୁ ସଂଖ୍ୟାଲଘୁ ପଦ୍ଧତି | (କ) | ୧୦୦ | ୧୦୦ | ୮୦ | ୭୦ |
| | (ଖ) | ୧୦୦ | ୯୦ | ୭୦ | ୬୦ |
| | (ଗ) | ୯୦ | ୮୦ | ୬୦ | ୫୦ |
| ଶ୍ରେଣୀ ପଦ୍ଧତି | (କ) | ୮୦ | ୭୦ | ୫୦ | ୪୦ |
| | (ଖ) | ୭୦ | ୬୦ | ୪୦ | ୩୦ |
| | (ଗ) | ୬୦ | ୫୦ | ୩୦ | ୨୦ |
| | (ଘ) | ୫୦ | ୪୦ | ୧୦ | ୧୦ |

ସୁବିଧା ନିମନ୍ତେ ଆମ୍ଭେମାନେ ପ୍ରଥମ ତିନୋଟିକୁ ଜାତି ବା ବର୍ଣ୍ଣ ପଦ୍ଧତିର, ଦ୍ୱିତୀୟ ତିନୋଟିକୁ ସଂଖ୍ୟାଗୁରୁ-ସଂଖ୍ୟାଲଘୁ ପଦ୍ଧତିର ଓ ଶେଷ ଚାରୋଟିକୁ ଶ୍ରେଣୀ ପଦ୍ଧତିର ଅନ୍ତର୍ଗତ କରିଅଛୁଁ । କିନ୍ତୁ ଏଠାରେ ସ୍ମରଣ ରଖିବାକୁ ହେବ ଯେ ଭିନ୍ନ ଭିନ୍ନ ପ୍ରକାର (ଟାଇପ) ମଧ୍ୟରେ ସେପରି ବିଶେଷ ପ୍ରଭେଦ ନାହିଁ । ଯେତେବେଳେ ସମାଜ ଚାରୋଟି ଲକ୍ଷଣ ମଧ୍ୟରୁ ଏକ ବା ଅଧିକ ଲକ୍ଷଣର ପରିବର୍ତ୍ତନ ଦେଇ ଗତି କରେ ସେତେବେଳେ ତାକୁ କେଉଁ ପଦ୍ଧତିର ଅନ୍ତର୍ଗତ କରିବାକୁ ହେବ ତାହା ସ୍ଥିର କରିବା କଠିନ ହୋଇପଡ଼େ । ଭାରତ ବର୍ଷରେ ନିମ୍ନ ସମ୍ପ୍ରଦାୟର ଲୋକେ ଭୋଗୁଥିବା ଅନେକ ଅସୁବିଧା (ଡ଼ିସ୍ ପ୍ରିଭିଲେଜ) ଆଇନଦ୍ୱାରା ନିଷିଦ୍ଧ ହୋଇଅଛି । ଅବଶ୍ୟ ସେଗୁଡ଼ିକ ସମ୍ପୂର୍ଣ୍ଣରୂପେ ଦୂର ହୋଇନାହିଁ । ଅନେକ ଲୋକ ନିଜର ଆସନ ବିଷୟରେ ପ୍ରତିବାଦ (ପ୍ରଟେଷ୍ଟ) କରୁଅଛନ୍ତି [ ୫ ] । ତେବେ ଭାରତବର୍ଷକୁ ଜାତି ବା ବର୍ଣ୍ଣ ପଦ୍ଧତିର ଅନ୍ତର୍ଗତ କରାଯିବ କି ? ହୁଏତ ଏହା ଏବେ ଜାତି ବା ବର୍ଣ୍ଣ ପଦ୍ଧତି (ଗ) ରେ ପରିଣତ ହୋଇଅଛି ; କି ହୋଇ ରହିନାହିଁ ଅଥବା ସଂଖ୍ୟାଗୁରୁ ସଂଖ୍ୟାଲଘୁପଦ୍ଧତିକୁ ଚାଲିଯାଇଅଛି । ଯୁକ୍ତରାଷ୍ଟ୍ରର ଉତ୍ତରାଞ୍ଚଳରେ କେତେକ ଉଦାରପନ୍ଥୀ ସମାଜରେ (କମ୍ୟୁନିଟି) ଜାତିଗତ ସମ୍ପର୍କ (ରେସ୍ ରିଲେଶନ) ହୁଏତ ଶ୍ରେଣୀ ପଦ୍ଧତି (କ) ର ସଦୃଶ ଅଟେ ; କିନ୍ତୁ ଦକ୍ଷିଣର ଗ୍ରାମାଞ୍ଚଳରେ ଏହି ସମ୍ପର୍କକୁ ସଂଖ୍ୟାଗୁରୁ ସଂଖ୍ୟାଲଘୁ ପଦ୍ଧତି (କ) ର ଅନ୍ତର୍ଗତ କରିବା ଅଧିକ ଯୁକ୍ତିଯୁକ୍ତ ହେବ ।

ଏଥିରେ ଯେଉଁ ସଂଖ୍ୟା ବ୍ୟବହାର କରାଯାଇଅଛି, ତାହାକୁ ଠିକ୍ ପରିମାଣ ସୂଚକ ମନେକରିବା ଉଚିତ ନୁହେଁ । ଆମେ ଯେଉଁ ଚାରୋଟି ଲକ୍ଷଣ ନିର୍ଦ୍ଦେଶ କରିଅଛୁଁ, ତାହା ସହିତ ଅନ୍ୟାନ୍ୟ ଲକ୍ଷଣ ଯୋଗ କରାଯାଇପାରେ କିମ୍ବା ଏହି ଚାରୋଟି ପରିବର୍ତ୍ତେ ଅନ୍ୟ ଲକ୍ଷଣ ଗ୍ରହଣ କରାଯାଇପାରେ । ଯେଉଁ ଧରଣମାନଙ୍କର (ପେଟର୍ଣ୍ଣ) ଅଧୋଗତି ବିଷୟ ମୁଁ ଉଲ୍ଲେଖ କରିଅଛି, ସେମାନଙ୍କର ଅଧୋଗତି ଘଟି ନ ପାରେ ; ତଥାପି ମୋର ବିଶ୍ୱାସ ଯେ ଅନେକ ସମାଜରେ ଏପରି ଘଟିଥିବାର ପ୍ରମାଣ ଅଛି । ପ୍ରଧାନ କଥା ଏହି ଯେ ସ୍ତରୀକରଣ ପଦ୍ଧତିର ପ୍ରକାର (ଟାଇପ) ଅନେକ ବିଭାବକୁ (ଡାଇମେନସନ) ଅବଲମ୍ବନ କରି ପରିବର୍ତ୍ତିତ ହୁଏ । ଏହି ବିଭାଗ ଗୁଡ଼ିକ ଭିନ୍ନ ଭିନ୍ନ ପ୍ରକାରରେ ସମ୍ମିଳିତ ହୋଇପାରନ୍ତି (କ୍ୟାନ କମ୍ବାଇନ) । ମୁଁ ଯେଉଁ ପ୍ରଣାଳୀର ( ସ୍କିମ୍ ) ସୂଚନା ଦେଲି ତୁମ୍ଭେ ତାହାର ଆହୁରି ଉନ୍ନତି

---

[ ୫ ] ୧୯୬୦ ମସିହାର ସେପ୍ଟେମ୍ବର ସଂଖ୍ୟା 'ଆମେରିକାନ୍ ଜର୍ଣ୍ଣାଲ ଅଫ୍ ସୋସିଓଲୋଜି' ପତ୍ରିକାର ୧୨୦-୧୨୭ ପୃଷ୍ଠାରେ ପ୍ରକାଶିତ ଜେରାଲ୍ଡ ଡି. ବେରିମାନଙ୍କ 'କାଷ୍ଟ ଇନ ଇଣ୍ଡିଆ ଆଣ୍ଡ ଦି ଇଉନାଇଟେଡ ଷ୍ଟେଟସ୍' ପ୍ରବନ୍ଧ ଦେଖ ।

କରିପାର । ସେଥିପାଇଁ ତୁମ୍ଭଙ୍କୁ ନିର୍ଦ୍ଦିଷ୍ଟ ସମାଜ ସମ୍ବନ୍ଧରେ ବିଶେଷ ଜ୍ଞାନ ଅର୍ଜନ କରିବାକୁ ହେବ । ତାହାହେଲେ ଜାଣିପାରିବ ଯେ ଏହି ସମାଜ ବିଭିନ୍ନ ଦିଗରୁ କେଉଁ ଶ୍ରେଣୀରେ ରହିବ ଏବଂ ପରିବର୍ତ୍ତନର ଧରଣ (ପାଟର୍ଣ୍ଣ) କଅଣ ହେବ ? ଏହି ପ୍ରଣାଳୀରେ ତୁମ୍ଭେ ସମାଜଗଠନ ସମ୍ପର୍କରେ ଅନେକ କଥା ଶିକ୍ଷା କରିପାରିବ ।

## ଭେଦଭାବ (ଡିସ୍କ୍ରିମିନେଶନ)

ଏଣିକି ସଂଖ୍ୟାଲଘୁ ସମ୍ପ୍ରଦାୟମାନଙ୍କ ଉପରେ ଆମ୍ଭମାନଙ୍କର ମନୋଯୋଗ କେନ୍ଦ୍ରୀଭୂତ ହେବ । କିନ୍ତୁ ଆମ୍ଭମାନଙ୍କୁ ମନେରଖିବାକୁ ହେବ ଯେ ଏହି ସମ୍ପ୍ରଦାୟଗୁଡ଼ିକ ଏକ ଦିଗରେ ଜାତି ବା ବର୍ଣ୍ଣ ପଦ୍ଧତି ଆଡ଼କୁ ଓ ଅନ୍ୟଦିଗରେ ଶ୍ରେଣୀ ପଦ୍ଧତି ଆଡ଼କୁ ଗତି କରୁଅଛି । ଯେଉଁଠାରେ ସଂଖ୍ୟାଲଘୁ ସମ୍ପ୍ରଦାୟ ଅଛି, ସେଠାରେ (ଡିସ୍କ୍ରିମିନେଶନ) ଭେଦଭାବ ଅଛି । ଇଂରାଜୀ ଭାଷାରେ ଡିସ୍କ୍ରିମିନେସନ ଶବ୍ଦଟି ଗୋଟିଏ ଦ୍ୱୀର୍ଥବୋଧକ ଶବ୍ଦ । ତେଣୁ ଅତି ସାବଧାନ ଭାବରେ ଏହାର ସଂଜ୍ଞା ନିରୂପଣ କରିବା ଆବଶ୍ୟକ । ଅଭିଧାନରୁ ଦେଖୁ ଯେ 'ଡିସ୍କ୍ରିମିନେଶନ'ର ଅର୍ଥ ହେଉଛି ଆକ୍ୟୁଟ୍ ଡିସର୍ଣ୍ଣମେଣ୍ଟ ବା ସୂକ୍ଷ୍ମ ବିବେଚନା । ସୂକ୍ଷ୍ମ ବିବେଚନା ଗୋଟିଏ ଭଲ ଗୁଣ ଓ ସମସ୍ତଙ୍କର କାମ୍ୟ । ଗୀତଟିର ସ୍ୱର ଭଲ କି ମନ୍ଦ, ଫୁଟ୍‌ବଲ୍ ଖେଳରେ କିଏ ଭଲ ଖେଳିଲା, କିଏ ମନ୍ଦ ଖେଳିଲା, କେଉଁ ଖାଦ୍ୟ ଆସ୍ୱାଦକ, କେଉଁ ଖାଦ୍ୟ ସୁରୁଚିକର, ଏ ପ୍ରକାର ସୂକ୍ଷ୍ମ ବିବେଚନା ଶକ୍ତି ବହୁ ଶ୍ରମରେ ଲବ୍ଧ ହୁଏ । କିନ୍ତୁ ଅଭିଧାନରେ 'ଡିସ୍କ୍ରିମିନେଶନ'ର ଆଉ ଏକ ଅର୍ଥ ମଧ୍ୟ ଦେଖିବାକୁ ମିଳେ । ତାହା ହେଉଛି, 'ଅନ୍ୟାୟ ଓ କ୍ଷତିକାରକ ଭେଦଭାବ' । ଏହି ଅର୍ଥଟି ପୂର୍ବବର୍ତ୍ତୀ ଅର୍ଥର ପ୍ରାୟ ବିପରୀତ ବୋଲି କହିଲେ ଚଳେ । ଶ୍ୱେତାଙ୍ଗ ବାଳକ ସ୍କୁଲରେ ପ୍ରବେଶ କରିପାରିବ ; କିନ୍ତୁ ନିଗ୍ରୋବାଳକ ପ୍ରବେଶ କରିପାରିବ ନାହିଁ, ଜଣେ ଇହୁଦୀ ଡାକ୍ତର କୌଣସି ନିର୍ଦ୍ଦିଷ୍ଟ ଅଞ୍ଚଳରେ ଘର କରିପାରିବ ନାହିଁ, ମାତ୍ର ଜଣେ ଅଣଇହୁଦୀ କଳାବିକାଶ ତାହା କରିପାରିବ । ଏପରି ସ୍ଥଳରେ (ଡିସ୍କ୍ରିମିନେଶନ) ବା ଭେଦଭାବ ହେଲା ବୋଲି କୁହାଯିବ । ଭେଦଭାବର ଗୋଟିଏ ବିଶେଷ ଲକ୍ଷଣ ହେଉଛି, ଏଥିରେ ଅସମାନ ଲୋକଙ୍କୁ ସମାନ ବୋଲି ଗଣନା କରାଯାଏ, ଅର୍ଥାତ୍ ସଂଖ୍ୟାଲଘୁ ସମ୍ପ୍ରଦାୟର ସମସ୍ତ ଲୋକଙ୍କ ପ୍ରତି ସମାନ ବ୍ୟବହାର ଦେଖାଯାଏ । ଯଦି ମେକ୍ସିକୋରୁ କିମ୍ବା ଚୀନରୁ କିମ୍ବା ମିସିସିପିରୁ ଆସିଥିବା ସବୁ ଲୋକ ଆମକୁ ସମାନ ଦେଖାଯାନ୍ତି ଓ ଆମେ ସେମାନଙ୍କର ବ୍ୟକ୍ତିଗତ ଦୋଷଗୁଣକୁ ବିଚାର ନ କରି ସମସ୍ତଙ୍କୁ ସମାନ ବ୍ୟବହାର ଦେଖାଉଁ, ତାହାହେଲେ ସ୍ପଷ୍ଟ ଜଣାଯିବ ଯେ ପ୍ରଥମ ଅର୍ଥରେ ଆମର (ଡିସ୍କ୍ରିମିନେସନ) ଅର୍ଥାତ୍, ସୂକ୍ଷ୍ମ ବିବେଚନା ଆଦୌ ନାହିଁ । ଗୋଟିଏ ଶବ୍ଦର ଏପରି ପରସ୍ପର ବିରୋଧୀ ଦୁଇଟି ଅର୍ଥ କାହିଁକି

ହେଲ୍, ତାହାର ବ୍ୟାଖ୍ୟା କରିବାକୁ ମୁଁ ଯାଉନାହିଁ ; କିନ୍ତୁ ଏ ସମ୍ବନ୍ଧରେ ଏତିକି କହିରଖିଅଛି ଯେ ଏହି ପୁସ୍ତକରେ 'ପ୍ରଚଳିତ ମାନଦଣ୍ଡ ( ଷ୍ଟାଣ୍ଡାର୍ଡ ) ଦୃଷ୍ଟିରୁ ଯଥେଚ୍ଛା ଓ ଅନ୍ୟାୟ' ମାନଦଣ୍ଡର ବ୍ୟବହାର ବା ପ୍ରୟୋଗ ଅର୍ଥରେ 'ଭେଦଭାବ' (ଡିସ୍କ୍ରି-ମିନେଶନ) ଶବ୍ଦ ବ୍ୟବହୃତ ହୋଇଅଛି । 'ସଂଖ୍ୟାଲଘୁ ସମ୍ପ୍ରଦାୟ'ର ମୌଳିକ ଅର୍ଥ ହେଲ ଯେ ଯେଉଁମାନେ ଏହାର ଅନ୍ତର୍ଗତ, ସେମାନଙ୍କୁ ଆମ୍ଭେମାନେ ସଂଖ୍ୟାଗୁରୁ ସମାଜର ମୂଲ୍ୟବୋଧ ଅନୁଯାୟୀ ବିଚାର ନ କରି ଅନ୍ୟ ଏକ ମାନଦଣ୍ଡରେ ବିଚାର କରିଥାଉଁ ।

'ଭେଦଭାବ' (ଡିସ୍କ୍ରିମିନେଶନ')ର ଗୋଟିଏ ସଂଜ୍ଞା ଦେବା ସହଜ ହୋଇ-ପାରେ, ମାତ୍ର ଏହାର ଏକ ନିଃସନ୍ଦେହ ଧାରଣା କରି ବ୍ୟବହାରରେ ଲଗାଇବା ସହଜ ନୁହେଁ । ଏଥିରୁ ବୁଝାଯାଏ ଯେ ଯେଉଁ ମାନଦଣ୍ଡ ବ୍ୟବହାର କରାଯାଉଅଛି ତାହା ସମାଜର ସଂସ୍କୃତି ଅନୁସାରେ ଗ୍ରହଣୀୟ ନୁହେଁ । କିନ୍ତୁ ଅଧିକାଂଶ ସମାଜରେ ତାହିଁକି; ସଂଖ୍ୟାଲଘୁ ସମ୍ପ୍ରଦାୟ ଥିବା ସବୁ ସମାଜରେ ବିଭିନ୍ନ ସ୍ତରର ସାଂସ୍କୃତିକ ମାନଦଣ୍ଡ ଦେଖାଯାଏ । ପୁଣି ବିଭିନ୍ନ ଅଞ୍ଚଳରେ, ବିଭିନ୍ନ ଶ୍ରେଣୀରେ, ବିଭିନ୍ନ ବ୍ୟବସାୟରେ ବିଭିନ୍ନ ମାନଦଣ୍ଡ ରହିଅଛି । ନିଜ ଘର ପାଖରେ ଥିବା ସ୍କୁଲରେ ଜଣେ ନିଗ୍ରୋଛାତ୍ରଙ୍କୁ ପ୍ରବେଶ କରିବାକୁ ନ ଦେବା ନିଉୟର୍କର ମାନଦଣ୍ଡର ଓ ଆଇନର ଲଙ୍ଘନ ହୋଇପାରେ ; କିନ୍ତୁ ଆଲବାମାର ଆଇନ ଓ ପ୍ରଚଳିତ ରୀତି ଅନୁସାରେ ଏଥିରେ କିଛି ଅସଙ୍ଗତି ନାହିଁ । ତେଣୁ ନିଗ୍ରୋମାନଙ୍କୁ ସ୍କୁଲରୁ ପୃଥକ୍ କରି ରଖିବା ଏକ ଭେଦଭାବ କି ନା, ଏହା ସ୍ଥିର କରିବାକୁ ହେଲେ କେଉଁ ମାନଦଣ୍ଡର ବ୍ୟବହାର କରିବାକୁ ହେବ ? ଏ ସ୍ଥଳରେ ସମାଜ ଅଧ୍ୟୟନ ଜନିତ ବିଚାରବୁଦ୍ଧି ପ୍ରୟୋଗ କରିବାକୁ ପଡ଼ିବ । ଆଲୋଚ୍ୟ ସମାଜର ମୌଳିକ ମୂଲ୍ୟବୋଧ କଅଣ ? ସମ୍ବିଧାନ ଓ ପ୍ରଚଳିତ ରୀତି ଅନୁସାରେ କେଉଁ ଆଇନଗୁଡ଼ିକୁ ଅଗ୍ରାଧିକାର ଦିଆଯାଏ ? ଏହି ଅଗ୍ରାଧିକାରକୁ ସଂଖ୍ୟାଲଘୁ ସମ୍ପ୍ରଦାୟର ଲୋକେ କିପରି ଗ୍ରହଣ କରନ୍ତି ? (କାରଣ ସେମାନେ ମଧ୍ୟ ସମାଜର ଅନ୍ତର୍ଗତ ଯେଉଁମାନେ ପୃଥକୀକରଣକୁ ସମର୍ଥନ କରନ୍ତି, ସେମାନେ ଏହାକୁ ସମ୍ପୂର୍ଣ୍ଣରୂପେ ବିଶ୍ୱାସ କରନ୍ତି ବା ସେମାନଙ୍କ ମଧ୍ୟରୁ କେତେକେ କେବଳ 'ସମାଜରେ ଏପରି ଚଳେ' ବୋଲି ସମର୍ଥନ କରନ୍ତି ? ଅଥବା ସେମାନେ ଏବିଷୟରେ ଏକାବେଳେ ନିଃସ୍ପୃହ ? ଏସବୁ କଠିନ ପ୍ରଶ୍ନ । କୌଣସି ଦ୍ରୁତ ପରିବର୍ତ୍ତନଶୀଳ ସମାଜରେ କାଲି ଏସବୁ ପ୍ରଶ୍ନର ଉତ୍ତର ଯାହା ଥିଲା, ଆଜି ତାହା ହୋଇ ନ ପାରେ । ତେଣୁ ଏଭଳି ପ୍ରଶ୍ନ ଅତ୍ୟନ୍ତ କଠିନ । ବିଭିନ୍ନ ସମୟରେ ବିଭିନ୍ନ ସମ୍ପ୍ରଦାୟ ଉପରେ ପରିବର୍ତ୍ତନର ଚାପ ପଡ଼ିଥାଏ । ବାସ୍ତବରେ 'ଭେଦଭାବ' ସର୍ବଦା କେତେକ ପରିମାଣରେ ସମର୍ଥନ ଲାଭ କରିଥାଏ । ନଚେତ୍ ଏହା ପ୍ରଚଳିତ (ଡୋମିନେଣ୍ଟ) ମାନଦଣ୍ଡର ବିରୋଧୀ ହୋଇଥିଲେହେଁ ଆମ୍ଭମାନଙ୍କ

ଆଲୋଚନାର ବିଷୟ ହୁଅନ୍ତା କାହିଁକି ? ତେଣୁ ଭେଦଭାବର ଧାରଣା ମଧ୍ୟରେହିଁ ଅସାମଞ୍ଜସ୍ୟ ନିହିତ ରହିଅଛି ।

ମୋ ମତରେ ଜାତି ( ରେସ୍ ), ଧର୍ମ, ଜାତୀୟ ଉତ୍ପତ୍ତି (ନେଶନାଲ ଅରିଜିନ), ଜାତିଗତ ସମ୍ପ୍ରଦାୟ (ଏଥିକ୍ ଗ୍ରୁପ୍), ବୟସ, ଲିଙ୍ଗ ଅନୁସାରେ ବିଚାର କରି ଭେଦମୂଳକ ବ୍ୟବହାର ପ୍ରଦର୍ଶନ କରିବା ଆମେରିକାର ପ୍ରଚଳିତ ମୂଲ୍ୟବୋଧ ପଦ୍ଧତିର ଓ ଆଇନ ସଙ୍ଗଠନର ବିରୋଧୀ । ତେଣୁ ଏହାକୁ ଭେଦଭାବ ବୋଲି କୁହାଯିବ । ଅବଶ୍ୟ ଏହାର ଅର୍ଥ ନୁହେଁ ଯେ ତେରବର୍ଷର ଗୋଟିଏ ବାଳକକୁ ମୋଟର ଚଲାଇବାକୁ ଲାଇସେନ୍ସ ନ ଦେବା କିମ୍ବା ଜଣେ ସ୍ତ୍ରୀଲୋକକୁ ଟ୍ରେନ୍ ଚଳାଇବା କାର୍ଯ୍ୟରେ ନିଯୁକ୍ତ ନ କରିବା ଭେଦଭାବରୂପେ ଗଣ୍ୟ ହେବ । ସମ୍ଭବତଃ ଏପରି ସ୍ଥଳରେ ଦେହର ବଳ, ଆକାର, ଅଭିଜ୍ଞତାର ବିଚାରରେ ଏପରି କରାଯାଇଅଛି ; କେବଳ ଜଣକର ବୟସ କମ୍ ବୋଲି ବା ଜଣେ ସ୍ତ୍ରୀଲୋକ ବୋଲି ଏପରି କରାଯାଇନାହିଁ । ମାତ୍ର ଏ କ୍ଷେତ୍ରରେ ଦୈବାତ୍ ବୟସ ଓ ନାରୀଜାତି ସହିତ ଘଟନାର ମେଳ ହୋଇଯାଇଛି ।

ଯଦି କୌଣସି ପ୍ରଚଳିତ ମୂଲ୍ୟବୋଧ ଉପରେ ପୃଥକ୍ ବ୍ୟବହାର ପ୍ରତିଷ୍ଠିତ ହୋଇଥାଏ, ତେବେ ସମ୍ପ୍ରଦାୟ ବିଶେଷର ଅନ୍ତର୍ଗତ ହୋଇଥିବାରୁ କାହାରି ପ୍ରତି ଯଥେଚ୍ଛାଭାବରେ ସ୍ୱତନ୍ତ୍ର ବ୍ୟବହାର କରାଗଲେ ମଧ୍ୟ ସେଠାରେ ଭେଦଭାବ ଅଛି ବୋଲି କୁହାଯିବ ନାହିଁ । ଉଦାହରଣସ୍ୱରୂପ ଭାରତବର୍ଷରେ କଠୋର ଜାତିପ୍ରଥା ଚଳୁଥିବାବେଳେ ଅସ୍ପୃଶ୍ୟ ଜାତିର ଲୋକଙ୍କ ଉପରେ ଭୀଷଣ ଅତ୍ୟାଚାର ହେଉଥିଲା । ଏହା ଆମ ଆମେରିକାବାସୀଙ୍କୁ ଘୃଣ୍ୟ ବୋଧ ହୋଇପାରେ । କିନ୍ତୁ ଆମେ ଯେଉଁ ଅର୍ଥରେ ଭେଦ ଭାବ ଶବ୍ଦର ବ୍ୟବହାର କରୁଅଛୁ, ସେହି ଅର୍ଥରେ ଏହି ଅତ୍ୟାଚାରକୁ 'ଭେଦଭାବ' କୁହାଯିବ ନାହିଁ । ଏବେ ଭାରତବର୍ଷର ଆଇନକାନୁନ୍ ଓ ସାମାଜିକ ପରିବର୍ତ୍ତନ ସଙ୍ଗେ ଏ ପ୍ରକାର ଅତ୍ୟାଚାର 'ଭେଦଭାବ' ହେବାକୁ ଯାଉଅଛି ।

ଏହି ଆଲୋଚନାରୁ ବୁଝାଯିବ ଯେ ଭେଦଭାବ ଗୋଟିଏ ବର୍ଣ୍ଣନାମୂଳକ ଶବ୍ଦ, ନୈତିକ ମୂଲ୍ୟନିର୍ଦ୍ଧାରଣ ନୁହେଁ । ଯେତେବେଳେ କେହି ନିଜର ମୌଳିକ ମୂଲ୍ୟବୋଧ ବିଷୟ କହେ ଓ ଭେଦମୂଳକ ବ୍ୟବହାର ଦ୍ୱାରା ସେହି ମୂଲ୍ୟବୋଧ କେତେ ପରିମାଣରେ ଲଙ୍ଘନ କରାଯାଉ ଅଛି, ମାପିବାକୁ ବସେ ସେତେବେଳେ ତାହା ପକ୍ଷରେ ଭେଦଭାବ ଗୋଟିଏ ନୈତିକ ଶବ୍ଦରୂପେ ବିବେଚିତ ହେବ । ଏପରି କରିବାକୁ ଉତ୍ସାହ ଦିଆଯାଇଥାଏ ; କିନ୍ତୁ ଭେଦଭାବ ଶବ୍ଦଟିର ଦୁଇ ପ୍ରକାର ବ୍ୟବହାର—ବର୍ଣ୍ଣନାମୂଳକ ଧାରଣା ଓ ନୈତିକ ବିଚାରଣା ମଧ୍ୟରେ ଯେଉଁ ପ୍ରଭେଦ ଅଛି, ତାହା ସ୍ପଷ୍ଟରୂପେ ହୃଦୟଙ୍ଗମ କରିବା ଉଚିତ ।

## ସଂଖ୍ୟାଲଘୁ ସମ୍ପ୍ରଦାୟର ଉତ୍ପତ୍ତି

କେତେକ ସମ୍ପ୍ରଦାୟର ଲୋକଙ୍କ ପ୍ରତି କାହିଁକି ଅସମାନ ବ୍ୟବହାର ପ୍ରଦର୍ଶନ କରାଯାଏ ? ବ୍ୟକ୍ତିବିଶେଷଙ୍କୁ ଏପରି ବ୍ୟବହାର କରିବାର କାରଣ ବାହାର କରିବା କଠିନ ବ୍ୟାପାର ନୁହେଁ । ହୁଏତ ଅନ୍ୟମାନଙ୍କର ବିରୋଧ କରିବା ନିମନ୍ତେ ସେମାନଙ୍କର ଏକ ଅସାଧାରଣ ଶକ୍ତି ଅଛି । କେତେକ ସମାଜର ମାନଦଣ୍ଡ ଅନୁସାରେ ଏହି ଶକ୍ତି ଅତି ଉତ୍ତମ ବିବେଚିତ ହୋଇପାରେ । ଏହି ଅସାଧାରଣ ଶକ୍ତି ହେତୁରୁ ସେମାନେ ଯାହା ପାଇବାର ଯୋଗ୍ୟ ତାହା ପାଇ ପାରନ୍ତି ନାହିଁ । କିନ୍ତୁ ଭେଦଭାବ (ବ୍ୟକ୍ତି ବିଶେଷଙ୍କ ପ୍ରତି ପ୍ରଦର୍ଶିତ ନ ହୋଇ) କୌଣସି ସମ୍ପ୍ରଦାୟର ସମସ୍ତ ଲୋକଙ୍କ ପ୍ରତି ପ୍ରଦର୍ଶିତ ହୋଇଥାଏ । ଏହା ପ୍ରଚଳିତ ମାନଦଣ୍ଡର ବିରୋଧୀ ଏବଂ ସମ୍ପ୍ରଦାୟର ଅନ୍ତର୍ଗତ ବ୍ୟକ୍ତିବିଶେଷଙ୍କର ଦୋଷଗୁଣର ବିଗ୍ରହ ରଖେ ନାହିଁ । ବିଭିନ୍ନ ପ୍ରକାରର ଲୋକଙ୍କ ମିଶ୍ରଣରେ ଗଠିତ ସମାଜମାନଙ୍କର ଆବିର୍ଭାବ ସଙ୍ଗେ ଏହି ଭେଦଭାବର ଉତ୍ପତ୍ତି ହୋଇଅଛି । ମାନବ-ଇତିହାସରେ ଅନେକ ଯୁଗ ଧରି ଲକ୍ଷ ଲକ୍ଷ ବର୍ଷ ପର୍ଯ୍ୟନ୍ତ ମନୁଷ୍ୟ ସମାନ ପ୍ରକାରର ଲୋକଙ୍କ ମିଶ୍ରଣରେ ଗଠିତ କ୍ଷୁଦ୍ର ସମାଜମାନଙ୍କରେ ବାସ କରି ଆସୁଥିଲେ । ସେ ସମାଜର ସମସ୍ତେ ଏକ ଭାଷା ବ୍ୟବହାର କରୁଥିଲେ, ଏକ ଧର୍ମକୁ ମାନି ଚଳୁଥିଲେ ; ସେମାନଙ୍କର ଶାରୀରିକ ଗଠନ ଏକା ପରି ଥିଲା ଏବଂ ସମସ୍ତେ ଏକପ୍ରକାର ରୀତିନୀତିର ଅନୁସରଣ କରୁଥିଲେ । କିନ୍ତୁ କେତେକ ହଜାର ବର୍ଷ ପୂର୍ବେ ଅନ୍ୟ ଦେଶକୁ ଗମନାଗମନ ଓ ଦେଶ ଜୟ ଫଳରେ ଅବସ୍ଥାର ପରିବର୍ତ୍ତନ ଘଟିଲା । ନାନା ଗୁରୁତ୍ୱପୂର୍ଣ୍ଣ ବିଷୟରେ ବିଭିନ୍ନ ସମ୍ପ୍ରଦାୟମାନେ ନିକଟ ସମ୍ପର୍କରେ ଆସିଲେ । କେତେକ କ୍ଷେତ୍ରରେ ସେହି ସମ୍ପ୍ରଦାୟମାନଙ୍କର ସମଷ୍ଟିକୁ ନେଇ ଜାତି ଓ ସାମ୍ରାଜ୍ୟ-ମାନ ଗଠିତ ହେଲା । ତଥାପି ସେମାନଙ୍କର ପୂର୍ବତନ ସ୍ୱାତନ୍ତ୍ର୍ୟ ଅନେକ ସ୍ଥଳରେ ରହିଗଲା । ସେମାନଙ୍କ ମଧ୍ୟରେ ବିଜେତା ରହିଲେ ବିଜିତ ମଧ୍ୟ ରହିଗଲେ । ଗୋଷ୍ଠୀଗୁଡ଼ିକ ନିଜ ନିଜର ଧର୍ମ ଓ ରୀତିନୀତିକୁ ଓ ପୂର୍ବ ପୁରୁଷଙ୍କର ଯାହା କିଛି ପବିତ୍ର ବୋଲି ବିବେଚିତ ହେଉଥିଲା, ତାହାକୁ ଧରି ରହିଲେ । ଗୋଷ୍ଠୀଗତ ବନ୍ଧନ ରହିଗଲା । ସେମାନଙ୍କର ପୂର୍ବତନ ସ୍ୱାଧୀନ ଜୀବନର ସ୍ମୃତି ଏପରି ଜାଗରୂକ ରହିଲା ଯେ ସେମାନେ ଗୋଷ୍ଠୀଗତ ସ୍ୱାତନ୍ତ୍ର୍ୟ ତ୍ୟାଗ କରି ପାରିଲେ ନାହିଁ [୬] ।

ଆଜିକାଲି ବିଦେଶଗମନ ଓ ବୃହତ୍ତର ସମାଜଗଠନ ପ୍ରକ୍ରିୟା ଚାଲିଥିବାରୁ ସଂଖ୍ୟାଲଘୁ ସମ୍ପ୍ରଦାୟମାନଙ୍କର ସୃଷ୍ଟି ହେଉଅଛି । ବର୍ତ୍ତମାନ ପୃଥିବୀରେ ଏପରି

---

[୬] ଏହି ବିଷୟର ବିଶଦ ଆଲୋଚନା ନିମନ୍ତେ ନିଉୟର୍କର କଲମ୍ବିଆ ଇଉନିଭରସିଟି ଦ୍ୱାରା ୧୯୪୫ ମସିହାରେ ପ୍ରକାଶିତ ଓ ଚାର୍ଲସ ଓ୍ୱାଗଲେ ଓ ମାର୍ଭିନ ହ୍ୟାରିସଙ୍କ ଦ୍ୱାରା ଲିଖିତ 'ମାଇନରିଟିସ୍ ଇନ୍ ଦ ନିଉ ଓ୍ୱାର୍ଲ୍ଡ' ପୁସ୍ତକ ଦ୍ରଷ୍ଟବ୍ୟ ।

କୌଣସି ସମାଜ ନାହିଁ ଯହିଁରେ କି ଭିନ୍ନ ଭାଷା, ଭିନ୍ନ ଧର୍ମ, ଭିନ୍ନ ଜାତି ଓ ଭିନ୍ନ ସଂସ୍କୃତିବିଶିଷ୍ଟ ଏକ ବା ଏକାଧିକ ସମ୍ପ୍ରଦାୟ ନ ଥିବେ । ଏହି ସମ୍ପ୍ରଦାୟମାନଙ୍କର ଲୋକେ ଅନେକାଂଶରେ କେତେକ ସୁବିଧାରୁ ବଞ୍ଚିତ । ଆଫ୍ରିକାର ଅଧିକାଂଶ ନୂତନ ରାଷ୍ଟ୍ର କ୍ଷୁଦ୍ର କ୍ଷୁଦ୍ର ଗୋଷ୍ଠୀର ସମଷ୍ଟିରେ ଗଠିତ । ସେହି ଗୋଷ୍ଠୀମାନଙ୍କ ମଧ୍ୟରୁ ଏକ ବା ଏକାଧିକ ଗୋଷ୍ଠୀ ଅନ୍ୟ ଗୋଷ୍ଠୀମାନଙ୍କ ଉପରେ କର୍ତ୍ତୃତ୍ୱ କରୁଅଛନ୍ତି । ଆକ୍ଷରିକ ଅର୍ଥରେ ଶତ ଶତ ବିଭିନ୍ନ ଗୋଷ୍ଠୀ ସୋଭିଏଟ ଇଉନିୟନରେ ଅଛନ୍ତି । ଭାଷା, ଧର୍ମ, ଜାତି ଓ ସଂସ୍କୃତିକ ଦୃଷ୍ଟିରୁ ସେମାନେ ପରସ୍ପରଠାରୁ ଭିନ୍ନ । ଅବଶ୍ୟ ସୋଭିଏଟ୍ ଇଉନିଅନର ସମ୍ବିଧାନ ଓ ଆଦର୍ଶବାଦ ଦୃଷ୍ଟିରୁ ସମସ୍ତେ ସମାନ ବ୍ୟବହାର ପାଇବା ଉଚିତ; କିନ୍ତୁ ଚିରାଚରିତ ଘୃଣା ଓ ବର୍ତ୍ତମାନ ରାଜନୈତିକ ଉଦ୍ଦେଶ୍ୟରେ ବ୍ୟବହୃତ ବିଦ୍ୱେଷ ଫଳରେ ଭେଦଭାବ ସୃଷ୍ଟି ହେଉଅଛି [୭] । ନିଉଜିଲାଣ୍ଡର ପ୍ରଭାବଶାଳୀ ଇଉରୋପୀୟମାନେ ପ୍ରଥମେ ସେଠାର ଆଦିମ ମାଓରି ଜାତି ସହିତ ଯୁଦ୍ଧ କରିଥିଲେ; ତତ୍ପରେ ସେମାନଙ୍କୁ ରକ୍ଷାକରିବାକୁ ଉଦ୍ୟମ କରିଥିଲେ । ବର୍ତ୍ତମାନ ସେମାନେ ଜମିର ମାଲିକାନା ସ୍ୱତ୍ୱ ଓ ସ୍ୱାଧୀନତାର ପ୍ରଭେଦ ନେଇ ମାଓରିମାନଙ୍କ ସହିତ ବିରୋଧ କରୁଛନ୍ତି । ଆମେରିକାରେ ଲୋହିତ ଭାରତୀୟ ଓ ପ୍ରଭାବଶାଳୀ ଶ୍ୱେତାଙ୍ଗମାନଙ୍କ ମଧ୍ୟରେ ଠିକ୍ ସେହିପରି ଏକ ଅବସ୍ଥା ସୃଷ୍ଟି ହୋଇଛି । ଦୂରରୁ ଆମେ ମନେ କରିପାରୁଁ ଯେ ଚୀନ ଗୋଟିଏ ବିରାଟ ଦେଶ ଓ ସେଥିରେ ସମଶ୍ରେଣୀର ଲୋକ ବାସ କରୁଅଛନ୍ତି । କିନ୍ତୁ ବାସ୍ତବରେ ଏହାର ସୀମା ମଧ୍ୟରେ ଅନେକ ସଂଖ୍ୟାଲଘୁ ଶ୍ରେଣୀର ଲୋକ ଅଛନ୍ତି । ସେମାନଙ୍କର ଜାତି, ଭାଷା ଓ ଧର୍ମ ବିଭିନ୍ନ । ସେମାନଙ୍କର ସଂଖ୍ୟା ଶତକଡ଼ା ଦଶରୁ ଊଣା ହେଲେହେଁ ସେହିମାନେ ଦେଶର ଶତକଡ଼ା ଦଶ ଭାଗରୁ ଅଧିକ ଜମି ଅଧିକାର କରି ବସିଅଛନ୍ତି । ପେପିଙ୍ଗରେ ଯେଉଁ କେନ୍ଦ୍ର ସରକାର ଅଛି, ତାହା ବିଷୟରେ ସେମାନେ କିଛି ଚିନ୍ତା କରନ୍ତି ନାହିଁ । ତେଣୁ ସରକାର ସେମାନଙ୍କୁ 'ଆଞ୍ଚଳିକ ଜାତୀୟବାଦୀ' ଆଖ୍ୟା ଦେଇ ଲୋପ କରିଦେବାକୁ ଚେଷ୍ଟିତ । ଇସ୍ରାଏଲର ପ୍ରାନ୍ତ ଦେଶରେ

---

[୭] ୧୯୭୨ ମସିହାରେ ଅକ୍ସଫୋର୍ଡ ଇଉନିଭରସିଟି ପ୍ରେସ ଦ୍ୱାରା ପ୍ରକାଶିତ ଜିଓଫ୍ରି ହ୍ୱିଲରଙ୍କ ଲିଖିତ ରେସିୟାଲ ପ୍ରବ୍ଲେମସ୍ ଇନ୍ ସୋଭିଏଟ୍ ମୁସ୍‌ଲିମ ଏସିଆ (୨ୟ ସଂସ୍କରଣ); ଓ୍ୱାଲଟର ଜେ କୋଲାର୍ଜଙ୍କ ଲିଖିତ ଓ ହନୋଲୁଲୁର ହଓ୍ୱାଇ ଇଉନିଭରସିଟି ପ୍ରେସରୁ ପ୍ରକାଶିତ ରେସ୍ ରିଲେସନସ୍ ଇନ୍ ଓ୍ୱାର୍ଲ୍ଡ୍ ପାରସ୍‌ପେକ୍‌ଟିଭ ପୁସ୍ତକର ନବମ ଅଧ୍ୟାୟ ରେସ୍ ରିଲେସନସ୍ ଇନ୍ ଦି ସୋଭିଏଟ୍ ଇଉନିୟନ ଓ ଫରେନ୍ ଆଫେୟାରସ ଓ ପତ୍ରିକାର ୧୯୭୩ ମସିହା ଜାନୁୟାରି ସଂଖ୍ୟାରେ ପୃ ୪୨୦-୪୩୦ ସ୍ଥାନରେ ପ୍ରକାଶିତ ଦି ଷ୍ଟେଟସ୍ ଅଫ୍ ଜୁସ୍ ଇନ୍ ଦି ସୋଭିଏଟ୍ ଇଉନିୟନ ଦେଖ ।

ସଂଖ୍ୟାଲଘୁ ଆରବ ସମ୍ପ୍ରଦାୟ ବାସ କରନ୍ତି । ଆଇନ ଦ୍ୱାରା ସେମାନେ ସୁରକ୍ଷିତ ହେଲେହେଁ ଇହୁଦୀ-ପ୍ରଧାନ ଏହି ରାଜ୍ୟରେ ସେମାନେ ଅନେକ ସୁବିଧାରୁ ବଞ୍ଚିତ । ଏହି ଇହୁଦୀମାନେ ମୂଳ ଦେଶ ଭିତ୍ତିରେ ପରିଚୟ ଦେଇଥାନ୍ତି । ପ୍ରାଚ୍ୟ ଇହୁଦୀମାନେ ନିକଟ ପ୍ରାଚ୍ୟ ଓ ଉତ୍ତର ଆଫ୍ରିକାର ଦେଶମାନଙ୍କରୁ ଆଗତ । ଇଉରୋପରୁ ଆଗତ ଇହୁଦୀମାନେ ଏମାନଙ୍କ ପ୍ରତି ବିରାଗ ପ୍ରକାଶ କରିଥାନ୍ତି [୮] । ଅଳ୍ପକାଳ ହେଲା ବିଭିନ୍ନ କମନଓ୍ୱେଲଥ ରାଜ୍ୟମାନଙ୍କରୁ ବିଶେଷତଃ ଜାମେଇକାରୁ ପ୍ରାୟ ଅଢ଼େଇ ଲକ୍ଷ କୃଷ୍ଣକାୟ ବୈଦେଶିକଙ୍କୁ ଇଂଲଣ୍ଡରେ ସ୍ଥାନ ଦିଆଯାଇଅଛି । ସେମାନଙ୍କର ଆଇନଗତ ଅଧିକାରର ସୁରକ୍ଷା କରାଯାଇଅଛି ; କିନ୍ତୁ ବୃତ୍ତିକ୍ଷେତ୍ରରେ ଓ ଗୃହନିର୍ମାଣରେ ସେମାନଙ୍କ ପ୍ରତି ଭେଦଭାବ ଦେଖାଯାଏ । ଏହି କାରଣରୁ କେତେ ଗଣ୍ଡଗୋଳ ଘଟି ଯାଇଅଛି । ଏଥିରୁ ସେମାନଙ୍କର ସଂଖ୍ୟାଲଘୁ ଆସନ ପ୍ରମାଣିତ ହୋଇଯାଏ । ବିରୋଧ ଓ ଆନ୍ଦୋଳନ ଫଳରେ ୧୯୬୨ ମସିହାରେ ବ୍ରିଟେନକୁ ପ୍ରଥମଥର ପାଇଁ 'ବୈଦେଶିକମାନଙ୍କର ବସତି' ଆଇନ ପ୍ରଣୟନ କରିବାକୁ ପଡ଼ିଥିଲା । ଏହି ଆଇନ ଦ୍ୱାରା କମନଓ୍ୱେଲଥ ଦେଶମାନଙ୍କରୁ ଲୋକେ ଆସି ବ୍ରିଟେନରେ ବାସ କରିବାର ସୁବିଧାକୁ ସଙ୍କୁଚିତ କରି ଦିଆଯାଇଅଛି । [୯] ।

ଦକ୍ଷିଣ ଆଫ୍ରିକାରେ ଏକ କୋଟି ଚାଳିଶ ଲକ୍ଷ ଆଫ୍ରିକୀୟ ଓ ଭାରତୀୟ ଅଧିବାସୀ ଅଛନ୍ତି । ଅଥଚ ମାତ୍ର ତିରିଶ ଲକ୍ଷ ଶ୍ୱେତାଙ୍ଗ ଏମାନଙ୍କ ଉପରେ ଆଧିପତ୍ୟ କରୁଅଛନ୍ତି । ଏଥିରୁ ବୁଝାଯିବ ଯେ ସମାଜବିଜ୍ଞାନ ଭାଷାରେ ଯାହାକୁ

[୮] ୧୯୫୪ ମସିହାରେ ପ୍ରକାଶିତ ଓ ଏସ୍. ଏନ୍. ଇସେନ୍‌ଷ୍ଟେଡଙ୍କ ଦ୍ୱାରା ଲିଖିତ ଦି ଆବ୍ ସରପ୍‌ସନ୍ ଅଫ୍ ଇମିଗ୍ରାଣ୍ଟସ୍ ଏବଂ ସୋସିଆଲ ଫୋର୍ସ ପତ୍ରିକାର ୧୯୬୨ ମସିହା ମେ ସଂଖ୍ୟାରେ ପ୍ରକାଶିତ 'ଏମାରଜିଂ ପାଟର୍ନସ୍ ଅବ୍ ଏଥନିକ୍ ଷ୍ଟ୍ରେନ୍ ଇନ୍ ଇସ୍‌ରାୟେଲ' ପ୍ରବନ୍ଧର ପୃଷ୍ଠା ୨୬୩-୬୬୩୦ ପୃଷ୍ଠା ଦେଖ ।

[୯] ୧୯୬୧ ମସିହାରେ ମାସାଚୁସେଟସ କ୍ୟାମ୍ବ୍ରିଜର ହାର୍ଭାର୍ଡ ଇଉନିଭରସିଟି ପ୍ରେସରୁ ପ୍ରକାଶିତ ଓ ଡୋରୋଥି ଗ୍ଲାସଙ୍କ ଦ୍ୱାରା ଲିଖିତ 'ଲଣ୍ଡନସ୍ ନିଉ କାମାରସ୍' ; ୧୯୬୦ ମସିହାରେ ଅକ୍ସଫୋର୍ଡ ଇଉନିଭରସିଟି ପ୍ରେସ ଦ୍ୱାରା ଲଣ୍ଡନର ଇନଷ୍ଟିଚ୍ୟୁଟ୍ ଅଫ୍ ରେସ୍ ରିଲେସନସ୍ ପକ୍ଷରୁ ପ୍ରକାଶିତ ଓ ଜେ. ଏ. ଜି ଗ୍ରିଫିଥ୍‌ଙ୍କ ଦ୍ୱାରା ଲିଖିତ 'କଲାରର୍ଡ ଇମିଗ୍ରାଣ୍ଟସ୍ ଇନ୍ ବ୍ରିଟେନ ; ମାଇକେଲ ବାଣ୍ଟନଙ୍କ ଦ୍ୱାରା ଲିଖିତ ଓ ନିଉବ୍ରଣ୍ଟସଉଇକର ରଜର୍ସ ଇଉନିଭରସିଟି ପ୍ରେସ ଦ୍ୱାରା ୧୯୬୦ ମସିହାରେ ପ୍ରକାଶିତ ହ୍ୱାଇଟ୍ ଆଣ୍ଡ କଲାରର୍ଡ ପୁସ୍ତକମାନ ଦ୍ରଷ୍ଟବ୍ୟ ।

'ସଂଖ୍ୟାଲଘୁ' କୁହାଯାଏ, ତାହା ଲୋକ ସଂଖ୍ୟା ଦୃଷ୍ଟିରୁ ସଂଖ୍ୟାଗରିଷ୍ଠ ହୋଇପାରେ [୧୦] ।

ଏହି ଉଦାହରଣଗୁଡ଼ିକ ଦେବାର ଉଦ୍ଦେଶ୍ୟ ହେଲା ଆଧୁନିକ ଜଗତରେ ସଂଖ୍ୟାଲଘୁ-ସଂଖ୍ୟାଗୁରୁ ପ୍ରଶ୍ନ ସୁଦୂର ପ୍ରସାରିତ । ଏଠାରେ ଯେଉଁ କେତୋଟିର ଉଲ୍ଲେଖ କରାଗଲା ତାହା ଆଦୌ ସମ୍ପୂର୍ଣ୍ଣ ନୁହେଁ । ଜାପାନ ଓ ଇଣ୍ଡୋନେସିଆ, କାନାଡ଼ା ଓ ଫ୍ରାନ୍ସ, ବ୍ରାଜିଲ ଓ ମାର୍କିନ ଯୁକ୍ତରାଷ୍ଟ୍ର ଏବଂ ଆହୁରି ଅନେକ ରାଜ୍ୟର ସମାଜ ବିଷୟ ଅଧ୍ୟୟନ କରି ସେହି ସମାଜମାନଙ୍କୁ ବୁଝିବାକୁ ହେଲେ ସଂଖ୍ୟାଲଘୁ ବିଷୟ ଅଧ୍ୟୟନ କରିବାକୁ ପଡ଼ିବ । ସଂକ୍ଷେପରେ କହିବାକୁ ଗଲେ, ପୃଥିବୀ ଗତିଶୀଳତା, ପ୍ରାଚୀନ କାଳର ସ୍ୱତନ୍ତ୍ର ସମ୍ପ୍ରଦାୟମାନଙ୍କର ସମ୍ମିଶ୍ରଣ ଫଳରେ ଅନେକ ନୂତନ ରାଷ୍ଟ୍ରର ସୃଷ୍ଟି ହେଉଅଛି । ତେଣୁ ଏଥିରେ ସଂଖ୍ୟାଗୁରୁ ସଂଖ୍ୟାଲଘୁ ପରିସ୍ଥିତି ଉପୁଜିବା ଅତି ସ୍ୱାଭାବିକ ।

ଶେଷ ବାକ୍ୟଟିରେ ଯାହା କୁହାଗଲା, ସେଥିରୁ କେହି କେହି ଭିନ୍ନ ଅର୍ଥ ବାହାର କରିବାର ଆଶଙ୍କା ଅଛି । କିନ୍ତୁ ଏହାର ଅଭିପ୍ରାୟ ସେପରି ନୁହେଁ । ଏଥିରୁ ବୁଝିବାକୁ ହେବ ନାହିଁ ଯେ 'ଭେଦଭାବ' ଓ ସାମ୍ପ୍ରଦାୟିକ ବିରୋଧ' ଏପରି ସୁଦୃଢ଼ ଯେ ତାହାର କୌଣସି ପ୍ରତିକାର ନାହିଁ ; ତେଣୁ କେବଳ ଦୀର୍ଘ ଶ୍ୱାସ ପକାଇ ନୀରବ ରହିବାକୁ ହେବ । ଏକଥା ସତ୍ୟ ଯେ ଆମର ଆଧୁନିକ ପୃଥିବୀର ଗୋଟିଏ ସ୍ୱାଭାବିକ ପରିଣାମ ହେଉଛି, ସଂଖ୍ୟାଲଘୁ ସମ୍ପ୍ରଦାୟ । କିନ୍ତୁ ଏ କଥା ମଧ୍ୟ ସତ୍ୟ ଯେ ଭେଦଭାବର ଅନେକ ପ୍ରକାର ଅଛି ଓ ସେମାନଙ୍କ ଭିତରେ ବହୁତ ପ୍ରଭେଦ ଅଛି । ଏହି ଭେଦଭାବ ହିଟଲରଙ୍କ ଦ୍ୱାରା ଇହୁଦୀମାନଙ୍କର ନିର୍ମମ ସମୂହହତ୍ୟାଠାରୁ ଆରମ୍ଭ କରି ଯୁକ୍ତରାଷ୍ଟ୍ରରେ ଇଟାଲୀୟମାନଙ୍କ ପ୍ରତି ପ୍ରଦର୍ଶିତ ଅଧୁନା ଲୁପ୍ତପ୍ରାୟ ଚରାଚରିତ ବିଦ୍ୱେଷ ଆକାରରେ ଦେଖା ଦେଇପାରେ । ଆହୁରି ମଧ୍ୟ ସ୍ମରଣ ରଖିବାକୁ ହେବ ଯେ ସଂଖ୍ୟାଲଘୁ ସମ୍ପ୍ରଦାୟର ଉତ୍ପତ୍ତି ଓ ସ୍ଥିତି ବିଷୟ ବର୍ଣ୍ଣନା କରିବାର ଅର୍ଥ ଏହାର ଭବିଷ୍ୟତ ବର୍ଣ୍ଣନା କରିବା ନୁହେଁ । ସମାଜସମୂହ ନାଟକୀୟ ପରିବର୍ତ୍ତନ ମଧ୍ୟରେ ଗତି କରୁଅଛି । ସମ୍ବାଦର ଆଦାନ ପ୍ରଦାନ ଲାଗି ନାନା ବ୍ୟବସ୍ଥା ହେଉଅଛି ; ଅନେକ ଦେଶରେ ସାକ୍ଷରତା

---

[୧୦] ନର୍ମାନ ଫିଲିପ୍ସଙ୍କ ଲିଖିତ ଓ ନିଉୟର୍କର ଡେଭିଡ ମାକ୍ କେ କମ୍ପାନୀ ଦ୍ୱାରା ୧୯୫୧ ମସିହାରେ ପ୍ରକାଶିତ 'ଦ ଟ୍ରାଜେଡ଼ି ଅଫ୍ ଆପାରଥାଇଡ୍' ; ଗୋଏଣ୍ଡୋଲେନ କାର୍ଟରଙ୍କ ଲିଖିତ ଓ ଲଣ୍ଡନର ଟେମସ୍ ଏଣ୍ଡ ହଡସନ କମ୍ପାନୀ ଦ୍ୱାରା ୧୯୫୮ ମସିହାରେ ପ୍ରକାଶିତ 'ଦ ପଲିଟିକସ୍ ଅଫ୍ ଇନ୍ ଇକ୍ୱାଲିଟି, ସାଉଥ୍ ଆଫ୍ରିକା ସିନସ୍ ୧୯୪୮' ଏବଂ ହିଲ କୁପରଙ୍କ ଲିଖିତ ଓ ପିଟରମରିସ-ବର୍ଗର ନେଟାଲ ଇଉନିଭରସିଟି ପ୍ରେସ ଦ୍ୱାରା ୧୯୬୦ ମସିହାରେ ପ୍ରକାଶିତ 'ଇଣ୍ଡିଆନ୍ ପିପଲ୍ ଇନ୍ ନେଟାଲ' ପୁସ୍ତକଗୁଡ଼ିକ ଦେଖ ।

ସାଂବଳଗୀନ କରାଯାଉଅଛି । ଏହାଦ୍ୱାରା ଗୋଟାଏ ଜାତୀୟ ଐକ୍ୟର ସୃଷ୍ଟି ହେଉଅଛି । ସାମାଜିକ ଉନ୍ନତି ଲାଗି ନାନା ପନ୍ଥାର ଉଦ୍ଭାବନ କରି ଯାଉଅଛି । ଉଦାହରଣସ୍ୱରୂପ ଆଇନ ଓ ଆନ୍ତଃସାମ୍ପ୍ରଦାୟିକ ସମ୍ପର୍କ କମିଶନମାନଙ୍କର ପ୍ରତିଷ୍ଠା ଦ୍ୱାରା ସଂଖ୍ୟାଲଘୁ ସମ୍ପ୍ରଦାୟମାନଙ୍କର ଅଧିକାର ସୁରକ୍ଷିତ ହେଉଅଛି ଏବଂ ସମ୍ପ୍ରଦାୟମାନଙ୍କ ମଧ୍ୟରେ ଐକ୍ୟ ରକ୍ଷା କରାଯାଉଛି । କେବଳ ଗୋଟିଏ ରାଷ୍ଟ୍ରର ଅନ୍ତର୍ଗତ ସମ୍ପ୍ରଦାୟମାନ ଯେ ପରସ୍ପର ନିର୍ଭରଶୀଳ ତାହା ନୁହେଁ ; ସମଗ୍ର ଜଗତର ବିଭିନ୍ନ ସମ୍ପ୍ରଦାୟ ଯେ ପରସ୍ପର ନିର୍ଭରଶୀଳ, ଏହା ପ୍ରତ୍ୟକ୍ଷ ଦେଖିବାକୁ ମିଳିବ । ବିଭିନ୍ନ ସମ୍ପ୍ରଦାୟ ମଧ୍ୟରେ ସଂଘର୍ଷ ଫଳରେ ଯେ ବିପଦ ଘଟିବ ତାହା ସୁସ୍ପଷ୍ଟ । ପୂର୍ବକାଳରେ ଉତ୍ତମ ସମାଜ କହିଲେ ଗୋଟିଏ ସମଶ୍ରେଣୀୟ ସମାଜ ବୁଝିବାକୁ ହେଉଥିଲା ; କିନ୍ତୁ ଆଜିକାଲିର ସମାଜ ଏକ ନୂତନ ଆଦର୍ଶ ବାହାର କରିଛି ; ଏହା ପ୍ରାଚୀନ ଆଦର୍ଶଠାରୁ ଭିନ୍ନ । ଏହି ଶେଷ କଥାଟି ବଡ଼ ଗୁରୁତ୍ୱପୂର୍ଣ୍ଣ ; ପରବର୍ତ୍ତୀ ଏକ ଅଧ୍ୟାୟରେ ବହୁଳବାଦ ପ୍ରସଙ୍ଗରେ ଆମ୍ଭେମାନେ ଏହାର ବିଶଦ ଆଲୋଚନା କରିବୁ । ଆମର ପ୍ରାଚୀନ ଗୋଷ୍ଠୀର ଧାରଣା ହେଉଛି ଯେ ସମାଜର ସମସ୍ତଙ୍କର ଚେହେରା ଏକାପରି ହେବ, ସମସ୍ତେ ଏକପ୍ରକାର ଚିନ୍ତା କରିବେ । ଏହି ଧାରଣା ଦୂରୀଭୂତ ହେବାକୁ ବହୁକାଳ ଗଡ଼ି ଯାଇଅଛି । ଭାଷାରେ, ଧର୍ମରେ, ଗୋଷ୍ଠୀରେ ଓ ଜାତିରେ ପାର୍ଥକ୍ୟ ଦେଶ ବା ରାଷ୍ଟ୍ରପକ୍ଷରେ କ୍ଷତିକାରକ ; ଏଭଳି ଧାରଣା ଫଳରେ ସମସ୍ତ ଆମେରିକାବାସୀଙ୍କୁ ଆମେରିକାନ୍, ସମସ୍ତ ରୁଷବାସୀଙ୍କୁ ରୁଷୀୟ, ସମସ୍ତ ଜର୍ମାନବାସୀଙ୍କୁ ଜର୍ମାନ୍ କିମ୍ବା ସମସ୍ତ ଚୀନ-ବାସୀଙ୍କୁ ଚୀନା କରିବାର ଉଦ୍ୟମ କରାଯାଇଅଛି ଓ କରାଯାଉଅଛି । ସଂଖ୍ୟାଲଘୁ ସମ୍ପ୍ରଦାୟମାନଙ୍କୁ ଅନ୍ୟମାନଙ୍କ ସଦୃଶ ଗଢ଼ି ପରିବର୍ତ୍ତନ କରିବାକୁ ହେବ ; କିମ୍ବା ସେମାନଙ୍କୁ ଗୋଟାଏ ସ୍ୱତନ୍ତ୍ର ସ୍ଥାନ ଦେଇ ଅଲଗା ଅଞ୍ଚଳରେ ରଖିବାକୁ ହେବ ; କିମ୍ବା ସମାଜରୁ ବିତାଡ଼ିତ କରି ଦେବାକୁ ହେବ । ଏ ପ୍ରକାର ଧାରଣା ପୂର୍ବେ ଥିଲା । କିନ୍ତୁ ଆଧୁନିକ ଜଗତରେ ଏପ୍ରକାର ପନ୍ଥା ଅନୁସରଣ କଲେ ବିପଦ ବରଣ କରିବାକୁ ହେବ । ଏ ନୀତିକୁ ଯଦି ଜାତି କ୍ଷେତ୍ରରୁ ନେଇ ଆନ୍ତର୍ଜାତିକ କ୍ଷେତ୍ରରେ ପ୍ରୟୋଗ କରାଯାଏ, ଯେବେ ଜଗତର ଧ୍ୱଂସ ଅନିବାର୍ଯ୍ୟ ହୋଇପଡ଼ିବ । ଏହି ବିଷୟଟିକୁ ବିଶେଷଭାବରେ ଧ୍ୟାନ ଦେବା ଉଚିତ ।

## ସଂଖ୍ୟାଲଘୁ ସମ୍ପ୍ରଦାୟର ପ୍ରକାର

ଟିକିଏ ଚିନ୍ତା କଲେ ଜଣାଯିବ ଯେ, ଆମ୍ଭେମାନେ ସଂଖ୍ୟାଲଘୁ ସମ୍ପ୍ରଦାୟ-ମାନଙ୍କ ଶ୍ରେଣୀ ବିଭାଗର ଭିତ୍ତି ସ୍ୱରୂପ କେତେଗୁଡ଼ିଏ ନୀତି ବାହାର କରିପାରିବା । କେତେକ ସମ୍ପ୍ରଦାୟ ସାଧାରଣଙ୍କଠାରୁ ଉଚ୍ଚତର ଶ୍ରେଣୀରେ ଅବସ୍ଥିତ ; ଯଥା— ଥାଇଲଣ୍ଡର ଚୀନାମାନେ, କିମ୍ବା ମାର୍କିନ ଯୁକ୍ତରାଷ୍ଟ୍ରରେ ଥିବା ଇହୁଦୀମାନେ ।

ଅନ୍ୟ କେତେକ ସମ୍ପ୍ରଦାୟ ସାଧାରଣଙ୍କଠାରୁ ନିମ୍ନତର ଶ୍ରେଣୀରେ ଅବସ୍ଥିତ; ଯଥା—ଜାମେଇକାରୁ ଆଗତ ଇଂଲଣ୍ଡର ଅଧିବାସୀମାନେ କିମ୍ବା ମାର୍କିନ ଯୁକ୍ତରାଷ୍ଟ୍ରର ନିଗ୍ରୋମାନେ। ଏହି ସଂଖ୍ୟାଲଘୁ ସମ୍ପ୍ରଦାୟଗୁଡ଼ିକ ସେମାନଙ୍କର ଧର୍ମ, ଭାଷା, ଜାତୀୟ ଉତ୍ପତ୍ତି, ଜାତି ଦ୍ୱାରା କିମ୍ବା ଏମାନଙ୍କ ମଧ୍ୟରୁ କେତେକ ଓ ଅନ୍ୟାନ୍ୟ ବିଷୟଦ୍ୱାରା ଅନ୍ୟମାନଙ୍କଠାରୁ ବାରି ହୋଇ ପଡ଼ନ୍ତି। କୌଣସି ସମ୍ପ୍ରଦାୟ ଲୋକ ସଂଖ୍ୟା ଦୃଷ୍ଟିରୁ ଦେଶର ଲୋକ ସଂଖ୍ୟାର ଅଧିକ ଭାଗ ହୋଇ ପାରନ୍ତି; ଯଥା—ଦକ୍ଷିଣ ଆଫ୍ରିକାର ବାଣ୍ଟୁ ସମ୍ପ୍ରଦାୟ। କୌଣସି ସମ୍ପ୍ରଦାୟ ଲୋକ ସଂଖ୍ୟାର ଅଳ୍ପଭାଗ ହୋଇ ପାରନ୍ତି; ଯଥା—ଭାରତବର୍ଷରୁ ଆଗତ ମାର୍କିନ ଯୁକ୍ତରାଷ୍ଟ୍ରବାସୀଗଣ। ଏହି ସବୁର ପ୍ରତ୍ୟେକଟି ସଂଖ୍ୟାଗୁରୁ—ସଂଖ୍ୟାଲଘୁ ସମ୍ପର୍କକୁ ପ୍ରଭାବିତ କରିଥାଏ। ବୋଧହୁଏ, ସଂଖ୍ୟାଲଘୁ ସମ୍ପ୍ରଦାୟମାନଙ୍କୁ ସେମାନଙ୍କର ଦୀର୍ଘକାଳୀନ ଲକ୍ଷ୍ୟ ଭିତ୍ତିରେ ବିଭକ୍ତ କରିବା ସବୁଠାରୁ ଭଲ। ଲୁଇସ ଉଇଥ ଏହିପରି ଚାରୋଟି ଲକ୍ଷ୍ୟର ଉଲ୍ଲେଖ କରିଅଛନ୍ତି। (୧) ସ୍ୱାଙ୍ଗୀକରଣ (୨) ବହୁଳବାଦ (୩) ପୃଥକ୍‌କରଣ ଓ (୪) କର୍ତ୍ତୃତ୍ୱ [୧୧]। ଅନେକ ସଂଖ୍ୟାଲଘୁ ସମ୍ପ୍ରଦାୟ ନୀତିଦୃଷ୍ଟିରୁ ପରସ୍ପର ଠାରୁ ଭିନ୍ନ। କିନ୍ତୁ ପ୍ରଧାନ ଲକ୍ଷଣଗୁଡ଼ିକ ଏହିପରି ହୋଇପାରେ।

ଆମ୍ଭମାନଙ୍କର ଗୋଟିଏ ସମ୍ପ୍ରଦାୟଭାବରେ ରହିବାର ଦରକାର ନାହିଁ। ଆମ୍ଭମାନଙ୍କୁ ବ୍ୟକ୍ତିବିଶେଷ ହିସାବରେ ସ୍ୱୀକାର କର। ଏହା ହେଉଛି—ସ୍ୱାଙ୍ଗୀକରଣ।

ଏକ ସମ୍ପ୍ରଦାୟ ଭାବରେ ଆମର ସ୍ୱାତନ୍ତ୍ର୍ୟ ରହିଥାଉ। ହୁଏତ ଭାଷା, ଧର୍ମ ବା ସଂସ୍କୃତିର ଭିତ୍ତିରେ ଆମର ସମ୍ପ୍ରଦାୟ ଗଠିତ ହେବ ଓ ଆମର ସମାଜପ୍ରତି ଆନୁଗତ୍ୟ ରହିଥିବ। ଏହା ହେଉଛି—ବହୁଳବାଦ।

ଆମକୁ ଆମର ସ୍ୱାଧୀନତା ଦିଅ। ଆମେ ଆମର ନିଜ ସମାଜ ଗଠନ କରିବୁ। ସେଥିରେ ଆମେ ନିର୍ବିରୋଧରେ ନିଜର ଜୀବନଯାତ୍ରା ପ୍ରଣାଳୀ ଅନୁସରଣ କରିବୁ। ଏହା ହେଉଛି—ପୃଥକ୍‌କରଣ।

ଆମେ ଆଉ ଅନ୍ୟର କର୍ତ୍ତୃତ୍ୱ ସହ୍ୟ କରିପାରିବୁ ନାହିଁ। ବର୍ତ୍ତମାନ ସମାଜରେ ଯେଉଁ ବ୍ୟବସ୍ଥା ଅଛି, ତାକୁ ଆବଶ୍ୟକ ପଡ଼ିଲେ ଯୁଦ୍ଧ କରି ପରିବର୍ତ୍ତନ କରିବୁ। ଏହା ହେଉଛି କର୍ତ୍ତୃତ୍ୱ।

---

[୧୧] ଲିଣ୍ଟନଙ୍କ ପୁସ୍ତକରେ ପୃଷ୍ଠା ୩୪୭-୩୭୨ ଦ୍ରଷ୍ଟବ୍ୟ। ଲକ୍ଷ୍ୟ କରିବାକୁ ହେବ ଯେ ଉଇର୍ଥ ଡମିନେସନ୍ ବା କର୍ତ୍ତୃତ୍ୱ ପରିବର୍ତ୍ତେ ମିଲିଟାନ୍‌ସୀ ବା ଯୁଦ୍ଧ ପ୍ରବୃତ୍ତି ଶବ୍ଦ ବ୍ୟବହାର କରିଅଛନ୍ତି। ଅନ୍ୟ ଶ୍ରେଣୀର ସଂଖ୍ୟାଲଘୁ ସମ୍ପ୍ରଦାୟରେ ମଧ୍ୟ ଏହି ଯୁଦ୍ଧ ପ୍ରବୃତ୍ତି ଦେଖା ଯାଇପାରେ। ତେଣୁ ଏହି ଯୁଦ୍ଧ ପ୍ରବୃତ୍ତି ଶବ୍ଦଟିର ବ୍ୟବହାର ଅଧିକ ଯୁକ୍ତିଯୁକ୍ତ।

କୌଣସି ସମାଜକୁ ବୁଝିବାକୁ ହେଲେ ତାହାର ସଂଖ୍ୟାଲଘୁ ସମ୍ପ୍ରଦାୟମାନଙ୍କର ଲକ୍ଷ୍ୟ କଅଣ, ଏପରି ଲକ୍ଷ୍ୟ ହେବାର କାରଣ କଅଣ ଓ ସେମାନଙ୍କ ଭିତରେ କି କି ପରିବର୍ତ୍ତନ ଘଟୁଅଛି—ଏସବୁ ଜାଣିବା ଦରକାର । ଆମେରିକାରେ ବାସ କରୁଥିବା ସଂଖ୍ୟାଲଘୁ ସମ୍ପ୍ରଦାୟମାନେ ଚିରକାଳ ସ୍ୱାଙ୍ଗୀକରଣ ବା ବହୁଳବାଦର ସମର୍ଥକ । ଆମେରିକାବାସୀ ଭାରତୀୟମାନଙ୍କ ମଧ୍ୟରେ ସାମାନ୍ୟ ପରିମାଣରେ ପୃଥକ୍‌କରଣ ନୀତି ଦେଖାଯାଏ ଏବଂ ନିଗ୍ରୋମାନଙ୍କ ମଧ୍ୟରେ ଏହି ନୀତି ଆହୁରି କମ୍ ଦେଖାଯାଏ । ସମସାମୟିକ କୃଷ୍ଣକାୟ ମୁସଲମାନ ଆନ୍ଦୋଳନ କେତେକ ପରିମାଣରେ ଯୁଦ୍ଧପ୍ରବୃତ୍ତି ବିଶିଷ୍ଟ । ଏମାନେ କର୍ତ୍ତୃତ୍ୱ ଉପରେ ଗୁରୁତ୍ୱ ଦେଇଥାନ୍ତି ଏମାନେ ପୃଥିବୀ ସମ୍ବନ୍ଧରେ ଯେଉଁ ଧାରଣା କରିଥାନ୍ତି ସେଥିରେ ଅନ୍ୟ ଉନୋଟି ଲକ୍ଷ୍ୟ ମଧ୍ୟ କେତେକ ସ୍ଥାନ ଅଧିକାର କରିଥାଏ [୧୨] ।

ଇଉରୋପରେ ସଂଖ୍ୟାଲଘୁ ସମ୍ପ୍ରଦାୟ କହିଲେ ଅନ୍ୟ ଏକ ଅର୍ଥରେ ବୁଝିବାର ସମ୍ଭାବନା ଅଛି । ଯେଉଁ ଲୋକମାନେ ଅତି ପ୍ରାଚୀନ କାଳରୁ ରାଜ୍ୟର ଗୋଟିଏ ଅଂଶ ଅଧିକାର କରି ରହିଅଛନ୍ତି ଓ ସେହି ଅଂଶର ସୀମାରେ ପରିବର୍ତ୍ତନ

---

[୧୨] କୃଷ୍ଣକାୟ ମୁସଲମାନମାନଙ୍କ ବିଷୟରେ ସି-ଏରିକ୍ ଲିଙ୍କନଙ୍କ ଦ୍ୱାରା ଲିଖିତ ଓ ବୋଷ୍ଟନର ବୀକନ୍ ପ୍ରେସ ଦ୍ୱାରା ୧୯୬୧ ମସିହାରେ ପ୍ରକାଶିତ 'ଦ ବ୍ଲାକ୍ ମୁସ୍‌ଲମସ୍ ଇନ୍ ଆମେରିକା' ଏବଂ ଇ, ଇଉ, ଏଶିନ-ଉଦମଙ୍କ ଦ୍ୱାରା ଲିଖିତ ଓ ଚିକାଗୋର ଇଉନିଭରସିଟି ପ୍ରେସ ଦ୍ୱାରା ୧୯୬୨ ମସିହାରେ ପ୍ରକାଶିତ 'ବ୍ଲ୍ୟାକ ମୁସ୍‌ଲିମସ୍ ଏ ସର୍ଚ୍ଚ ଫର ଆଇଡେଣ୍ଟିଟି ଇନ୍ ଆମେରିକା' ପୁସ୍ତକ ଦ୍ରଷ୍ଟବ୍ୟ । ବହୁଳବାଦ ଓ ସ୍ୱାଙ୍ଗୀକରଣ ସମ୍ବନ୍ଧରେ ଅଧୁନାତନ ଆଲୋଚନା ନିମନ୍ତେ ନାଥାନ ଗ୍ଲେଜର ଓ ଡେନିଏଲ ମଇନିହାନଙ୍କ ଦ୍ୱାରା ଲିଖିତ ଓ ହାର୍ଭାର୍ଡ ଇଉନିଭରସିଟି ପ୍ରେସ ଦ୍ୱାରା ୧୯୬୩ ମସିହାରେ ପ୍ରକାଶିତ 'ବିୟଣ୍ଡ ଦ ମେଲ୍‌ଟିଂ ପଟ୍, ଦ ନିଗ୍ରୋସ୍, ପିଉରିଟୋ ରିକାନସ୍, ଇଣ୍ଡିୟାନସ୍ ଆଣ୍ଡ ଆଇରିସ୍ ଅଫ୍ ନିୟୋର୍କସିଟି' ପୁସ୍ତକ ; ମିଲଟନ ଏମ ଗର୍ଡନଙ୍କ ଲିଖିତ ଓ ନିଉଜର୍ସିସ୍ଥିତ ଅକ୍ସଫୋର୍ଡ ଇଉନିଭରସିଟି ପ୍ରେସ ଦ୍ୱାରା ୧୯୬୪ ମସିହାରେ ପ୍ରକାଶିତ 'ଏସିମିଲେସନ୍ ଇନ୍ ଆମେରିକାନ ସୋସାଇଟି'; ଏବଂ ରବିନ୍ ଏମ, ଉଇଲିଅମସଙ୍କ ଦ୍ୱାରା ଲିଖିତ ଓ ଇଙ୍ଗଲଉଡ କ୍ଲୀଫର ପେଣ୍ଟିସହଲ୍ କମ୍ପାନୀ ଦ୍ୱାରା ୧୯୬୪ ମସିହାରେ ପ୍ରକାଶିତ 'ଷ୍ଟ୍ରେଞ୍ଜାରସ୍ ନେକ୍ସଟ୍ ଡୋର' ପୁସ୍ତକ ଦ୍ରଷ୍ଟବ୍ୟ ।

[୧୩] ରିଚାର୍ଡ ଷ୍ଟେରମର ହଣ୍ଟଙ୍କ ଦ୍ୱାରା ଲିଖିତ ଓ ୧୯୫୯ ମସିହାରେ ପ୍ରକାଶିତ 'ମାଇନରିଟିସ୍, ଇଉରୋପିୟାନ୍ ଆଣ୍ଡ ଆମେରିକାନ୍' ପୁସ୍ତକର ପୃ୧୭୧ଷ୍ଟା ଦେଖ ।

ଜନୀତ ରାଜନୈତିକ ଦୃଷ୍ଟିରୁ ପରାଧୀନ ହୋଇ ରହିଅଛନ୍ତି, ସେହିମାନେ ହେଉଛନ୍ତି ଇଉରୋପର ସଂଖ୍ୟାଲଘୁ ସମ୍ପ୍ରଦାୟ [୧୩] ।

ଏପ୍ରକାର ସମ୍ପ୍ରଦାୟଗୁଡ଼ିକ ଅତି ଅଳ୍ପ ପରିମାଣରେ ସ୍ୱାଙ୍ଗୀକରଣବାଧୀ ଅଟନ୍ତି । ସେମାନେ ପ୍ରଧାନତଃ ବହୁଳବାଦର ସମର୍ଥକ ଓ ଅନେକ ସମୟରେ ପୃଥକ୍‌କରଣର ପକ୍ଷପାତୀ । ଏହିଭଳି ସମ୍ପ୍ରଦାୟମାନଙ୍କୁ ଲକ୍ଷ୍ୟକରି ଜାତିସଂଘର ସଂଖ୍ୟାଲଘୁ ସମ୍ପ୍ରଦାୟମାନଙ୍କର ନିବାରଣ ଓ ସୁରକ୍ଷା ନିମନ୍ତେ ଗଠିତ ସବ୍‌କମିଶନ ଏକ ସଂଜ୍ଞା ଦେଇଅଛନ୍ତି ।

“ଲୋକସଂଖ୍ୟା ମଧ୍ୟରେ ଯେଉଁ ପ୍ରତିପତ୍ତିହୀନ ସମ୍ପ୍ରଦାୟଗୁଡ଼ିକର ସୁଦୃଢ଼ ଜାତିଗତ, ଧର୍ମଗତ ଓ ଭାଷାଗତ ଐତିହ୍ୟ ବା ବିଶେଷତ୍ୱ ଜନସଂଖ୍ୟାର ଅନ୍ୟମାନଙ୍କ ଠାରୁ ସମ୍ପୂର୍ଣ୍ଣ ପୃଥକ୍” [୧୪] ସେମାନେ ସଂଖ୍ୟାଲଘୁ ସମ୍ପ୍ରଦାୟ ।

କାନାଡ଼ାବାସୀ ଫରାସି ଓ ଆମେରିକାବାସୀ ନିଗ୍ରୋମାନଙ୍କ ମଧ୍ୟରେ ସାଦୃଶ୍ୟ ଓ ବୈସାଦୃଶ୍ୟ ଦେଖାଇବାକୁ ଯାଇ ହିଉଏଜ ସଂଖ୍ୟାଲଘୁ ସମ୍ପ୍ରଦାୟ-ମାନଙ୍କର ବିଭିନ୍ନ ପ୍ରକାର ଭେଦର ଗୁରୁତ୍ୱ ଉତ୍ତମରୂପେ ପ୍ରଦର୍ଶନ କରିଅଛନ୍ତି ।

ଏହିଦୁଇ ସଂଖ୍ୟାଲଘୁ ସମ୍ପ୍ରଦାୟ ମଧ୍ୟରେ ସାଦୃଶ୍ୟ ହେଲା ଉଭୟେ ଗ୍ରାମ୍ୟା-ଞ୍ଚଳରୁ ସହରାଞ୍ଚଳକୁ ଆସି ଅଛନ୍ତି ଏବଂ ଏହା'ଫଳରେ ସେମାନଙ୍କର ଅଧିକ ଅସୁବିଧା ହୋଇଅଛି ବୋଲି ସେମାନେ ମନେ କରନ୍ତି । ...... । କିନ୍ତୁ ଉଭୟେ ପ୍ରତିକାରର ପନ୍ଥା ଭିନ୍ନ ବୋଲି ଭାବନ୍ତି । ଆମେରିକାର ନିଗ୍ରୋମାନେ ଗୋଟିଏ ନିର୍ଦ୍ଦିଷ୍ଟ ସମ୍ପ୍ରଦାୟଭାବରେ ଅଦୃଶ୍ୟ ହୋଇଯିବାକୁ ଚାହାନ୍ତି । ସେମାନେ ଗୋଟିଏ ସମ୍ପ୍ରଦାୟରୂପେ ଲୁପ୍ତ ହେବାକୁ ଇଚ୍ଛା କରୁଥିଲେହେଁ, ପ୍ରତ୍ୟେକେ ମନୁଷ୍ୟଭାବରେ ନିଜର ଅସ୍ତିତ୍ୱ ଦାବୀ କରନ୍ତି । ...... । ଅପର ପକ୍ଷରେ କାନାଡ଼ାବାସୀ ଫରାସୀମାନେ ବ୍ୟକ୍ତିହିସାବରେ ନିଜର ଅସ୍ତିତ୍ୱ ରକ୍ଷା କରିବାକୁ ଚାହାନ୍ତି ନାହିଁ । ବ୍ୟକ୍ତି ହିସାବରେ ସେମାନଙ୍କର ସମସ୍ୟା ଯାହା, ଅନ୍ୟ କାନାଡ଼ାବାସୀମାନଙ୍କର ସମସ୍ୟା ମଧ୍ୟ ତାହା । କିନ୍ତୁ ସେମାନେ ନିଜର ପୂର୍ଣ୍ଣ ସାମାଜିକ, ଅର୍ଥନୈତିକ ଓ ରାଜନୈତିକ ଅଧିକାର ସହିତ ଏକ ସମ୍ପ୍ରଦାୟଭାବରେ ରହିବାକୁ ଇଚ୍ଛା କରନ୍ତି [୧୫] ।

---

[୧୪] ନିଉୟର୍କର ଇଉନାଇଟେଡ ନେଶନସର ପବ୍ଲିକ ଇନଫର୍ମେସନ ଡିପାର୍ଟମେଣ୍ଟ ଦ୍ୱାରା ୧୯୫୨ ମସିହାରେ ପ୍ରକାଶିତ ‘ଇଅରବୁକ୍ ଅନ୍ ହିଉମ୍ୟାନ ରାଇଟସ ଫର୍ ୧୯୫୦’ ପୁସ୍ତକର ପୃ୪୯୦ସ୍ଥା ଦେଖ ।

[୧୫] ୧୯୬୩ ମସିହାର ଡିସେମ୍ବର ସଂଖ୍ୟାରେ ‘ଆମେରିକାନ ସୋସିଓଲୋଜିକ୍ୟାଲ ରିଭିଉ’ ପତ୍ରିକାର ପୃ୮୮୩ସ୍ଥାରେ ପ୍ରକାଶିତ ଏଭେରେଟ ସି. ହିଉଏଜଙ୍କର ‘ରେସ ରିଲେସନସ ଇନ ଦ ସୋସିଓଲୋଜିକ୍ୟାଲ ଇମାଜିନେସନ୍’ ପ୍ରବନ୍ଧ ଦେଖ ।

ସଂଖ୍ୟାଲଘୁ ସମ୍ପ୍ରଦାୟ ବିଷୟ ଆଲୋଚନା କଲାବେଳେ ବିଭିନ୍ନ ପ୍ରକାରର ସଂଖ୍ୟାଲଘୁ ସମ୍ପ୍ରଦାୟ ମଧ୍ୟରେ ଯେଉଁ ସବୁ ପାର୍ଥକ୍ୟ ଅଛି ସେଥିପ୍ରତି ଦୃଷ୍ଟି ରଖିବା ବିଶେଷ ପ୍ରୟୋଜନ । ପୁଣି ସଂଖ୍ୟାଲଘୁ ସମ୍ପ୍ରଦାୟମାନଙ୍କର ବିଭାବ (ପ୍ରକାରଭେଦ) ମଧ୍ୟ ସ୍ଥିର ନଥାଏ । ପରିବର୍ତ୍ତନ ପ୍ରତି ଦୃଷ୍ଟି ଦେବା ଆମ୍ଭମାନଙ୍କ ପକ୍ଷରେ ଉଚିତ । ସଂଖ୍ୟାଲଘୁ ସମ୍ପ୍ରଦାୟମାନଙ୍କ ପକ୍ଷରେ ଶ୍ରେଷ୍ଠପନ୍ଥା କଅଣ, ସେ ବିଷୟରେ ସେମାନଙ୍କ ମଧ୍ୟରେ ମତଭେଦ ପରିଲକ୍ଷିତ ହୁଏ । ତେଣୁ ପ୍ରତ୍ୟେକ ସଂଖ୍ୟାଲଘୁ ସମ୍ପ୍ରଦାୟକୁ ଠିକ୍ କୌଣସି ଗୋଟିଏ ଶ୍ରେଣୀର ଅନ୍ତର୍ଗତ କରିଯାଇ ପାରିବ ବୋଲି ମନେ କରିବା ଉଚିତ ନୁହେଁ । ଶ୍ରେଣୀ ନିର୍ଦ୍ଧାରଣ କଲାବେଳେ ଆମକୁ ସେହି ସମ୍ପ୍ରଦାୟର କେତେକ ବିଶେଷଗୁଣ ଲକ୍ଷ୍ୟ କରିବାକୁ ହେବ ।

## ଭେଦଭାବକୁ ସ୍ଥାୟୀ ରଖିବାର ଶକ୍ତି

ସଂଖ୍ୟାଲଘୁ ସମ୍ପ୍ରଦାୟର ସୃଷ୍ଟି କପରି ହେଲା, ଏ ପ୍ରଶ୍ନଠାରୁ ସଂଖ୍ୟାଲଘୁ ସମ୍ପ୍ରଦାୟ କପରି ତିଷ୍ଠି ରହିଛି, ଏ ପ୍ରଶ୍ନ ସମ୍ପୂର୍ଣ୍ଣ ଭିନ୍ନ । ଶହେ ବର୍ଷ ତଳେ ଯେଉଁ ବୀଜଟି ଅଙ୍କୁରିତ ହୋଇଥିଲା, ଜୀବନରକ୍ଷା ପାଇଁ ସେ ବର୍ତ୍ତମାନ ମଧ୍ୟ ତାର ପାର୍ଶ୍ୱବର୍ତ୍ତୀ ଜଳ, ବାୟୁ ଓ ମୃତ୍ତିକା ଉପରେ ନିର୍ଭର କରି ରହିଛି । ଥରେ ଭେଦଭାବ ଜନ୍ମିଲା ପରେ ତାକୁ କେଉଁ କେଉଁ ଶକ୍ତି ବଞ୍ଚାଇ ରଖନ୍ତି ? ଏ ପ୍ରଶ୍ନର ଉତ୍ତର ବଡ଼ ଜଟିଳ ; କାରଣ ଏଠାରେ ଆମ୍ଭମାନଙ୍କୁ ଏପରି କେତେଏ ଶକ୍ତିର ବିଚାର କରିବାକୁ ପଡ଼ିବ ଯେ ସେଗୁଡ଼ିକ ପରସ୍ପର ଉପରେ କ୍ରିୟା ପ୍ରତିକ୍ରିୟା ପ୍ରକାଶ କରି ଗୋଟିଏ ପଦ୍ଧତିରେ ପରିଣତ ହୋଇ ଯାଇଅଛନ୍ତି । ଏହି ଶକ୍ତିଗୁଡ଼ିକ ମଧ୍ୟରୁ କେତେକ ପୂର୍ବବର୍ତ୍ତୀ ହୋଇ ପାରିଥାନ୍ତି ; ମାତ୍ର ଥରେ ସେଗୁଡ଼ିକ ଉକ୍ତ ପଦ୍ଧତିର ଏକ ଅଙ୍ଗରେ ପରିଣତ ହେଲା ପରେ ସେଗୁଡ଼ିକୁ ପରସ୍ପର ନିର୍ଭରଶୀଳ ଏକ ଜଟିଳ ପଦ୍ଧତିର ଅଂଶ ବୋଲି ବିଚାର କରିବାକୁ ହେବ ।

ବୋଧହୁଏ, ଉପର୍ଯ୍ୟୁକ୍ତ ତଥ୍ୟଟିକୁ କେତେକ ଐତିହାସିକ ଘଟନାର ଉଦାହରଣ ଦ୍ୱାରା ସୁସ୍ପଷ୍ଟ କରିଯାଇ ପାରିବ । ଦୁଇଟି ସମ୍ପ୍ରଦାୟ ମଧ୍ୟରେ ନିମ୍ନଲିଖିତ କାରଣରୁ ସଙ୍ଘର୍ଷ ଘଟିପାରେ । (୧) ସାମରିକ ବିଜୟ ; ଯଥା— ଇଉରୋପୀୟ ଓ ଆମେରିକାର ଇଣ୍ଡିଆନମାନଙ୍କ ମଧ୍ୟରେ ଯୁଦ୍ଧ ; (୨) ଗୋଟିଏ ସମ୍ପ୍ରଦାୟ ଦ୍ୱାରା ଅନ୍ୟ ସମ୍ପ୍ରଦାୟର ଅଞ୍ଚଳରେ ପ୍ରବେଶପୂର୍ବକ ବସବାସ ; ଯଥା—ମେକ୍ସିକୋର କେତେକ ଅଧିବାସୀଙ୍କର ମାର୍କିନ ଯୁକ୍ତରାଷ୍ଟ୍ରକୁ ଆଗମନ ; (୩) ଏକ ସମ୍ପ୍ରଦାୟର କେତେକ ଲୋକଙ୍କ ଦ୍ୱାରା ଅନ୍ୟ ସମ୍ପ୍ରଦାୟର କେତେକଙ୍କର ଅପହରଣ ; ଯଥା—ଆମେରିକାକୁ ଅଣାଯାଇଥିବା ଆଫ୍ରିକାବାସୀ ।

ଅଧିକାଂଶ ଉଦାହରଣରୁ ଦେଖାଯିବ ଯେ ପ୍ରତ୍ୟେକ ସମ୍ପ୍ରଦାୟ ନିଜକୁ ଅନ୍ୟ ସମ୍ପ୍ରଦାୟ ଠାରୁ ବଡ଼ ମନେ କରେ । ଏ ପ୍ରକାର ଧାରଣା ବା ବିଶ୍ୱାସକୁ ଜାତିକେନ୍ଦ୍ରିକତା କୁହାଯାଏ । ଅଧିକତର ସାମରିକ, ଅର୍ଥନୈତିକ ବା ରାଜନୈତିକ କ୍ଷମତା ହେତୁରୁ ଗୋଟିଏ ସମ୍ପ୍ରଦାୟ ଅନ୍ୟ ସମ୍ପ୍ରଦାୟ ଉପରେ ଆଧିପତ୍ୟ ବିସ୍ତାର କରେ ଓ ଏହାଦ୍ୱାରା ସେ ଅନ୍ୟ ଉପରେ ନିଜର ଶ୍ରେଷ୍ଠତ୍ୱକୁ ଏକ ବାସ୍ତବ ରୂପ ଦିଏ । କିନ୍ତୁ ଏହି ପ୍ରାରମ୍ଭିକ ସମ୍ପର୍କ ପରେ କଅଣ ଘଟେ ? ଇଉରୋପୀୟମାନେ ଆମେରିକାର ଇଣ୍ଡିୟାନମାନଙ୍କ ଉପରେ ପ୍ରାଧାନ୍ୟ ବିସ୍ତାର କରିବା ପରେ ଯାହା ଘଟିଥିଲା ତାହାର ବିଚାର କଲେ ଏହି ପ୍ରଶ୍ନର ଆଲୋଚନା ସହଜ ହୋଇ ପାରିବ । ପ୍ରାଧାନ୍ୟ ବିସ୍ତାର ଫଳରେ ଇଉରୋପୀୟମାନେ ଯଥେଷ୍ଟ ସାମରିକ ଓ ଅର୍ଥନୈତିକ ସୁଯୋଗ ଲାଭ କରି ପାରିଥିଲେ । ନିଃସନ୍ଦେହରେ କୁହାଯାଇପାରେ ଯେ ଇଣ୍ଡିଆନମାନଙ୍କୁ ଦମନ କରିବାର ଏହାହିଁ ପ୍ରଧାନ ଉଦ୍ଦେଶ୍ୟ ଥିଲା । ସେମାନଙ୍କୁ ଗୋଟାଏ ସଂଖ୍ୟାଲଘୁ ସମ୍ପ୍ରଦାୟରେ ପରିଣତ କରି ସେହିପରି ଅବସ୍ଥାରେ ଚିରକାଳ ରଖିବା ଇଉରୋପୀୟମାନଙ୍କ ପକ୍ଷରେ ଲାଭଜନକ ଥିଲା । ଏପରି କରିବା ନିତାନ୍ତ ନିର୍ବୋଧତା ଓ ଅନ୍ୟାୟ ବୋଧ ହୋଇପାରେ । ହୁଏତ କେତେକ ଇଉରୋପୀୟ ଅଧିବାସୀ ଏହାକୁ ଅନ୍ୟାୟ ମନେ କରିଥିଲେ । ସେମାନେ ବିବେକବୁଦ୍ଧିକୁ ଲୋପ କରି ଦେଇପାରି ନ ଥିଲେ ; କିନ୍ତୁ ଆସ୍ତେ ଏହାକୁ ଯୁକ୍ତିଯୁକ୍ତ ବୋଲି ପ୍ରତିପାଦନ କରି ଏହା ସେତେ ଅନ୍ୟାୟ ନୁହେଁ ବୋଲି ଦେଖାଇଲେ । ଇଣ୍ଡିଆନ ମିଥ୍ୟାବାଦୀ, ଚୋର ଓ ହତ୍ୟାକାରୀ ବର୍ବର ବୋଲି କହି ବୁଝାଇଲେ । ସମସ୍ତେ ଯେ ଏ କଥା ବିଶ୍ୱାସ କରୁଥିଲେ ତାହା ନୁହେଁ ; କିନ୍ତୁ ଏହି ଭାବ ପ୍ରତିଷ୍ଠିତ ସଂସ୍କୃତିର ଏପରି ଏକ ଅଙ୍ଗରେ ପରିଣତ ହୋଇଗଲା ଯେ ଯିଏ କେବେହେଲେ ଜଣେ ଇଣ୍ଡିଆନକୁ ଦେଖି ନଥିଲା, ସେ ମଧ୍ୟ ଭାବିନେଲା ଯେ ସବୁ ଇଣ୍ଡିଆନ ଏହିପରି ମିଥ୍ୟାବାଦୀ, ଚୋର, ହତ୍ୟାକାରୀ ବର୍ବର । ଏହି ଭାବ ଏପରି ଗତାନୁଗତିକ ହୋଇଗଲା ଯେ ଇଣ୍ଡିଆନକୁ ଏହି ଦୃଷ୍ଟିରେ ଦେଖିବା ଶିଷ୍ଟାଚାର, ସୌନ୍ଦର୍ଯ୍ୟବୋଧ ଓ ସଦାଚାରର ନୀତି ରୂପେ ସଂସ୍କୃତିର ଏକ ଅଙ୍ଗରେ ପରିଣତ ହୋଇଗଲା ଏବଂ ସମାଜର ପ୍ରତ୍ୟେକ ବ୍ୟକ୍ତି ସାମାଜିକତା ଶିକ୍ଷା କରିବାରେ ଏହି ନୀତିକୁ ଗ୍ରହଣ କରିନେଲେ ।

ବର୍ତ୍ତମାନ ଆମ୍ଭେମାନେ ଭେଦଭାବ ଓ ବିଦ୍ୱେଷର ଦୁଇଟି ମୌଳିକ କାରଣ ଦେଖିପାରିବା । ଏ ଦୁଇଟି ହେଉଛି ଅର୍ଥନୈତିକ ଓ ସାମରିକ ବିରୋଧ ଏବଂ ସାଂସ୍କୃତିକ ଆଦର୍ଶ । ଏ ଦୁଇଟି ସଙ୍ଗେ ସାଧାରଣତଃ ଆଉ ଗୋଟିଏ କାରଣ ଯୋଗ କରି ଯାଇଥାଏ । ସମାଜର କେତେକ ଲୋକଙ୍କଠାରେ ବିଦ୍ୱେଷଭାବ ଅତି ଉଗ୍ରଭାବରେ ଦେଖାଯାଏ । ସମ୍ଭବତଃ ସେମାନେ ନିଜ ଜୀବନରେ ନିଜକୁ ବ୍ୟବ-

ହାର ପାଇଥାନ୍ତି, ସେମାନଙ୍କର ଏକାନ୍ତ ଆବଶ୍ୟକୀୟ ନିରାପତ୍ତା ଓ ସ୍ନେହ ଶ୍ରଦ୍ଧା ଲାଭରୁ ବଞ୍ଚିତ ହୋଇଥାନ୍ତି ; ପିତାମାତାଙ୍କ ଅନାଦର ଓ ଉପେକ୍ଷା ବ୍ୟବହାର ହେତୁରୁ ସେମାନଙ୍କର ଆଶା ଆକାଂକ୍ଷା ନୈରାଶ୍ୟରେ ପରିଣତ ହୋଇଥାଏ ' ଏବଂ ସେମାନେ ମନେ କରିଥାନ୍ତି ଯେ ଏଭଳି ସଂସାରରେ ରହିବା ଯାହା, ବଣରେ ରହିବା ମଧ୍ୟ ତାହା । ଯେଉଁ ପୃଥିବୀ ସେମାନଙ୍କ ପ୍ରତି ଏଭଳି ନିଷ୍ଠୁର ବ୍ୟବହାର ଦେଖାଇଥାଏ, ତାହାକୁ ପ୍ରତିଘାତ କରିବାପାଇଁ ସେମାନଙ୍କ ମନରେ ଏକ ପ୍ରବଳ ପ୍ରବୃତ୍ତି ଜାଗିଉଠେ । କିନ୍ତୁ ସେମାନଙ୍କର ମଧ୍ୟ ନିରାପତ୍ତା ଆବଶ୍ୟକ । ତେଣୁ ସେମାନେ ପରିବାର ଲୋକମାନଙ୍କୁ କିମ୍ବା ନିକଟବର୍ତ୍ତୀ ଲୋକମାନଙ୍କୁ ଆକ୍ରମଣ କରନ୍ତି ନାହିଁ । କିନ୍ତୁ ସମାଜ ଯଦି ସେମାନଙ୍କ ନିକଟରେ ଗୋଟିଏ ଅପେକ୍ଷାକୃତ ଦୁର୍ବଳ ସଂଖ୍ୟାଲଘୁ ସମ୍ପ୍ରଦାୟ ଉପସ୍ଥାପିତ କରେ (ଯେଉଁ ସମ୍ପ୍ରଦାୟର ଆଗ୍ରହ ବିଶ୍ୱାସ ମତ ଓ ନିମ୍ନ-ସ୍ତରର, ଯାହା ସେମାନଙ୍କଠାରୁ ଯଥେଷ୍ଟ ପାର୍ଥକ୍ୟଥାଏ, ଓ ଯାହା ସେମାନଙ୍କଠାରୁ ଦୂରବର୍ତ୍ତୀ) ତାହା ହେଲେ ସେହି ସମ୍ପ୍ରଦାୟର ଲୋକମାନଙ୍କ ପ୍ରତି ସେମାନଙ୍କର ଆସକ୍ତି ରହେ ନାହିଁ । ସେତେବେଳେ ସେମାନେ ଏହି ସମ୍ପ୍ରଦାୟ ଉପରେ ନିଜର ଶତ୍ରୁତା ପ୍ରକାଶ କରନ୍ତି ଓ ମନେ କରନ୍ତି ଯେ ସେମାନେ ସ୍ୱାଧୀନତା ଓ ନ୍ୟାୟପାଇଁ ଉଦ୍ୟମ କରୁ ଅଛନ୍ତି । ସେମାନେ ଭାବନ୍ତି, "ସବୁଇଣ୍ଡିଆନ ଖରାପ ; ଯେଉଁ ଇଣ୍ଡି-ଆନ ମୃତ, କେବଳ ସେଇ ଜଣକ ଭଲ ।" ନିଜ ସମ୍ପ୍ରଦାୟର ଅବହେଳା ଓ ନିଷ୍ଠୁରତା ହେତୁ ଯେଉଁ ଶତ୍ରୁତାର ଉତ୍ପତ୍ତି ହୋଇଥାଏ, ତାହା ସଂଖ୍ୟାଲଘୁ ସମ୍ପ୍ର-ଦାୟର ବିରୋଧରେ କାର୍ଯ୍ୟ କରିଥାଏ ; କାରଣ ଏହି ସମ୍ପ୍ରଦାୟ ଅପେକ୍ଷାକୃତ ଦୁର୍ବଳ ଓ ବିଜାତୀୟ । ଏ ପ୍ରକାର ଘଟିଲେ ଏହାକୁ ଆମ୍ଭେମାନେ ସ୍ଥାନଚ୍ୟୁତି କହୁଁ ।

ପ୍ରଭାବଶାଳୀ ସମ୍ପ୍ରଦାୟର ଯେଉଁମାନେ ସମ୍ପୂର୍ଣ୍ଣ ନିରାପଦ ନୁହନ୍ତି, ସେମାନଙ୍କର ବ୍ୟକ୍ତିତ୍ୱରୁ ମଧ୍ୟ ଏହିଭଳି ଏକ ପରିସ୍ଥିତି ଉପୁଜି ଥାଏ । ସେମାନେ ଯାହା କରିଥାନ୍ତି ସେଥିପାଇଁ ନିଜକୁ ଦୋଷୀ ମନେ କରିପାରନ୍ତି । ଯେଉଁମାନେ ଇଣ୍ଡିଆନମାନଙ୍କର ଜମି ଛଡ଼ାଇ ନେବାରେ ଲାଗିଥିଲେ, ସେମାନେ ଲକ୍ଷ ଲକ୍ଷ ଇଣ୍ଡିଆନଙ୍କୁ ହତ୍ୟା କରିଥିଲେ ଏବଂ ଅନେକ ଲୋକ ଏଥିପାଇଁ ନିଜକୁ ଅପରାଧୀ ମନେ କରିଥିଲେ । ସେମାନେ ଇଣ୍ଡିଆନମାନଙ୍କୁ ତଡ଼ି ଦେଇ ଯେଉଁ ଲାଭ ପାଇଥିଲେ ଏବଂ ସେମାନେ ଯେଉଁ ଗତାନୁଗତିକ ଧାରଣା ଦେଇ ନିଜକୁ ସାନ୍ତ୍ୱନା ଦେଉଥିଲେ ତାହା ଫଳରେ ସେମାନେ ନିଜର ଦୋଷକୁ ପୂର୍ଣ୍ଣମାତ୍ରାରେ ଦେଖିପାରି ନଥିଲେ । ଫଳତଃ ଏହି ଦୋଷ ଅନ୍ୟ ଉପରେ ପ୍ରକ୍ଷେପିତ ହେଲା । ଏଥିପାଇଁ 'ମୁଁ ଦୋଷୀ ନୁହେଁ କି ସେ ଦୋଷୀ ନୁହେଁ' ଏହିପରି ଏକ ଭାବ ଜନ୍ମିଲା । ମନୁଷ୍ୟ ମନର ଏହା ଏକ ବିଚିତ୍ର ଅବସ୍ଥା । ଅସ୍ପଷ୍ଟ ଭାବରେ ଅନୁଭୂତ ଅପରାଧ

ସାଧାରଣତଃ ଯେଉଁମାନଙ୍କ ଉପରେ ପ୍ରକ୍ଷେପିତ ହୁଏ, ସେମାନେ ଅନ୍ୟାୟ ବ୍ୟବହାର ପାଇଥିବା ଲୋକ ; ଏହି ବ୍ୟବହାର ହେତୁରୁ ସେମାନେ ନିଜକୁ ଦୋଷୀ ମନେ କରିଥାନ୍ତି । ଏହା ଗୋଟିଏ ବିରାଟ ଛଳନା ବୋଲି ମନେହୁଏ ; ଗୋଟାଏ ସ୍ପଷ୍ଟ ମିଥ୍ୟା ଘଟଣା ସତ୍ୟ ହୋଇ ନଥିଲେ ଏପରି ଗୋଟାଏ କଥା କହିବାକୁ କେହି ଚିନ୍ତା ସୁଦ୍ଧା କରନ୍ତା ନାହିଁ । ମାତ୍ର ଏଠାରେ ସତ୍ୟର ବିପର୍ଯ୍ୟୟ ଘଟେ । ଏପରି କ୍ଷେତ୍ରରେ ଜଣେ ହୁଏ ତ ମନେ କରିବ ଯେ ଇଣ୍ଡିଆନ ଶ୍ୱେତାଙ୍ଗର ଜମି ଉପରେ ଆକ୍ରମଣ କରୁଥିଲା, ତାକୁ ବିତାଡ଼ିତ କରୁଥିଲା ; ତାର ଲୋକ ସଂଖ୍ୟାକୁ ଏକତୃତୀୟାଂଶରେ ପରିଣତ କରିଥିଲା, ନିଜ ପକ୍ଷରୁ ସନ୍ଧିପତ୍ର ଲଙ୍ଘନ କରିଥିଲା ଏବଂ ଅସ୍ତ୍ରଶସ୍ତ୍ର ବଳରେ ଅନିଶ୍ଚିତ ବିଜୟ ଲାଭ କରିଥିଲା । ଆମ୍ଭେମାନେ ସଂଖ୍ୟାଲଘୁ ସମ୍ପ୍ରଦାୟମାନଙ୍କର ଯେଉଁ ଚିତ୍ର ଦେଖୁ ତାହାର ଅଧିକାଂଶ ଏହି ପ୍ରକାରର ପ୍ରକ୍ଷେପିତ ଚିତ୍ର । ନିଗ୍ରୋ-ମାନଙ୍କ ସମ୍ବନ୍ଧରେ ଶ୍ୱେତାଙ୍ଗଙ୍କ ମନରେ କି ଭଳି ଗତାନୁଗତିକ ଧାରଣା ଥାଏ, ତାହା ଚିନ୍ତା କଲେ ଆମେ ଗୋଟିଏ ଯଥାର୍ଥ ଉଦାହରଣ ପାଇ ପାରିବା । ନିଗ୍ରୋ ହେଉଛି ଆକ୍ରମଣଶୀଳ ; ଯୌନ ସଂସର୍ଗରେ ତାର ସଂଯମ ନାହିଁ ; ସେ ବିପଜ୍ଜନକ ; ତାକୁ ବିଶ୍ୱାସ କରି ହେବ ନାହିଁ । ଯଦି କେହି ନିରପେକ୍ଷ ଭାବରେ ଇତିହାସ ଅଧ୍ୟୟନ କରି ପ୍ରଶ୍ନ କରେ—କିଏ କାହାର ଜମି ଆକ୍ରମଣ କରି ଲକ୍ଷ ଲକ୍ଷ ଲୋକଙ୍କୁ ବନ୍ଦୀ କରିଥିଲା ? କିଏ ସେମାନଙ୍କୁ ନିଷ୍ଠୁର ଦାସତ୍ୱ ବନ୍ଧନରେ ବାନ୍ଧି ରଖିଥିଲା ? କିଏ ସେମାନଙ୍କ ନାରୀ ଜାତିର ସତୀତ୍ୱ ହରଣ କରିଥିଲା ? (ଆମେରିକାର ନିଗ୍ରୋଙ୍କ ୮୦ ଜଣ ନିଗ୍ରୋଙ୍କର ପୂର୍ବ ପୁରୁଷ ହେଉଛନ୍ତି, ଶ୍ୱେତାଙ୍ଗ) । କିଏ ସେମାନଙ୍କୁ କମ୍ପାନୀ ଷ୍ଟୋରମାନଙ୍କରେ ପ୍ରତାରଣା କରିଥିଲା ? କିଏ ସେମାନଙ୍କଠାରୁ ଅତିରିକ୍ତ ଖଜଣା ଆଦାୟ କରି ପ୍ରତାରଣା କରିଥିଲା ? ସ୍ୱାଭାବିକ ଭାବରେ ଏ ସବୁର ଉତ୍ତର ହେଉଛି ଆମ୍ଭେମାନେ—ଶ୍ୱେତାଙ୍ଗମାନେ । ନିଗ୍ରୋମାନଙ୍କ ସମ୍ବନ୍ଧରେ ଶ୍ୱେତାଙ୍ଗର ଯେଉଁ ଗତାନୁଗତିକ ଧାରଣା ତାହା ପଛରେ ନିଜର ଅନେକ ଅପରାଧର ଛଦ୍ମରୂପ ଲୁକ୍କାୟିତ ଆକାରରେ ରହିଅଛି [୧୬] ।

---

[୧୬] ପ୍ରେଜୁଡ଼ିସ୍ ବା ବିଦ୍ୱେଷ ଓ ଭେଦଭାବକୁ ବ୍ୟକ୍ତିତ୍ୱ ଦୃଷ୍ଟିରୁ ବିଚାର କରିବା ସମ୍ବନ୍ଧରେ ଅନେକ ପୁସ୍ତକ ଲେଖା ଯାଇଅଛି । ଟି. ଡବ୍ଲିଉ ଆଡ଼ର୍ଣ୍ଣୋଙ୍କ ଲିଖିତ ଓ ୧୯୫୦ ମସିହାରେ ହାର୍ପର ଏଣ୍ଡ ବ୍ରଦର୍ସଙ୍କ ଦ୍ୱାରା ପ୍ରକାଶିତ 'ଦି ଅଥରିଟେରିୟାନ୍ ପାର୍ସନାଲିଟି' ଏ ସମ୍ବନ୍ଧରେ ଗୋଟିଏ ମୌଳିକ ରଚନା । ଏହି ପୁସ୍ତକର ନଅଟିକୁ ନାଗ୍ରୀ ଟିକାରେ ସମ୍ବୋଧନ ମୂଳକ (ରେଟିଂ କ୍ଲାସିଫିକେସନ୍ସ) ବିଚାର କରିବାକୁ ହେବ । ୧୯୫୪ ମସିହାରେ ନ୍ୟୁୟର୍କର ହେବ୍ରୋ ଓ ଗେସଦ୍ୱାରା ପ୍ରକାଶିତ ଗର୍ଡନ୍ ଏଲ୍ପୋର୍ଟଙ୍କ ଓ ସେଷ

. ଏହିରୂପେ ଆମ୍ଭେମାନେ ଦେଖି ପାରିବା ଯେ ଆମର ଅର୍ଥନୈତିକ ବିରୋଧ, କୃଷ୍ଟିଗତ ଶିକ୍ଷା, ଓ କେତେକ ଜଟିଳ ବ୍ୟକ୍ତିତ୍ୱମୂଳକ ଧାରଣା ସଂଖ୍ୟାଗୁରୁ ସମ୍ପ୍ରଦାୟର ଲୋକଙ୍କ ଚିନ୍ତା ଓ ଅନୁଭୂତି ମଧ୍ୟରେ ପରସ୍ପର ଉପରେ କାର୍ଯ୍ୟ କରୁଅଛନ୍ତି । କିନ୍ତୁ ଏତିକରେ ଶେଷ ହେଉନାହିଁ । ଏ ସବୁକୁ ସଂଖ୍ୟାଲଘୁ ସମ୍ପ୍ରଦାୟର ଲୋକେ ନୀରବରେ ସହ୍ୟ କରିବାର ପାତ୍ର ନୁହନ୍ତି । ସେମାନେ ମଧ୍ୟ ଅନେକ ସମୟରେ କୌଣସି ପ୍ରକାରେ ପ୍ରତିରୋଧ କହନ୍ତି । ଏହା ଫଳରେ କ୍ଷମତାଶାଳୀ ଲୋକଙ୍କ ମନରେ ଥିବା ଶଙ୍କୁତା ଓ 'ନ୍ୟାୟ' ବୋଧ ବୃଦ୍ଧି ପାଏ । ଗୋଟିଏ ଗୁରୁତ୍ୱପୂର୍ଣ୍ଣ ବିଷୟ ହେଉଛି ଯେ କେତେକ ଶକ୍ତିଶାଳୀ ଗ୍ରୁପ ସଂଖ୍ୟାଲଘୁ ସମ୍ପ୍ରଦାୟର ଲୋକଙ୍କୁ ଏପରି କରିଦିଏ ଯେ, ସେମାନଙ୍କ ସମ୍ବନ୍ଧରେ ଗତାନୁଗତିକ ଧାରଣା ଯାହା ହୋଇଥାଏ, ସେମାନେ ଠିକ୍ ସେହିପରି ହୋଇଯାନ୍ତି । ଯଦି କୌଣସି ସମ୍ପ୍ରଦାୟକୁ ହୀନ ବୋଲି ମନେ କରି ତାହାପାଇଁ ଖରାପ ସ୍କୁଲ୍ ଓ ଖରାପ କାର୍ଯ୍ୟ ଦିଆଯାଏ ; ତାର ଆତ୍ମ-ସମ୍ମାନ ଜାଗ୍ରତ କରିବାର ସୁବିଧା ଦିଆ ନଯାଏ ; ଉନ୍ନତିର କୌଣସି ସୁଯୋଗ ଦିଆ ନ ଯାଏ ; ତେବେ ତାହା ସମ୍ବନ୍ଧରେ ଥିବା ଧାରଣା ଠିକ୍ ବୋଲି ଶୀଘ୍ର ପ୍ରମାଣିତ ହୋଇଯାଏ ; କାରଣ ଏଥିପାଇଁ କ୍ଷେତ୍ର ପ୍ରସ୍ତୁତ ହୋଇ ସାରିଥାଏ । ଅନ୍ୟମାନେ ଆମ୍ଭମାନଙ୍କ ପ୍ରତି ଯେଉଁ ପ୍ରକାର ଭାବ ପ୍ରକାଶ କରନ୍ତି, ସେଥିରୁ ଆମ୍ଭ-ମାନଙ୍କର ଆତ୍ମବୋଧ ଜାଗ୍ରତ ହୁଏ । ମି: କୁଲିଙ୍କ ପ୍ରସିଦ୍ଧ ଉକ୍ତି ଅନୁସାରେ "ଆମର ମାନସିକ କଳ୍ପନା ହେଉଛି 'ଦର୍ପଣରେ ପ୍ରକାଶିତ ମୂର୍ତ୍ତି' " ଆମେ କିଏ ଓ କଅଣ, ଏହା ଜାଣିବାର ଏକମାତ୍ର ଉପାୟ ହେଉଛି, ଅନ୍ୟ ମାନେ ଆମ ବିଷୟରେ କଅଣ କହନ୍ତି ଓ ଆମ ପ୍ରତି କଅଣ କରନ୍ତି ତାହା ଚିନ୍ତା କରିବା । ଏହାଛଡ଼ା ଅନ୍ୟ

---

ଜହୋଦାଙ୍କ ଦ୍ୱାରା ସମ୍ପାଦିତ 'ଷ୍ଟାଡିସ୍ ଇନ୍ ଦ ସ୍କୋପ୍ ଏଣ୍ଡ ମେଥଡ୍ ଅଫ୍ 'ଦ ଅଥରେଟିରେୟାନ୍ ପାର୍ଶନ୍ୟାଲିଟି' ; ଉଗ୍ରର୍ଡ ନିଷ୍ଟି ଓ ପେଗି କୁକ୍‌ଙ୍କ ଦ୍ୱାରା ଲିଖିତ ଓ 'ଜାରନାଲ ଅଫ୍ ସାଇକୋଲଜି' ପତ୍ରିକାର ୧୯୫୧ମସିହାର ଅପ୍ରେଲ ସଂଖ୍ୟାର ପୃ୧୭୧-୧୭୭ସ୍ଥାରେ ପ୍ରକାଶିତ 'ଏ ଗାଇଡ୍ ଟୁ ପବ୍ଲିଶାଡ୍ ଲିଟରେଚର୍ ରିଲେଟିଂ ଟୁ ଦ ଅଥରେଟେରୟାନ୍ ପାଣନ୍ୟାଲିଟି ଥ୍ରୁ ୧୯୫୬ ; ମିଲ୍‌ଟନ ରକିଚଙ୍କ ଲିଖିତ ଓ ୧୯୬୦ ମସିହାରେ ନିଉୟର୍କର ବେସିକ ବୁକ୍‌ସ କମ୍ପାନୀ ଦ୍ୱାରା ପ୍ରକାଶିତ 'ଦ ଓପେନ୍ ଏଣ୍ଡ ଦ କ୍ଲୋସେଡ୍ ମାଇଣ୍ଡ୍ ; ଏବଂ ଜର୍ଜ ଇ ସିମ୍ପସନ ଓ ଜେ. ମିଲ୍‌ଟନ ୟିଙ୍ଗରଙ୍କ ଦ୍ୱାରା ଲିଖିତ ଓ ୧୯୬୫ ମସିହାରେ ହାର୍ପରଏଣ୍ଡ ରୋ'ଙ୍କ ଦ୍ୱାରା ପ୍ରକାଶିତ 'ରେସିୟାଲ୍ ଏଣ୍ଡ କଲ୍‌ଚୁ-ରାଲ ମାଇନରିଟିସ୍' (ଓୟ ସଂସ୍କରଣ) ପୁସ୍ତକମାନ ଦେଖ ।

ଉପାୟ ନାହିଁ । ଯେବେ କୌଣସି ପିଲା ତାହାର ଚତୁଃପାର୍ଶ୍ୱରେ ଥିବା ଦର୍ପଣ ମାନଙ୍କର ପ୍ରତିବିମ୍ବରେ ଦେଖେ ଯେ ସେ ନୀଚ, ସେ ଅଧମ, ସେ ଅଯୋଗ୍ୟ ତେବେ ସେ ମନ ମଧ୍ୟରେ ନିଜେ ପ୍ରକୃତରେ ସେହିପରି ବୋଲି ଧାରଣା କରିବ । କେବଳ ଯଦି ସ୍ନେହମୟୀ ଜନନୀ, ଶିକ୍ଷକ, ବନ୍ଧୁ ବା ନିଜ ସମ୍ପ୍ରଦାୟର କୌଣସି କୃତକାର୍ଯ୍ୟ ବ୍ୟକ୍ତି (ଯାହା ସଙ୍ଗେ ତାର ଆତ୍ମୀୟତା ଥିବ) ତାହା ବିଷୟରେ ଭିନ୍ନ ଚିତ୍ର ଦିଅନ୍ତି ତେବେ ତାର ଆତ୍ମ-ସମ୍ମାନର ଭିତ୍ତି ପ୍ରତିଷ୍ଠିତ ହୋଇ ପାରିବ ।

ଅନେକ ଇଣ୍ଡିଆନ ବାସ୍ତବରେ ନିର୍ଦ୍ଦୟ, ଅନୁଦ୍ୟମୀ ଓ ଅବିଶ୍ୱାସୀ ହୋଇ ଯାଇଥିଲେ । ଅନେକ ନିଗ୍ରୋ ଆଳସ୍ୟପରାୟଣ, ଅଶିକ୍ଷିତ ଓ ଦାୟିତ୍ୱହୀନ ଅଟନ୍ତି । କୌଣସି ସଂଖ୍ୟାଲଘୁ ସମ୍ପ୍ରଦାୟର ଲୋକଙ୍କ ପକ୍ଷରେ କେତେକ ପରିମାଣରେ ଉଦ୍ଦେଶ୍ୟହୀନତା, ଆତ୍ମଗ୍ଲାନି, ସାମାଜିକ ହୀନମ୍ମନ୍ୟତା ଶିକ୍ଷା କରିବାର ଦୃଷ୍ଟାନ୍ତ ବିରଳ ନୁହେଁ । ଏଣୁଥିରେ ଭେଦଭାବ ଜାତ ହେଲେ, ଏହା ନିଜର କାର୍ଯ୍ୟକୁ ଗତାନୁଗତିକତା ଓ ନିର୍ବାଚନ ମୂଳକ ଅନୁଭୂତି ସାହାଯ୍ୟରେ ଯୁକ୍ତିଯୁକ୍ତ ବୋଲି ପ୍ରତିପାଦନ କରି ଶେଷରେ ଗୋଟିଏ ପଦ୍ଧତିରୂପେ ନିଜର ଅସ୍ତିତ୍ୱକୁ ବଜାୟ ରଖେ । ଗୋଟିଏ ଭବିଷ୍ୟଦ୍‌ବାଣୀ କପରି ସ୍ୱତଃ ସଫଳ ହୋଇ ପାରେ ଏହା ତାହାର ଉତ୍କୃଷ୍ଟ ଉଦାହରଣ । ଏହାକୁ ଗୋଟିଏ ଅଖଣ୍ଡ ବୃତ୍ତ କୁହାଯାଇ ପାରେ ; ଏଥିରୁ ମୁକ୍ତିର ଉପାୟ ନାହିଁ [୧୭] । ମୁଁ ଯଦି କହେଁ, "କାଲି ବର୍ଷା ହେବ" ତେବେ ମୋର ଏହି ଭବିଷ୍ୟଦ୍‌ବାଣୀର ପ୍ରକୃତ ଘଟଣା ସହିତ କିଛି ସମ୍ବନ୍ଧ ନାହିଁ । କିନ୍ତୁ ମୁଁ ଯଦି କହେଁ, "ମୁଁ କାଲି ପରୀକ୍ଷା ଦେବି ନାହିଁ" ତେବେ ମୁଁ କେତେ ଉପାୟରେ ଏହାକୁ ଯୁକ୍ତିଯୁକ୍ତ ବୋଲି ପ୍ରତିପାଦନ କରିପାରେଁ ଓ ତଦନୁସାରେ କାର୍ଯ୍ୟ କରିପାରେଁ ।

---

[୧୭] ଭବିଷ୍ୟଦ୍‌ବାଣୀର ସ୍ୱତଃ ସଫଳତା ବିଷୟରେ ନିମ୍ନଲିଖିତ ପୁସ୍ତକଗୁଡ଼ିକ ଦ୍ରଷ୍ଟବ୍ୟ ।
ଗୁନାର ମିର୍‌ଡାଲଙ୍କ ଲିଖିତ ଓ ହାର୍ପର ଏଣ୍ଡ ବ୍ରୋ"ଙ୍କ ଦ୍ୱାରା ୧୯୪୪ ମସିହାରେ ପ୍ରକାଶିତ 'ଆନ୍ ଆମେରିକାନ୍ ଡାଇଲେମା' ପୁସ୍ତକର ପୃ ୭୫-୭୮ ଦ୍ରଷ୍ଟ ; ଆର. ଏମ୍. ମାକ୍‌ଆଇଭରଙ୍କ ଦ୍ୱାରା ଲିଖିତ ଓ ନିଉୟର୍କର ମାକମିଲାନ କମ୍ପାନୀଙ୍କ ଦ୍ୱାରା ୧୯୪୮ ମସିହାରେ ପ୍ରକାଶିତ 'ଦି ମୋର ପର୍‌ଫେକ୍ଟ ୟୁନିଅନ' ପୁସ୍ତକର ପୃ ୫୨-୮୧ ଦ୍ରଷ୍ଟ ; ଓ ରବର୍ଟ କେ. ମର୍ଟନଙ୍କ ଦ୍ୱାରା ଲିଖିତ ଓ ନିଉୟର୍କର ଫ୍ରି ପ୍ରେସ ଅଫ ଗ୍ଲେଙ୍କୋଙ୍କ ଦ୍ୱାରା ୧୯୫୭ ମସିହାରେ ପ୍ରକାଶିତ 'ସୋସିଆଲ ଥିଓରି ଆଣ୍ଡ ସୋସିଆଲ ଷ୍ଟ୍ରକ୍‌ଚର ପୁସ୍ତକର ପୃ ୪୨୧—୪୩୬ ଦ୍ରଷ୍ଟ ।

—ମୁଁ ପଢ଼ିବି କାହିଁକି ? ମୁଁ ତ ପରୀକ୍ଷାରେ ପାଶ୍ କରି ପାରିବି ନାହିଁ ; ତେବେ ପଢ଼ିବାରେ ଲାଭ କଅଣ ? ସିନେମା ଦେଖିଲେ ଭାରି ମଜା ହେବ । ମୁଁ କାହିଁକି ପଢ଼ାରେ ଏତେ ପଛକୁ ପଡ଼ିଗଲି ? ଚିନ୍ତା କରି କରି ମୋର ନିଦ ହେଉନାହିଁ ।—ଏହିପରି ଚିନ୍ତାଦ୍ୱାରା ଯେଉଁ ଭବିଷ୍ୟଦ୍‌ବାଣୀ କରି ଯାଇଥିଲି, ତାହା ସଫଳ ହେବାର ବାଟ ଫିଟିଯାଏ । ସଂଖ୍ୟାଗୁରୁ-ସଂଖ୍ୟାଲଘୁ ସମ୍ପର୍କ ବିଷୟରେ ମଧ୍ୟ ଏହିପରି ଗୋଟିଏ ଗୁରୁତର ଅଖଣ୍ଡ ବୃତ୍ତର ସୃଷ୍ଟି ହୁଏ । ଏହାର ଫଳ ସ୍ୱରୂପ ସଂଖ୍ୟାଗୁରୁ ସମ୍ପ୍ରଦାୟର ସଂଖ୍ୟାଲଘୁ ପ୍ରତି ଥିବା ବିଦ୍ୱେଷ ବଳବତ୍ତର ହୋଇଥାଏ । ଏହି ବିଦ୍ୱେଷ ଦିନକୁ ଦିନ ଦୃଢ଼ୀଭୂତ ହୋଇ ଆହୁରି ଭେଦଭାବ ପ୍ରୟୋଗ କରିବାକୁ ଯୁକ୍ତି ପ୍ରଦର୍ଶନ କରେ । ଏହା ପରିଣାମରେ ସଂଖ୍ୟାଲଘୁ ସମ୍ପ୍ରଦାୟର ମନୋଭାବ ଆହୁରି ବଦ୍ଧମୂଳ ହୋଇଯାଏ ।

ଏଥିରୁ ମନେ ହୋଇପାରେ ଯେ ଏହି ଅଖଣ୍ଡ ବୃତ୍ତ ବା ବିଷମ ପରମ୍ପରା ଚିରସ୍ଥାୟୀ ଏବଂ ଏହି ପରମ୍ପରାକୁ ଭାଙ୍ଗିବାର (ବା ଏହି ବୃତ୍ତରୁ ମୁକ୍ତ ପାଇବାର) କୌଣସି ଉପାୟ ନାହିଁ । ଏହା ଯଦି ଆକ୍ଷରିକ ଭାବରେ ସତ୍ୟ ହୋଇଥାନ୍ତା, ତେବେ ଆମେ କହିପାରନ୍ତୁ, "ଥରେ ସଂଖ୍ୟାଲଘୁ ସମ୍ପ୍ରଦାୟର ସୃଷ୍ଟି ହେଲେ ତାହା ଚିରକାଳ ସଂଖ୍ୟାଲଘୁ ସମ୍ପ୍ରଦାୟରୂପେ ରହିଥିବ ।" ଖାଲି ସେତିକି ନୁହେଁ ; ଏଥିରୁ ଆହୁରି ଏକ ମନ୍ଦଫଳ ଉପୁଜିବ ଯେ ଭେଦଭାବର ମାତ୍ରା ଦିନକୁ ଦିନ ବୃଦ୍ଧି ପାଉଥିବ । କିନ୍ତୁ ନିଶ୍ଚିତ ପ୍ରମାଣ ମିଳେ ଯେ ବାସ୍ତବ ଜୀବନରେ ଏପରି ଘଟେ ନାହିଁ । ଆସ ଆମେରିକାନ ନିଗ୍ରୋ ଆନ ଉଦାହରଣକୁ ଫେରିଯିବା । ସେମାନଙ୍କ ସମ୍ବନ୍ଧରେ ଅନ୍ୟାନ୍ୟ ଆମେରିକାବାସୀମାନଙ୍କର ପୂର୍ବ କାଳର ଗତାନୁଗତିକ ଧାରଣା ବଦଳି ଯାଉଅଛି, ଭେଦଭାବ ଊଣା ହୋଇ ଯାଉଛି, ଏହା ନିଃସନ୍ଦେହ । ସ୍ୱାଙ୍ଗୀକରଣ କିମ୍ବା ବହୁଳ ବାଦକୁ ସେମାନେ ପୂର୍ବାପେକ୍ଷା ଅଧିକ ପରିମାଣରେ ସମର୍ଥନ କରିବାକୁ ପ୍ରସ୍ତୁତ । ପଞ୍ଚମ ଅଧ୍ୟାୟରେ ଆମେ ଦେଖାଇଛୁ ଯେ ନିଗ୍ରୋମାନଙ୍କ ପ୍ରତି ଭେଦ ଭାବ କମି ଆସୁଅଛି । ଅତଏବ ସଂଖ୍ୟାଲଘୁ-ସଂଖ୍ୟାଗୁରୁ ସମ୍ବନ୍ଧରୂପକ ଅଖଣ୍ଡ ବୃତ୍ତକୁ ଗୋଟିଏ ସମାଜ ବିଷୟକ ନିୟମ ବୋଲି ବୁଝିବାକୁ ହେବ । ଏହି ନିୟମ କେତେକ ନିର୍ଦ୍ଦିଷ୍ଟ ଅବସ୍ଥାରେ କାର୍ଯ୍ୟକାରୀ ହୋଇଥାଏ । ସମାଜର ପର୍ଯ୍ୟବେକ୍ଷକ

(ଅଧ୍ୟୟନ କାରୀ) ଏହି ଅବସ୍ଥାମାନଙ୍କୁ ଆବିଷ୍କାର କରିବାକୁ ପ୍ରୟାସ କରେ ଓ ଏହି ଅବସ୍ଥାମାନଙ୍କର ଅଭିବୃଦ୍ଧି ଉପର ଘଟେ ତାହା ଜାଣିବାକୁ ଚେଷ୍ଟା କରେ । ପରବର୍ତ୍ତୀ ଅଧ୍ୟାୟରେ ଆମ୍ଭେମାନେ ଏ ପ୍ରକାର ଅବସ୍ଥାର ଆଲୋଚନା କରିବା । ଏଥି ମଧ୍ୟରେ ଆମର ବିଶେଷ ଭାବରେ ସ୍ମରଣ ରଖିବା ଉଚିତ ଯେ, ଯେକୌଣସି ପ୍ରକାରର ଭେକଭାବ ଗୋଟାଏ ଅତି ଦୃଢ଼ ସଗଠନ ପରସ୍ପର ସାହାଯ୍ୟକାରୀ ଅନେକ ବସ୍ତୁ ଏହାକୁ ଧରି ରଖିଥାଏ । କେବଳ ଯଥେଷ୍ଟ କାର୍ଯ୍ୟକାରୀ ଶକ୍ତିର କୌଶଳପୂର୍ଣ୍ଣ ପ୍ରୟୋଗ ଦ୍ୱାରା ଏହା କମି ଯାଇପାରେ ।



# ଚତୁର୍ଥ ଅଧ୍ୟାୟ

## ମାର୍କିନ ଯୁକ୍ତରାଷ୍ଟ୍ରର ନିଗ୍ରୋସମ୍ପ୍ରଦାୟ
## ପୃଥକ୍‌କରଣ ଗୋଟିଏ ସାମାଜିକ ସମସ୍ୟା

ଏପର୍ଯ୍ୟନ୍ତ ଆମ୍ଭେମାନେ ସଂଖ୍ୟାଲଘୁ ସମ୍ପ୍ରଦାୟ କାହାକୁ କହନ୍ତି ଓ ସେ ସମ୍ବନ୍ଧରେ କେତେକ ସାଧାରଣ ନିୟମର ଆଲୋଚନା କରିଅଛୁଁ । ଏହାକୁ ବିଶଦ କରିବା ନିମନ୍ତେ ଆମ୍ଭେମାନେ ବର୍ତ୍ତମାନ ବିଶିଷ୍ଟ ଅବସ୍ଥାମାନଙ୍କର ବିଚାର କରିବା । ଏହା କରିବାକୁ ଗଲାବେଳେ ଆମ୍ଭମାନଙ୍କୁ ସେଥିରେ ନିହିତ ସଂଖ୍ୟାଗୁରୁ-ସଂଖ୍ୟାଲଘୁ ସମ୍ପର୍କର ପ୍ରକାର ଓ ପରିବର୍ତ୍ତନର ଦିଗ ପ୍ରତି ବିଶେଷ ମନୋଯୋଗ ଦେବାକୁ ହେବ । ଆଧୁନିକ ପୃଥିବୀର ଯେ କୌଣସି ସ୍ଥାନ ପ୍ରତି ଦୃଷ୍ଟି ନିକ୍ଷେପ କଲେ ସଯତ୍ନ ପରୀକ୍ଷାର ଉପଯୋଗୀ ଉଦାହରଣ ଦେଖିବାକୁ ମିଳିବ । ଆମ୍ଭେମାନେ ଏଠାରେ ଆମେରିକାର ନିଗ୍ରୋମାନଙ୍କ ବିଷୟ ବିଚାରକୁ ନେବା ; କାରଣ ଏହା ସମ୍ବନ୍ଧରେ ଆମ୍ଭେମାନେ ଯଥେଷ୍ଟ ନିର୍ଦ୍ଦେଶନ ପାଇ ପାରିବା । ଏହାର ପରିବର୍ତ୍ତନ ଓ ଦୃଢ଼ତା ନିମନ୍ତେ ଯଥେଷ୍ଟ ଚାପ ପଡୁଅଛି । ଏହାଦ୍ୱାରା କାରଣଭୂତ ଶକ୍ତି ସ୍ପଷ୍ଟ ଜଣାପଡ଼ି ଯାଉଅଛି । ସଂଖ୍ୟାଲଘୁ ସମ୍ପ୍ରଦାୟମାନଙ୍କ ସମ୍ବନ୍ଧରେ ଅଧିକ ଅଧ୍ୟୟନ କଲେ ଆପଣ ଅନ୍ୟ ପରିସ୍ଥିତି ସହିତ ଏହି ସମ୍ପ୍ରଦାୟରୁ ମିଳିଥିବା ନିଦର୍ଶନର ତୁଳନା କରି ପାରିବେ । ପ୍ରକୃତ ଘଟନା ସବୁ ଜାଣିଲେ ତାହାକୁ ଭିତ୍ତି କରି ଆମ୍ଭେମାନେ ତାହାର ନିର୍ଭୁଲ ବ୍ୟାଖ୍ୟା କରି ପାରିବା ଓ ଦାୟିତ୍ୱ ସହକାରେ ନୈତିକ ମତ ପ୍ରକାଶ କରି ପାରିବା ।

ଆମେରିକାନ ନିଗ୍ରୋମାନଙ୍କ ଆସନ୍ନ ବିଷୟ ଆଲୋଚନା କଲା ମାତ୍ରେ ହଠାତ୍ ଗୋଟିଏ କଥା ମନରେ ଜାଗିଉଠେ । ଖ୍ରୀଷ୍ଟୀୟ ୧୯୬୦-୧୯୭୦ ଦଶନ୍ଧିର ମଧ୍ୟ ଭାଗରେ ଏମାନଙ୍କ ମଧ୍ୟରେ ପରିବର୍ତ୍ତନର ଏକ ପ୍ରବଳ ଜାଗରଣ ଦେଖାଗଲା । ଆଧୁନିକ ଯୁଗରେ ଆମ୍ଭେମାନେ ବିପ୍ଳବ ଓ ବିସ୍ଫୋରଣ ଶବ୍ଦ ଏତେଥର ଶୁଣିବାକୁ

ପାରିଲୁଣି ଯେ, ସେ ମୁକ୍ତିକର ନାଟକୀୟ ମୂଲ୍ୟ ଆଉ ନାହିଁ । କିନ୍ତୁ ଏହି ଦଶଟି ବର୍ଷ ଯେ ନାଟକୀୟ ପରିବର୍ତ୍ତନର ସମୟ, ଏହା ଭୁଲିଗଲେ ଚଳିବ ନାହିଁ । ବିଶେଷତଃ ସମ୍ପ୍ରଦାୟଗତ ପରସ୍ପର ସମ୍ବନ୍ଧର ଆଲୋଚନାରେ ଏହା ଭୁଲିଯିବା ଆଦୌ ଉଚିତ ହେବନାହିଁ । ପଚିଶ ବର୍ଷ ପୂର୍ବେ ଯୁକ୍ତରାଷ୍ଟ୍ରରେ ଏପରି କେତେକ ଗୋଷ୍ଠୀଗତ ଓ ସାଂସ୍କୃତିକ ସମ୍ବନ୍ଧ ଥିଲା ଯେ ସେ ପ୍ରକାରର ସମ୍ବନ୍ଧ ଏବେ କଳ୍ପନା କରିବା ମଧ୍ୟ କଷ୍ଟକର । ଏଥି ମଧ୍ୟରେ (ସମ୍ମିଳନ) ଏକୀକରଣ ଦିଗରେ ପ୍ରବଳ ଆଭିମୁଖ୍ୟ ଦେଖା ଯାଇଅଛି । ଅବଶ୍ୟ ଏହାର ଯେ ବ୍ୟତିକ୍ରମ ଆଦୌ ନାହିଁ, ତାହା ନୁହେଁ । ଏହି କଥାଟିକୁ ଯଥା ସମ୍ଭବ ମନେ ରଖି ଯେଉଁ ଶକ୍ତିମାନଙ୍କ ଏହାର ସହାୟକ ହୋଇଅଛି, ସେଥିରୁ କେତେକ ପରୀକ୍ଷା କରି ଦେଖିବା ଏବଂ ମାର୍କିନ ସମାଜରେ ଏହାର ଗୁରୁତ୍ୱ ସ୍ଥିର କରିବା ।

ଏକୀକରଣ (ସମ୍ମିଳନ) ଶବ୍ଦଟି ଅନେକ ଅର୍ଥରେ ବ୍ୟବହୃତ ହୁଏ । କୌଣସି ଏକୀକୃତ (ସମ୍ମିଳିତ) ସମାଜ କହିଲାବେଳେ ମୁଁ ଲକ୍ଷ୍ୟ ରଖିଛି ଯେ ଏହାର ସଭ୍ୟମାନେ ଗୋଷ୍ଠୀ, ଧର୍ମ, ଜାତୀୟ ଉତ୍ପତ୍ତି ନିର୍ବିଶେଷରେ ଆପଣା ଆପଣା ମଧ୍ୟରେ ଚଳିପାରନ୍ତି । ସମସ୍ତେ ସମାନ ସୁବିଧା ଓ ସୁଯୋଗ ଉପଭୋଗ କରିପାରନ୍ତି । ଆପଣା ଆପଣା ଭିତରେ ମିଳାମିଶାରେ କୌଣସି ବାଧା ନ ରହିବା ଏହି (ସମ୍ମିଳନର) ଏକୀକରଣର ଅନ୍ତର୍ଗତ ହେବ କି ? ହିଁ ନିଶ୍ଚୟ ! ଯଦି ଆମେ ପୂର୍ଣ୍ଣ ଏକୀକରଣର କଳ୍ପନା କରୁଁ, ତେବେ ଏହା ନିଶ୍ଚୟ ଏକୀକରଣର ଅନ୍ତର୍ଗତ ହେବ । ଆମ୍ଭେମାନେ ଗୋଟିଏ ପରିବର୍ତ୍ତନଶୀଳ ବିଷୟର ଆଲୋଚନା କରୁଅଛୁଁ ଏବଂ ଏହାର ଅନେକ ଭିନ୍ନ ସୋପାନ ଥାଇପାରେ ।

ଏକୀକରଣ ହେଉଛି ଗୋଟିଏ ଅବସ୍ଥା, ମାତ୍ର ପୃଥକ୍‌କରଣର ବିଲୋପ ହେଉଛି, ଗୋଟିଏ ପ୍ରକ୍ରିୟା ବା ପ୍ରଣାଳୀ । ଏହା ହେଉଛି ସମାଜ ମଧ୍ୟରେ ଏକ ପରିବର୍ତ୍ତନର ଧାରା ; ଏହାଦ୍ୱାରା ପୃଥକ୍‌କରଣ ହ୍ରାସ ପାଇଥାଏ । ଏହି ଧାରା ମଧ୍ୟ ପରିବର୍ତ୍ତନଶୀଳ । ସାମ୍ପ୍ରଦାୟିକ ସୀମାରେଖା ମଧ୍ୟରେ, ପରସ୍ପର କ୍ରିୟା ପ୍ରତିକ୍ରିୟା ମଧ୍ୟରେ ଏହା ଗତି କରୁଥାଏ । ଉଦାହରଣ ସ୍ୱରୂପ ଶ୍ୱେତାଙ୍ଗ-ବିଦ୍ୟାଳୟରେ ତିନି ଚାରିଜଣ ନିଗ୍ରୋ ବାଳକଙ୍କୁ ଭର୍ତ୍ତି କରାଗଲା । ଏଠାରେ ପୃଥକ୍ କରଣ ବିଲୋପର ପରିମାଣ ସାମାନ୍ୟ । ଶ୍ୱେତାଙ୍ଗ ଓ ନିଗ୍ରୋଙ୍କ ମଧ୍ୟରେ ପରସ୍ପର ସହିତ ମିଳାମିଶାରେ ପ୍ରତିବନ୍ଧକ ଯେତେ ଅଧିକ ଓ କଠୋର ଥିଲା, ତାହା ଯଥେଷ୍ଟ କମିଗଲା । ତେବେ ଏଠାରେ ପୃଥକ୍‌କରଣ ବିଲୋପର ପରିମାଣ ଅଧିକ ବୋଲି କହିବାକୁ ହେବ । ଏହି ଅର୍ଥରେ କୌଣସି କାରଖାନା, ସ୍କୁଲ ବା ଗୀର୍ଜାରେ ପୃଥକ୍‌କରଣ ବିଲୁପ୍ତ ହୋଇଛି କହିବା ପୂର୍ଣ୍ଣରୂପେ ଅର୍ଥବୋଧକ ହୋଇନପାରେ ।

ପୂର୍ଣ୍ଣରୂପେ 'ପୃଥକ୍‌କୃତ' ବା ପୂର୍ଣ୍ଣରୂପେ 'ପୃଥକ୍‌କରଣ ବହୀନ' ଏପରି କୁହାଯାଇ ନପାରେ । ତଥାପି ସୁବିଧା ପାଇଁ ସ୍ଥଳ ବିଶେଷରେ ଆମ୍ଭେମାନେ 'ପୃଥକ୍‌କରଣର ବିଲୋପ' କହିଲେ ବୁଝିବାକୁ ହେବ ଯେ ପୂର୍ବେ ଯେଉଁଠାରେ ପୂର୍ଣ୍ଣରୂପେ ପୃଥକ୍‌କରଣ ବ୍ୟବସ୍ଥା ଥିଲା, ସେଠାରେ ଏକୀକରଣ ଦିଗରେ କେତେକ ପଦକ୍ଷେପ ନିଆଯାଇଅଛି । ଅନେକ କ୍ଷେତ୍ରରେ ପୃଥକ୍‌କରଣ ବିଲୋପର ପ୍ରଥମ ପଦକ୍ଷେପ ସର୍ବାପେକ୍ଷା କଷ୍ଟକର ଓ ସଙ୍କଟମୟ ହୋଇଥାଏ । ତେଣୁ ଏହାକୁ 'ପୃଥକ୍‌କରଣର ବିଲୋପ' କହିବା ଯଥାର୍ଥ ।

ପୃଥକ୍‌କରଣ ଗୋଟିଏ ସାମାଜିକ ସମସ୍ୟା ହୋଇଅଛି । ପୃଥକ୍‌କରଣର ବିଲୋପ ପ୍ରକ୍ରିୟା ଦ୍ୱାରା ବହୁ ପୁରୁଷ ଧରି ଚାଲି ଆସୁଥିବା ପୃଥକ୍‌କରଣର କଠୋର-ଧାର ଭାଙ୍ଗିଯାଏ । କିନ୍ତୁ କିପରି ଏହି ପୃଥକ୍‌କରଣ ବିଲୋପର ଆରମ୍ଭ ହୁଏ ତାହା ଜାଣିବା ପ୍ରୟୋଜନ । ସବୁ ସମାଜରେ ଅନେକ ପ୍ରକାରର ପୃଥକ୍‌କରଣ ଦେଖା-ଯାଏ । କେତେକ ପରିମାଣରେ ଏହା ସମ୍ପ୍ରଦାୟଗତ ପାର୍ଥକ୍ୟ ଓ କାର୍ଯ୍ୟାବଳୀର ଅଭିବ୍ୟକ୍ତି । ଉଦାହରଣ ସ୍ୱରୂପ, ଆମେରିକାର ଅର୍ଥନୈତିକ ଆସୋସିଏସନରୁ ବିଦେଶୀୟମାନଙ୍କୁ ସଭ୍ୟ ହେବାରୁ ବଞ୍ଚିତ କରାଗଲେ କିମ୍ବା ପୋଲଣ୍ଡ ଆଗତ ଆମେରିକାବାସୀଙ୍କ କ୍ଲବର ସଭ୍ୟ ପଦରୁ ଆଙ୍ଗ୍‌ଲୋସାକ୍‌ସନ ଜାତିର ଆମେରିକା ବାସୀଙ୍କୁ ବଞ୍ଚିତ କରାଗଲେ କେହି ଆପତ୍ତି କରିବେ ନାହିଁ । କିନ୍ତୁ କେତେକ ପ୍ରକାରର ପୃଥକ୍‌କରଣ ସମାଜ ପକ୍ଷରେ ନିନ୍ଦନୀୟ ବୋଧ ହୁଏ ; କାରଣ ତାହା ସେ ସମାଜର ମୌଳିକ ମୂଲ୍ୟବୋଧର ବିରୋଧୀ ଅଟେ କିମ୍ବା ତାହା ଅନେକ ସମସ୍ୟା ସୃଷ୍ଟିକରି ଥାଏ । ପ୍ରକୃତ ପକ୍ଷରେ ପୃଥକ୍‌କରଣ କହିଲେ ସମ୍ପ୍ରଦାୟର କାର୍ଯ୍ୟ ଓ ଲକ୍ଷ୍ୟ ସହିତ ଅସମ୍ପୃକ୍ତ କେତେକ କାରଣ ଉପରେ ନିର୍ଭରକରି କୌଣସି ସମ୍ପ୍ରଦାୟକୁ ପୃଥକ୍ କରି ରଖିବା ବୁଝାଯାଏ । ଏହି ସଙ୍କୀର୍ଣ୍ଣ ଅର୍ଥରେ ଆମ୍ଭେମାନେ 'ପୃଥକ୍‌କରଣ' ଶବ୍ଦର ବ୍ୟବହାର କରିବୁ ।

ସମାଜ ମଧ୍ୟରେ ଯେଉଁ ସାଂପ୍ରଦାୟିକ ସୀମାରେଖା ପ୍ରଚଳିତ ଥାଏ, ତାହା ସର୍ବଦା ଅପରିବର୍ତ୍ତିତ ରହିନଥାଏ । ତେଣୁ ପୃଥକ୍‌କରଣ ବିଷୟରେ ମତଭେଦ ଘଟେ । ସାମାଜିକ ପରିବର୍ତ୍ତନ ଫଳରେ ଜାତିକୁ ନୂଆ ନୂଆ ସମସ୍ୟାର ସମ୍ମୁଖୀନ ହେବାକୁ ପଡ଼େ । ପୂର୍ବ ପ୍ରଚଳିତ ପୃଥକ୍‌କରଣ ପ୍ରଥା ସମସ୍ତଙ୍କର ଆଉ ଗ୍ରହଣୀୟ ହୁଏ ନାହିଁ, କିନ୍ତୁ ଏହି ପରିବର୍ତ୍ତନ ବିଭିନ୍ନ ଲୋକଙ୍କ ଉପରେ ଓ ବିଭିନ୍ନ ଅଞ୍ଚଳ ଉପରେ ବିଭିନ୍ନ ପ୍ରକାରରେ ଓ ବିଭିନ୍ନ ପରିମାଣରେ ପ୍ରଭାବ ପକାଉଥିବାରୁ ଅନେକ ସ୍ଥଳରେ ଗୋଟାଏ ଘୋର ବାଦାନୁବାଦର ସୃଷ୍ଟି ଆସେ । କେତେକ ଲୋକ କହନ୍ତି,—ପ୍ରାଚୀନ ପ୍ରଥା ଗଣ୍ଡୋଳବାଦର ଅଭିବ୍ୟକ୍ତି ଓ ଏହା ଜାତିଗତ ; ପୃଥକ୍‌କରଣ ଧର୍ମସଙ୍ଗତ । ଅନ୍ୟ କେତେକ କହନ୍ତି—ପ୍ରାଚୀନ ପ୍ରଥା ସୁସ୍ଥ ସମାଜର ପ୍ରତିବନ୍ଧକ । ଏଥିରୁ

ଜଣାଯିବ ଯେ ଆମେ ପୃଥକ୍‌କରଣକୁ ଗୋଟିଏ ସାମାଜିକ ସମସ୍ୟା କହିବା ଖୁବ୍ ଯଥାର୍ଥ ହୋଇଛି ।

ପ୍ରାୟ ଏକଶତ ବର୍ଷ ପୂର୍ବେ ମାର୍କିନ ଯୁକ୍ତରାଷ୍ଟ୍ରର ନାରୀସମାଜ ଗୋଟିଏ ସଂଖ୍ୟାଲଘୁ ସମ୍ପ୍ରଦାୟ ଥିଲା । ସେମାନଙ୍କ ପ୍ରତି ଭେଦଭାବ ନୀତି ପ୍ରୟୋଗ କରା ଯାଉଥିଲା । ଏବେ ମଧ୍ୟ ଭେଦଭାବ ସାମାନ୍ୟ ପରିମାଣରେ ଅଛି । କିନ୍ତୁ ଆମ ସମାଜର ବିକାଶ ଫଳରେ କ୍ରମଶଃ କେତେକ ଲୋକ ନାରୀଜାତି ପ୍ରତି ଭେଦଭାବ-ପୂର୍ଣ୍ଣ ବ୍ୟବହାରରେ ଅସନ୍ତୋଷ ପ୍ରକାଶ କଲେ ; ତତ୍ପରେ ଅନେକ ଲୋକ ଏହାକୁ ଆପତ୍ତିଜନକ ମନେକଲେ ଓ ପରିଶେଷରେ ଏହା ଅଧିକାଂଶ ଲୋକଙ୍କୁ ଘୃଣାବୋଧ ହେଲା । ଫଳତଃ ରୀତିଗତ ଓ ଆଇନଗତ ଆଦର୍ଶରେ ପରିବର୍ତ୍ତନ ଘଟି ନାରୀମାନଙ୍କର ନୂତନ ଆସନ ବିଧିବଦ୍ଧ କରାଗଲା ।

ଜାତିଗତ ଓ ଧର୍ମଗତ ପୃଥକ୍‌କରଣ ବିଷୟରେ ବର୍ତ୍ତମାନ ମାର୍କିନ ଯୁକ୍ତରାଷ୍ଟ୍ର ସେହିପରି ଗୋଟିଏ ପ୍ରକ୍ରିୟା ମଧ୍ୟରେ ଗତି କରୁଅଛି । ଏଣିକି ପୃଥକ୍‌କରଣ ପ୍ରଥାକୁ ସହଜେ ସମସ୍ତେ ମାନି ନେବାକୁ ପ୍ରସ୍ତୁତ ନୁହଁନ୍ତି । ବିଭିନ୍ନ ସମ୍ପ୍ରଦାୟ ମଧ୍ୟରେ ପୂର୍ବେ ଯେଉଁ ସମ୍ବନ୍ଧ ଥିଲା, ତାହା କ୍ଷିପ୍ର ଗତିରେ ପରିବର୍ତ୍ତିତ ହେଉଅଛି । ଏହାର ନିଦର୍ଶନ ଦର୍ଶାଇବା ପୂର୍ବରୁ ପୃଥକ୍‌କରଣ କାହିଁକି ଗୋଟିଏ ସାମାଜିକ ସମସ୍ୟାରେ ପରିଣତ ହୋଇଛି ତାହା ବୁଝାଇ ଦେବାକୁ ହେବ । ବହୁ ଦଶନ୍ଧି ଧରି ପୃଥକ୍‌କରଣ ସ୍ୱାଭାବିକ ଓ ବାଞ୍ଛନୀୟ ବୋଲି ବିବେଚିତ ହୋଇ ଆସୁଥିବା ସ୍ଥଳେ କାହିଁକି ଅଧିକାଂଶ ଲୋକ ଏହାକୁ ନୀରବରେ ଗ୍ରହଣ କରି ନେଉନାହାନ୍ତି ? ଏହା ସର୍ବସାଧାରଣରେ ଏତେ ଆବେଗ ଓ (ଭାବ-ପ୍ରବଣତା) ବାଦାନୁବାଦର ବିଷୟ ହୋଇଛି କାହିଁକି ? ଏହି ପ୍ରଶ୍ନର ଯଥାର୍ଥ ଉତ୍ତର ପାଇବାକୁ ହେଲେ ମାର୍କିନ ସମାଜରେ ଯେଉଁସବୁ ପରିବର୍ତ୍ତନ ଘଟିଅଛି, ତାହାକୁ ଯତ୍ନ ସହକାରେ ପରୀକ୍ଷା କରିବା ଆବଶ୍ୟକ । ଯେଉଁ ଶକ୍ତିଗୁଡ଼ିକ ଏ ଦିଗରେ କାର୍ଯ୍ୟ କରୁଅଛି, ସେଗୁଡ଼ିକର ସଂକ୍ଷିପ୍ତ ସୂଚନା ଦିଆ ଯାଉଅଛି ।

ସମସ୍ତ ସମାଜ ସାମଞ୍ଜସ୍ୟ ଆଡ଼କୁ ଗତି କରିବାକୁ ସଚେଷ୍ଟ । ପ୍ରଧାନ ମୂଲ୍ୟବୋଧର ପ୍ରକାର ଓ ଅନୁଷ୍ଠାନଗତ ଗଠନରେ ଥିବା ବିଭେଦକୁ ହ୍ରାସ କରିବାର ପ୍ରବଣତା ପ୍ରତ୍ୟେକ ସମାଜରେ ଦେଖାଯାଏ । ଏହି ପ୍ରବଣତା ଅନ୍ୟାନ୍ୟ ଶକ୍ତିଦ୍ୱାରା ପ୍ରତିହତ ହୋଇପାରେ । ଅବସ୍ଥା ଅନୁସାରେ ଏହା ବଳବତ୍ତର ଭାବରେ ବା କ୍ଷୀଣ ଭାବରେ ଆତ୍ମପ୍ରକାଶ କରିପାରେ ; କିନ୍ତୁ ଏହାକୁ ଏକବାରେ ଉପେକ୍ଷା କରା-ଯାଇ ନପାରେ । ପୃଥକ୍‌କରଣ ସମ୍ପର୍କରେ କହିବାକୁ ଗଲେ ସାମଞ୍ଜସ୍ୟ ଆଡ଼କୁ

ଗଢ଼ କରିବାର ଚେଷ୍ଟା ହେଉଛି ଗୋଟିଏ ଶକ୍ତି । ଏହା ଗୋଷ୍ଠୀଗତ ସମ୍ପର୍କର ପ୍ରକାର ସହିତ ମୌଳିକ ମୂଲ୍ୟବୋଧ ଏବଂ ଅର୍ଥନୈତିକ, ରାଜନୈତିକ ଓ ଧର୍ମଗତ ଅନୁଷ୍ଠାନମାନଙ୍କର ବିନ୍ୟାସ ଐକ୍ୟ ସ୍ଥାପନ କରିବାକୁ ଯତ୍ନକରେ । ବ୍ୟକ୍ତି ସ୍ୱାଧୀନତା ଆଇନଦୃଷ୍ଟିରେ ସମସ୍ତଙ୍କର ସମାନତା ଓ ବ୍ୟକ୍ତି ପ୍ରତି ସମ୍ମାନ ଏହାର ଅନ୍ତର୍ଗତ ।

ମାର୍କିନ ଯୁକ୍ତରାଷ୍ଟ୍ର ଯେତେବେଳେ ଗୋଟିଏ କୃଷିକାର୍ଯ୍ୟ ସମାଜ ଥିଲା ସେତିକବେଳେ ପୃଥକ୍‌କରଣର ଉତ୍ପତ୍ତି । ଏକ ଅର୍ଥରେ ପୃଥକ୍‌କରଣ ସେ ପ୍ରକାର ସମାଜର ଉପଯୋଗୀ ଥିଲା ଅର୍ଥାତ୍ ସମାଜର କାର୍ଯ୍ୟାବଳୀରେ କୌଣସି ବାଧା ସୃଷ୍ଟି ନକରି ଏହା ସମାଜ ମଧ୍ୟରେ ତିଷ୍ଠି ପାରିଥିଲା । କିନ୍ତୁ ଗଣତାନ୍ତ୍ରିକ, ପ୍ରଗତିଶୀଳ ଶିଳ୍ପପ୍ରଧାନ ନାଗରିକ ସମାଜର ସ୍ୱଚ୍ଛନ୍ଦ ଗତିରେ ପୃଥକ୍‌କରଣ ଏକ ପ୍ରତିବନ୍ଧକ । ଏ ପ୍ରକାର ସମାଜରେ ବ୍ୟକ୍ତିବାଦ, ଯୋଗ୍ୟତା ଅନୁସାରେ ବିସ୍ତାର ଓ ପ୍ରତିଭାର ପୂର୍ଣ୍ଣତମ ବିକାଶକୁ ମୂଲ୍ୟବାନ ମନେ କରାଯାଏ । ଏଥିପାଇଁ ସାର୍ବଜନୀନ ବିସ୍ତାର ଶକ୍ତିର ନିଦର୍ଶନ—ଅର୍ଥାତ୍ ବ୍ୟକ୍ତିବିଶେଷ ଯେ କୌଣସି ସମ୍ପ୍ରଦାୟର ହୋଇଥାଉ ନା କାହିଁକି ତାହାର ସାମର୍ଥ୍ୟ ଅନୁସାରେ ଆସନ ଦେବାକୁ ହେବ—(ଏହି ନୀତିର ଅଭିବୃଦ୍ଧି ଆବଶ୍ୟକ) ନୀତି ଉପରେ ଗୁରୁତ୍ୱ ଦେବା ଆବଶ୍ୟକ । ଯେ କୌଣସି ଦ୍ରୁତପରିବର୍ତ୍ତନଶୀଳ ସମାଜ ପକ୍ଷରେ ଏହି ନୀତିର ଆବଶ୍ୟକତା ଅଛି । ଉଦାହରଣ ସ୍ୱରୂପ ଦକ୍ଷିଣ ଆଫ୍ରିକା ବିଷୟ ବିଚାର କରାଯାଉ । ସେଠାରେ ନିର୍ମମ ବର୍ଣ୍ଣବିଦ୍ୱେଷ ଭିତ୍ତିରେ ପ୍ରତିଷ୍ଠିତ 'ପୃଥକ୍‌କରଣ' ସରକାରୀ ନୀତିରୂପେ ଗୃହୀତ । ଏ କ୍ଷେତ୍ରରେ ଆମର ଉପର୍ଯ୍ୟୁକ୍ତ ନୀତି ପ୍ରଯୁଜ୍ୟ । ବର୍ଣ୍ଣବୈଷମ୍ୟ ଉପରେ ପ୍ରତିଷ୍ଠିତ ପୃଥକ୍‌କରଣ ସଙ୍ଗେ ଆଧୁନିକ ଶିଳ୍ପ ଓ ଅର୍ଥନୈତିକ ପଦ୍ଧତିର ବିକାଶ କରିବାକୁ ଦକ୍ଷିଣ ଆଫ୍ରିକା ଚେଷ୍ଟା କରୁଅଛି । ଏପରି ବିକାଶ ନିମନ୍ତେ ସୁଦକ୍ଷ, ସାକ୍ଷର, ପ୍ରଗତିଶୀଳ ଓ ସଦଭିପ୍ରାୟବିଶିଷ୍ଟ ଗୋଟିଏ ପ୍ରବଳ ଶ୍ରମିକ ସମାଜ ଆବଶ୍ୟକ । କୃଷ୍ଣକାୟମାନଙ୍କ ମଧ୍ୟରୁ ଏହି ଶ୍ରମିକ ସମାଜ ସଂଗ୍ରହ କରିବାକୁ ହେବ । କାରଣ ଶ୍ୱେତାଙ୍ଗମାନଙ୍କ ସଂଖ୍ୟା ଦେଶର ଲୋକସଂଖ୍ୟାର ଏକଚତୁର୍ଥାଂଶରୁ ମଧ୍ୟ କମ୍ । ମୋ ମତରେ ଦକ୍ଷିଣ ଆଫ୍ରିକାରେ ବର୍ଣ୍ଣବିଦ୍ୱେଷ ରହିପାରେ କିମ୍ବା ଆଧୁନିକ ଅର୍ଥନୀତି ରହିପାରେ, କିନ୍ତୁ ଉଭୟେ ରହି ପାରିବେ ନାହିଁ[୧] । ଦକ୍ଷିଣ ଆଫ୍ରିକାର ଶାସକଗଣ ଶୀଘ୍ର ଏହି ଦୁଇଟି ମଧ୍ୟରୁ ଗୋଟିଏ ପନ୍ଥା ସ୍ଥିର କରିନେଇ ଦେଶକୁ ଧ୍ୱଂସ ମୁଖରୁ ରକ୍ଷା କରିବେ କି ନା ତାହା ସନ୍ଦେହଜନକ ।

---

[୧] 'ସୋସିଆଲ ଫୋର୍ସେସ୍' ପତ୍ରିକାର ୧୯୫୪ ମସିହା ଅକ୍ଟୋବର ସଂଖ୍ୟାରେ ପ୍ରକାଶିତ ଲିଓ କୁପରଙ୍କ 'ଦି କଣ୍ଟ୍ରୋଲ୍ ଅଫ୍ ସୋସିଆଲ ଚେଞ୍ଜ : ଏ ସାଉଥ୍ ଆଫ୍ରିକାନ ଏକ୍ସପେରିମେଣ୍ଟ' ପ୍ରବନ୍ଧର ପୃ ୧୯-୬୧ଷ୍ଟ ଦ୍ରଷ୍ଟବ୍ୟ ।

ମାର୍କିନ ଯୁକ୍ତରାଷ୍ଟ୍ରରେ ପୃଥକ୍‌କରଣ କାହିଁକି ଗୋଟିଏ ସାମାଜିକ ସମସ୍ୟା ହୋଇଅଛି, ଏହାର ଆଲୋଚନା ନ କରି ମୁଁ ଅନ୍ୟ ଦୁଇଗୋଟି ପ୍ରଭାବର ଉଲ୍ଲେଖ କରୁଅଛି । ବିଭିନ୍ନ ଜାତି ମଧ୍ୟରେ ପରସ୍ପର ଗମନାଗମନ ଓ କ୍ରିୟା ପ୍ରତିକ୍ରିୟାର ପରିଣାମ ହେଉଅଛି ଯେ ଆମେରିକା ତାହାର ଗଣତନ୍ତ୍ରନୀତିରୁ ବିଚ୍ୟୁତ ହେଲେ ସ୍ୱାଧୀନ ଦେଶମାନଙ୍କରେ ତାହାର ନେତୃତ୍ୱ ଉପରେ ତୀକ୍ଷ୍ଣ ଆଘାତ ଆସିବ । ପୃଥକ୍‌କୃତ ଓ ସୁଯୋଗ ରହିତ ସମ୍ପ୍ରଦାୟମାନେ ଗତ ଏକ ପୁରୁଷ ମଧ୍ୟରେ ଯଥେଷ୍ଟ ଶକ୍ତି ଲାଭ କରି ଅଛନ୍ତି ଏବଂ ଏହି ଶକ୍ତିଦ୍ୱାରା ସେମାନେ ସମାନ ସୁଯୋଗପାଇଁ ପୂର୍ବ ଅପେକ୍ଷା ଅଧିକ ସଫଳତାର ସହିତ ସଂଗ୍ରାମ କରିବାକୁ ସମର୍ଥ । ଶିକ୍ଷା, ଆୟ ଓ ରାଜନୀତିରେ ଅଂଶ ଗ୍ରହଣର ବୃଦ୍ଧି ସଙ୍ଗେ ପ୍ରତିବାଦକମୂଳକ ଅନୁଷ୍ଠାନମାନଙ୍କର କାର୍ଯ୍ୟକାରିତା ବୃଦ୍ଧି ପାଇଥିବାରୁ ଆମେରିକାର ନିଗ୍ରୋ ଓ ଅନ୍ୟାନ୍ୟ ସଂଖ୍ୟାଲଘୁ ସମ୍ପ୍ରଦାୟମାନେ ଏବେ ପୃଥକ୍‌କରଣର ପ୍ରାଚୀରକୁ ଆକ୍ରମଣ କରିବା ଦିଗରେ ଅଧିକ ସମର୍ଥ ହୋଇ ଅଛନ୍ତି ।

ଏହି ସବୁ କାରଣରୁ ପୃଥକ୍‌କରଣର ବିଲୋପ ପ୍ରକ୍ରିୟାକୁ କେତେକ ବଳବତୀ ଶକ୍ତି ସାହାଯ୍ୟ କରୁଅଛି । ସମସାମୟିକ ଘଟଣାବଳୀ ଏବଂ ସମ୍ଭାବ୍ୟ ଘଟଣାବଳୀର ଗତି ବୁଝିବାକୁ ହେଲେ, ଆମ୍ଭେମାନେ ସତର୍କ ରହିବା ଉଚିତ । ସାଧାରଣତଃ ବିରୋଧ ଓ ବିଦ୍ୱେଷ ବିଷୟରେ ଯେଉଁ ସମ୍ବାଦମାନ ବଡ଼ବଡ଼ ଅକ୍ଷରରେ ସମ୍ବାଦପତ୍ରମାନଙ୍କରେ ବାହାରେ, ତାହାକୁ ଭିତ୍ତି କରି କୌଣସି ସିଦ୍ଧାନ୍ତରେ ଉପନୀତ ହେବା ଉଚିତ ନୁହେଁ । ସାଧାରଣତଃ କ୍ଷୁଦ୍ରତରଙ୍ଗର ତଳେ ତଳେ ପ୍ରବଳ ସ୍ରୋତ ବିପରୀତ ଦିଗରେ ପ୍ରବାହିତ ହେଉଥାଏ । ବସ୍ତୁତଃ ବିରୋଧ ଦେଖିଲେ ଜାଣିବାକୁ ହେବ ଯେ ପ୍ରାଚୀନ ପନ୍ଥା ଉପରେ ଚାପ ପଡ଼ୁଅଛି । ଯେଉଁମାନେ ସେହି ପନ୍ଥାକୁ ଅନୁମୋଦିତ କରୁଥିଲେ ଏବଂ ସ୍ୱତଃସିଦ୍ଧ ବୋଲି ଧରି ନେଇଥିଲେ, ସେମାନେ ଏବେ ତାହାକୁ ରକ୍ଷା କରିବାପାଇଁ ଉଦ୍ୟମ କରିବାକୁ ବାଧ୍ୟ ହେଉଅଛନ୍ତି । ପୃଥକ୍‌କରଣର ବିଲୋପ କେବଳ ଆମେରିକାର ଦକ୍ଷିଣାଞ୍ଚଳର ପ୍ରଶ୍ନ ନୁହେଁ ; ଏହା ଏକ ଜାତୀୟ ପ୍ରଶ୍ନ । ଏ କଥାଟି ମନେ ରଖିବା ଆମପକ୍ଷରେ ବିଜ୍ଞତାର କାର୍ଯ୍ୟ ହେବ । ବାସ୍ତବରେ ପିଉର୍ଟୋରିକୋରୁ ଆଗତ ସମସ୍ତ ଆମେରିକାବାସୀ, ମେକ୍‌ସିକୋରୁ ଆଗତ ଅଧିକାଂଶ ଆମେରିକାବାସୀ ଏବଂ ଯୁକ୍ତରାଷ୍ଟ୍ରର ଅର୍ଦ୍ଧେକ ନିଗ୍ରୋ ବର୍ତ୍ତମାନ ଉତ୍ତର ଓ ପଶ୍ଚିମାଞ୍ଚଳରେ ବାସ କରୁଅଛନ୍ତି । ରାଜନୈତିକ ଅଭ୍ୟୁଦୟ ଦ୍ୱାରା ଏହି ପରିବର୍ତ୍ତନର ଧାରାରେ ଜାତୀୟ ଦୃଷ୍ଟିକୋଣ ସ୍ପଷ୍ଟଭାବରେ ପ୍ରକାଶ ପାଏ । ଉତ୍ତର ଓ ପଶ୍ଚିମାଞ୍ଚଳରେ ପ୍ରାୟ ତିରିଶ ଲକ୍ଷ ଓ ଦକ୍ଷିଣାଞ୍ଚଳରେ ପ୍ରାୟ କୋଡ଼ିଏ ଲକ୍ଷ ନିଗ୍ରୋ ଭୋଟର ତାଲିକାଭୁକ୍ତ ଅଛନ୍ତି । ଆହୁରି ଅନେକ ନିଗ୍ରୋ ଭବିଷ୍ୟତରେ ଭୋଟର ତାଲିକାଭୁକ୍ତ ହେବେ । ତେଣୁ ଡେମୋକ୍ରାଟ ଓ ରିପବ୍ଲିକାନ ଉଭୟ ଦଳର

ଲୋକେ ନଗ୍ରୋସମସ୍ୟା ବିଷୟରେ ଅଧିକ ଆଗ୍ରହ ପ୍ରକାଶ କରୁଅଛନ୍ତି । ୧୯୫୭, ୧୯୬୦ ଓ ୧୯୬୪ ମସିହାରେ ଉଭୟଦଳ ମିଳି ପ୍ରଥମ ନାଗରିକ ଅଧିକାର ବିଲ୍ କଂଗ୍ରେସରେ ମଞ୍ଜୁର କରାଇ ଅଛନ୍ତି । ଏହାଦ୍ୱାରା ଗତ ୭୫ ବର୍ଷ ମଧ୍ୟରେ ଯାହା ହୋଇ ନଥିଲା, ତାହା ହୋଇ ପାରିଅଛି । ନଗ୍ରୋମାନେ ରାଜନୀତିରେ ଅଂଶ ଗ୍ରହଣ କରିବାରେ ଯେଉଁ ପ୍ରତିବନ୍ଧକ ଥିଲା, ତାହା ଅନେକ ପରିମାଣରେ ହ୍ରାସ ଲାଭ କରିଅଛି ।

ଅର୍ଥନୀତିର ପରିସର ମଧ୍ୟ ଜାତୀୟ ଅଟେ । ୧୯୫୭ ମସିହାରେ ଆର୍କାନସସ୍‌ର ବଣିକମାନେ ଏହା ବୁଝି ନପାରି ଉଦାସୀନ ରହିଥିଲେ ବା ଗଭର୍ଣ୍ଣର ଫବସ୍‌ଙ୍କର ଲିଟିଲରକସ୍ଥିତ ସେଣ୍ଟ୍ରାଲ ହାଇସ୍କୁଲରେ ଶ୍ୱେତାଙ୍ଗମାନଙ୍କ ସହିତ ନଗ୍ରୋମାନଙ୍କ ଶିକ୍ଷାର ବିରୋଧନୀତିକୁ ସମର୍ଥନ କରିଥିଲେ । ସେତେବେଳେ ସେମାନେ ଜାଣି-ପାରି ନଥିଲେ ଯେ ଅର୍ଥନୀତି ମଧ୍ୟ ଜାତୀୟ ପରିସରର ଅନ୍ତର୍ଗତ । ଏହା ଫଳରେ ଲିଟିଲରକ ସହରରେ ଶିଳ୍ପବିକାଶର ଗତି ହ୍ରାସ ଲଭିଥିଲା । ୧୯୫୦ ଠାରୁ ୧୯୫୭ ମସିହା ମଧ୍ୟରେ ବର୍ଷକୁ ହାରାହାରି ପାଞ୍ଚୋଟି ବଡ଼ ବଡ଼ ନୂତନ କାରଖାନା ପ୍ରତିଷ୍ଠିତ ହୋଇଥିବା ସ୍ଥଳେ ପରବର୍ତ୍ତୀ ଚାରିବର୍ଷ ମଧ୍ୟରେ ଲିଟିଲରକରେ ଗୋଟିଏ ସୁଦ୍ଧା ଉଲ୍ଲେଖଯୋଗ୍ୟ କାରଖାନା ପ୍ରତିଷ୍ଠିତ ହୋଇ ପାରି ନଥିଲା [୨] । ଡେଲାସ୍, ରିଚମଣ୍ଡ ଓ ଆଟଲାଣ୍ଟାର ବଣିକଗୋଷ୍ଠୀ ଏହି ଘଟନାରୁ ଯଥେଷ୍ଟ ଶିକ୍ଷା ପାଇଥିଲେ । ଏହି ସହରମାନଙ୍କରେ ପୃଥକକରଣର ବିଲୋପସାଧନରେ ମନ୍ଥର ଓ ଶାନ୍ତିପୂର୍ଣ୍ଣ ପଦକ୍ଷେପ ନେବାରେ ସେମାନେ ନେତୃତ୍ୱ ଗ୍ରହଣ କରିଥିଲେ ।

କୌଣସି ସମାଜର ଅନୁଷ୍ଠାନ ସମୂହ ଓ ଅନ୍ତଃଲମ୍ବୁକ ଯେ ପରସ୍ପର ନିର୍ଭର-ଶୀଳ ଏହା ପୃଥକ୍‌କରଣର ବିଲୋପ ପ୍ରକ୍ରିୟା ଦ୍ୱାରା ସ୍ପଷ୍ଟ ପ୍ରମାଣିତ ହୁଏ । ବିଦ୍ୟାଳୟ ପଦ୍ଧତିର ପରିବର୍ତ୍ତନ ସମାଜର ଅର୍ଥନୀତି, ରାଜନୈତିକ ଆଦର୍ଶ, ଆନ୍ତର୍ଜାତିକ ସମ୍ବନ୍ଧ, ଧର୍ମାଚରଣ ଓ ଜୀବନର ଅନ୍ୟାନ୍ୟ ବିଭାଗ ଉପରେ ପ୍ରଭାବ ପକାଏ ; ଏବଂ ଏମାନଙ୍କ ଦ୍ୱାରା ପ୍ରଭାବିତ ମଧ୍ୟ ହୁଏ । ସମାଜର ବିଭିନ୍ନ ଅଙ୍ଗ ପରସ୍ପର ଉପରେ ପ୍ରଭାବ ପକାଉଥିବାରୁ ଆମେ ସ୍ୱାଧୀନ ଭାବରେ କେବଳ ନିଜର ରୁଚି ଅନୁସାରେ ପୃଥକ୍‌କରଣର ସମର୍ଥନ କରିପାରିବା ନାହିଁ, କିମ୍ୱା ସ୍ୱାଙ୍ଗୀକରଣର ସମର୍ଥ କରି ପାରିବା ନାହିଁ । ସମାଜରେ ନଗର ସଂଖ୍ୟା ଓ ଶିଳ୍ପ ଯେତିକି ବୃଦ୍ଧି ପାଉଥାଏ—ବିଶେଷତଃ ଏହି ବୃଦ୍ଧି ଯଦି ଗଣତାନ୍ତ୍ରିକ ଭିତ୍ତିରେ ଘଟୁଥାଏ—ପୃଥକ୍‌କରଣକୁ ରକ୍ଷା କରିବା ସେତିକି କଷ୍ଟକର ବ୍ୟାପାର ହୋଇପଡ଼େ ।

[୨] ୧୯୬୧ ମସିହା ମେ ମାସରେ ପ୍ରକାଶିତ 'ଦି ଓ୍ୱାଲ ଷ୍ଟ୍ରୀଟ ଯୁର୍ନାଲର ୧ ପୃଷ୍ଠା ଦେଖ ।

ବିଗତ ପଚିଶ ବର୍ଷ ମଧ୍ୟରେ ମାର୍କିନ ଯୁକ୍ତରାଷ୍ଟ୍ରରେ ଯାହା ଘଟିଯାଇଅଛି, ତାହା ଆମ୍ଭମାନଙ୍କର ଉପର୍ଯ୍ୟୁକ୍ତ ସିଦ୍ଧାନ୍ତକୁ ଦୃଢ଼ଭାବରେ ପ୍ରମାଣିତ କରେ । ଅନ୍ତର୍ଯୁଦ୍ଧ ପରେ ଦୁଇ ପୁରୁଷ ପର୍ଯ୍ୟନ୍ତ ପ୍ରାୟ ସମସ୍ତେ ପୃଥକ୍‌କରଣକୁ ଏକ ସ୍ୱତଃସିଦ୍ଧ ବ୍ୟାପାର ରୂପେ ଗ୍ରହଣ କରି ନେଇଥିଲେ । ଏହି ସମୟ ମଧ୍ୟରେ ଅବଶ୍ୟ କିଛି ପରିବର୍ତ୍ତନ ଘଟିଥିଲା ; କିନ୍ତୁ ଏହି ପରିବର୍ତ୍ତନର ଗତି ଏତେ ମନ୍ଥର ହୋଇଥିଲା ଯେ ଅନେକ ଦଶନ୍ଧିର ସମ୍ମିଳିତ ଫଳ ମଧ୍ୟ ଅତି ସାମାନ୍ୟ ଥିଲା । ତତ୍ପରେ ସମ୍ଭବତଃ ୧୯୩୦-୧୯୪୦ ମସିହାର ମଧ୍ୟଭାଗରେ ପରିବର୍ତ୍ତନର ଗତି ଦ୍ରୁତ ହେବାକୁ ଲାଗିଲା । ଏ ସମ୍ପର୍କରେ ରାଲଫ ମାକ୍‌ଗିଲଙ୍କ ଉକ୍ତି ଉଲ୍ଲେଖଯୋଗ୍ୟ । ସେ କହିଥିଲେ, "କପାଖିଆ ଝିଣ୍ଟିକା ଦେଖାଦେବା ସଙ୍ଗେ ପୃଥକ୍‌କରଣର ବିଲୋପ ଆରମ୍ଭ ହେଲା ।" ବୋଧହୁଏ ଝିଣ୍ଟିକାଙ୍କ ଉତ୍ପାତରେ ୧୯୩୦ ମସିହାର ପୂର୍ବରୁ କପା ଉପରେ ପ୍ରତିଷ୍ଠିତ ଅର୍ଥନୀତି କ୍ଷୟ ପାଇ ଆସିଲା ଏବଂ ୧୯୨୦ ମସିହାର ପରବର୍ତ୍ତୀ ଦଶନ୍ଧି ବେଳକୁ ଯେଉଁ ଭୀଷଣ ଆର୍ଥିକ ଦୁର୍ଗତି ଘଟିଲା, ତାହା ଫଳରେ କପାଭଳି ଗୋଟିଏ ଫସଲ ଉପରେ ନିର୍ଭର କରୁଥିବା ଅର୍ଥନୀତିର ଅବସାନ ଘଟିଲା ଏବଂ ବିଭିନ୍ନ ଫସଲ ଉତ୍ପାଦନ ପ୍ରତି କେନ୍ଦ୍ର ସରକାରଙ୍କର ଦୃଷ୍ଟି ଆକୃଷ୍ଟ ହେଲା ; ଅଧିକ ଦ୍ରୁତଗତିରେ ସହରମାନ ସ୍ଥାପିତ ହେଲା ଏବଂ ଦକ୍ଷିଣାଞ୍ଚଳରେ ଶିଳ୍ପକେନ୍ଦ୍ରମାନ ପ୍ରତିଷ୍ଠିତ ହେଲା ।

ଆଶ୍ଚର୍ଯ୍ୟର କଥା ଏହି ଯେ ପୃଥକ୍‌କରଣର ସପକ୍ଷବାଦୀ ଅନେକ ଲୋକ ଦକ୍ଷିଣାଞ୍ଚଳରେ ଶିଳ୍ପ ପ୍ରତିଷ୍ଠା ଲାଗି ଉଦ୍ୟମର ପକ୍ଷପାତୀ ଥିଲେ । ସେମାନେ ଯେ 'ପୃଥକ୍‌କରଣ' ଓ 'ଶିଳ୍ପୋନ୍ନତି' ଏ ଦୁଇଟି ମଧ୍ୟରୁ ଗୋଟିକୁ ନିର୍ବାଚନ କରୁଅଛନ୍ତି, ଏହା ସେତେବେଳେ ଜାଣି ପାରି ନଥିଲେ । ନଗରମାନଙ୍କର ସ୍ଥାପନ, ଘଣ୍ଟା ହିସାବରେ ମଜୁରି ଦିଆଯାଉଥିବା ଶିଳ୍ପକାର୍ଯ୍ୟ, ଶ୍ରମିକ ଇଉନିଅନ ପ୍ରତିଷ୍ଠାର ଉଦ୍ୟମ ନିଗ୍ରୋମାନଙ୍କ ପାଇଁ ନାନା ପ୍ରକାର ଚାକିରି, ସାକ୍ଷରତାର ବୃଦ୍ଧି, ଗଣତନ୍ତ୍ରଶାସନର ମୂଲ୍ୟବୋଧ, ନଗରମାନଙ୍କରେ ମଧ୍ୟବିତ୍ତ ଶ୍ରେଣୀର ସଂଖ୍ୟା ବୃଦ୍ଧି, ଜାତୀୟ ଅର୍ଥନୀତିରେ କ୍ରମଶଃ ଐକ୍ୟସ୍ଥାପନ—ଏ ସବୁ ଓ ଅନ୍ୟ କେତେକ ଶକ୍ତି ଦ୍ୱାରା ଦେଶର ସକଳ ଅଂଶରେ ଗୋଷ୍ଠୀଗତ ସମ୍ବନ୍ଧର ପ୍ରକାର ପରିବର୍ତ୍ତିତ ହୋଇଅଛି [୩] ।

---

[୩] ଜେ. ମିଲ୍‌ଟନ ୟିଙ୍ଗର ଓ ଜର୍ଜ ଇ. ସିମ୍ପସନଙ୍କ ଦ୍ୱାରା ଲିଖିତ ଓ 'ଆଣ୍ଟିଓକ୍ ରିଭିଉ' ପତ୍ରିକାର ୧୯୫୮ ମସିହାର ବସନ୍ତ ସଂଖ୍ୟାରେ ପ୍ରକାଶିତ 'କ୍ୟାନ ସେଗ୍ରିଗେସନ ସାରଭାଇଭ୍ ଇନ୍ ଆନ୍ ଇଣ୍ଡଷ୍ଟ୍ରିଆଲ ସୋସାଇଟି ?' ପ୍ରବନ୍ଧର ୧୬-୧୭ ପୃଷ୍ଠା ଦେଖ ।

ପରିବର୍ତ୍ତିନ ନମ୍ବରରୁ ଆରମ୍ଭ ହୋଇଥିଲେହେଁ ବିଗତ ପଚିଶବର୍ଷ ମଧ୍ୟରେ ଶିଳ୍ପବିସ୍ତାର ଓ ନଗର ପ୍ରତିଷ୍ଠା ଦେଶର ଅନ୍ୟାନ୍ୟ ଅଂଶ ଅପେକ୍ଷା ଦକ୍ଷିଣାଂଶରେ ଦ୍ରୁତତର ହୋଇଅଛି । ଅନ୍ୟାନ୍ୟ ଫଳମଧ୍ୟରେ ଏହାଦ୍ୱାରା ବହୁସଂଖ୍ୟକ ନିଗ୍ରୋ ଗ୍ରାମାଞ୍ଚଳ ଛାଡ଼ି ଯାଇ ଅଛନ୍ତି ଓ ସେମାନଙ୍କ ମଧ୍ୟରୁ ଅଧିକାଂଶ ଉତ୍ତରାଞ୍ଚଳର ସହର-ମାନଙ୍କରେ ବସବାସ କରିଅଛନ୍ତି । ୧୯୪୦-୧୯୫୦ ମସିହା, ଏହି ଦଶବର୍ଷ ମଧ୍ୟରେ ୧୨୪୫୦୦୦ କୃଷ୍ଣକାୟ ଲୋକ (ସେମାନେ ପ୍ରାୟ ସମସ୍ତେ ନିଗ୍ରୋ) ଉତ୍ତର ଓ ପଶ୍ଚିମାଞ୍ଚଳକୁ ଚାଲି ଯାଇଅଛନ୍ତି । ୧୯୫୦-୧୯୬୦ ମସିହା, ଏହି ଦଶବର୍ଷ ମଧ୍ୟରେ ଆହୁରି ଅଧିକ କୃଷ୍ଣକାୟ ଲୋକ ଗ୍ରାମାଞ୍ଚଳ ତ୍ୟାଗକରି ଯାଇଥିଲେ । ସେମାନଙ୍କର ସଂଖ୍ୟା ଥିଲା ୧୪୫୭୦୦୦ ଅର୍ଥାତ୍ ୧୯୫୦ ମସିହାରେ ଦକ୍ଷିଣାଞ୍ଚଳରେ ଯେତେ କୃଷ୍ଣକାୟ ଲୋକଥିଲେ, ସେମାନଙ୍କ ମଧ୍ୟରୁ ଏକସପ୍ତମାଂଶ ଲୋକ ସେ ଅଞ୍ଚଳ ଛାଡ଼ି ଚାଲିଯାଇଥିଲେ । ଏହା ସଙ୍ଗେ ସଙ୍ଗେ ଦକ୍ଷିଣାଞ୍ଚଳର ସହରମାନଙ୍କରେ କୃଷ୍ଣକାୟ ଲୋକମାନଙ୍କର ସଂଖ୍ୟା ଦ୍ରୁତ ଗତିରେ ବୃଦ୍ଧି ପାଉଅଛି । ପୃଥକ୍କରଣ ବିଲୋପର ପ୍ରକ୍ରିୟା ବୁଝିବାକୁ ହେଲେ ଏହି ଗୁରୁତ୍ୱପୂର୍ଣ୍ଣ ଘଟଣାଟିକୁ ସ୍ମରଣ ରଖିବାକୁ ହେବ ।

ନିଗ୍ରୋ ଭାଗଚାଷୀ ଓ ରୟତ ତାର ଜୀବନର ପ୍ରତ୍ୟେକ ବିଭବରେ ଜମିର ମାଲିକ ଉପରେ ବହୁ ପରିମାଣରେ ନିର୍ଭର କରେ । ଏବେ ସହରର ଶ୍ରମିକ ତାହାର ସ୍ଥାନ ଅଧିକାର କରୁଅଛି । ବର୍ତ୍ତମାନ ସୁଦ୍ଧା ତାହାର କାର୍ଯ୍ୟରେ ଦକ୍ଷତା ଆସିନାହିଁ ଓ ତାହାର ଆୟ ଅତି କମ୍ । କିନ୍ତୁ ତାହାର ରୟତ ଜୀବନ ଓ ସହରର ଶ୍ରମିକ ଜୀବନ ମଧ୍ୟରେ ବିଶେଷ ପ୍ରଭେଦ ଅଛି । ସହରରେ ସେ ଘଣ୍ଟା ଅନୁସାରେ ମଜୁରି ପାଉଅଛି । ସହରରେ ଦକ୍ଷ ଓ ଅର୍ଦ୍ଧଦକ୍ଷ ଶ୍ରମିକମାନଙ୍କର ଚାହିଦା କ୍ରମଶଃ ବୃଦ୍ଧି ପାଉଅଛି ; ଜନମଙ୍ଗଳ କାର୍ଯ୍ୟର ସୁବିଧା ଅଛି ; ସହରର ବଜାରମାନଙ୍କରେ କିଣାବିକାର ସୁବିଧା ଅଛି । ବଜାରରେ ମଣିଷର ଜାତିର ପ୍ରଶ୍ନ ନାହିଁ । ଏହିସବୁ କାରଣରୁ ନିଗ୍ରୋମାନେ ସହରକୁ ଆସିବାକୁ ଇଚ୍ଛୁକ । ଜମିଦାରମାନଙ୍କ ଅପେକ୍ଷା ସହରର ବଣିକ ଓ ଶିଳ୍ପପତିମାନେ ଅଧିକ ଘାତପ୍ରତିଘାତର ସମ୍ମୁଖୀନ ହେଉଅଛନ୍ତି । ବଣିକମାନେ ହୁଏତ ପୃଥକ୍କରଣର ପକ୍ଷପାତୀ ହୋଇ ପାରନ୍ତି ; କିନ୍ତୁ ସେମାନେ ବିହାନ୍ତି ଗ୍ରାହକ । ଶିଳ୍ପପତି ମଧ୍ୟ ନିଜର ଉତ୍ପାଦନ ବୃଦ୍ଧି କରିବାକୁ ଲାଳାୟିତ । କି ପ୍ରକାର ଶ୍ରମିକସମାଜ ନିଯୁକ୍ତ କରିବାକୁ ହେବ, ସେ ବିଷୟରେ କୌଣସି ପ୍ରତିବନ୍ଧକ ସୃଷ୍ଟି ହେଉ, ଏହା ତାହାର ଇଚ୍ଛା ନୁହେଁ ।

# ପୃଥକ୍‌କରଣ ବିଲୋପର ବିରୋଧ

ପୃଥକ୍‌କରଣ ବିଲୋପର ବିରୋଧ ଦିଗରେ ଯେଉଁ ଉତ୍ସାହ ଓ ସାଫଲ୍ୟ ଦେଖା ଯାଉଅଛି, ତାହାକୁ ଉପେକ୍ଷା କରିବା ଏକ ଭ୍ରମ । ପୃଥକ୍‌କରଣର ବିଲୋପ ଦୁଇଟି ଦିଗରୁ ଏକ ସାମାଜିକ ସମସ୍ୟା; ଅର୍ଥାତ୍ ଏହାର ଉପାୟ ଓ ଉଦ୍ଦେଶ୍ୟ ଉଭୟ ବିଷୟରେ ଅନେକ ମତଭେଦ ଅଛି । ଏହି ମତଭେଦ ଅନୁସାରେ ଏହାର ବିରୋଧର ମଧ୍ୟ ପ୍ରକାର ଭେଦ ଦେଖାଯାଏ । ଯେଉଁମାନେ ମନେ କରନ୍ତି ଯେ ପୃଥକ୍‌କରଣ ଏକ ଉତ୍ତମ ବ୍ୟବସ୍ଥା ଓ ସ୍ୱାଙ୍ଗୀକରଣ (ସମ୍ମିଳନ) ମନ୍ଦ, ସେମାନେ ନିଗ୍ରୋ ବାଳକମାନଙ୍କୁ ଶ୍ୱେତାଙ୍ଗ ବିଦ୍ୟାଳୟରେ ଭର୍ତ୍ତି ହେବାରୁ ବା ନିଗ୍ରୋମାନଙ୍କର ଭୋଟର ତାଲିକାଭୁକ୍ତ ହେବାରୁ ବା କୌଣସି ନିଗ୍ରୋକୁ ଶ୍ୱେତାଙ୍ଗବସତି ଅଞ୍ଚଳରେ ଘର କିଣିବା କିମ୍ବା ଘରଭଡ଼ା ନେବାରୁ ବଞ୍ଚିତ କରିବା ପାଇଁ ଯେତେଦୂର ସମ୍ଭବ ଚେଷ୍ଟା କରି ପାରନ୍ତି । ଏହିପରି ବିରୋଧ କରିବାକୁ ଯାଇ କେହି ନରହତ୍ୟା ପର୍ଯ୍ୟନ୍ତ କରିଥାନ୍ତି । ଗତ କେତେବର୍ଷ ମଧ୍ୟରେ ଏକ ଡଜନରୁ ଅଧିକ ଲୋକ ଏହା ଫଳରେ ନିହତ ହୋଇଅଛନ୍ତି । ସମ୍ଭବତଃ ସବୁଠାରୁ ନିର୍ମମ ଉଦାହରଣ ହେଉଛି— ୧୯୬୩ ମସିହାରେ ଆଲ୍‌ବାମାର ବର୍ମିଙ୍ଗହାମରେ ଘଟିଥିବା ଚାରୋଟି ନିଗ୍ରୋ-ବାଳିକାଙ୍କର ହତ୍ୟା । ଏହି ବାଳିକାମାନେ ଗୋଟିଏ ସଣ୍ଡେ ସ୍କୁଲରେ ଥିବା ସମୟରେ ସ୍କୁଲର ଗୀର୍ଜା ଉପରେ ଗୋଟିଏ ବୋମା ପଡ଼ିବାରୁ ସେମାନେ ନିହତ ହୋଇଥିଲେ । ସେମାନଙ୍କ ଛଡ଼ା ଆହୁରି କୋଡ଼ିଏ ଜଣ ଭୟଙ୍କର ଆଘାତ ପାଇଥିଲେ । ଆଉ ଗୋଟିଏ ଧ୍ୱଂସାତ୍ମକ ଘଟଣାର ଉଲ୍ଲେଖ କରାଯାଇ ପାରେ । ଆମେରିକାର ଫେଡେରାଲ୍ କୋର୍ଟ ଆଦେଶ ଦେଲେ ଯେ, ଗୋଟିଏ ନିଗ୍ରୋବାଳକକୁ 'ସେମାନଙ୍କ' ସ୍କୁଲରେ ( ଅର୍ଥାତ୍ ଶ୍ୱେତାଙ୍ଗମାନଙ୍କ ସ୍କୁଲରେ ) ଭର୍ତ୍ତି କରିବାକୁ ହେବ । ସେତେବେଳେ ମିସିସିପି ବିଶ୍ୱବିଦ୍ୟାଳୟର ଛାତ୍ରମାନେ ବାହାରର ଅନେକ ଲୋକଙ୍କ ସଙ୍ଗେ ମିଳି ଏହାର ପ୍ରତିବାଦ ସ୍ୱରୂପ ଗଣ୍ଡଗୋଳ କଲେ । କୋର୍ଟର ଆଦେଶକୁ କାର୍ଯ୍ୟକାରୀ କରିବା ପାଇଁ ଯେଉଁ ରକ୍ଷୀମାନେ ଆସିଥିଲେ, ସେମାନଙ୍କ ଉପରେ ଆକ୍ରମଣ ହେଲା । ପ୍ରତିବାଦକାରୀମାନେ ମୋଟରଗାଡ଼ି ସବୁ ପୋଡ଼ିଦେଲେ ଓ ନୂତନ ନିଗ୍ରୋ ଛାତ୍ରଟିକୁ ବାହାର କରିଦେବା ପାଇଁ ଦାବି କଲେ । ଏହି ଗଣ୍ଡଗୋଳରେ ଦୁଇଜଣଙ୍କ ମୃତ୍ୟୁ ଘଟିଥିଲା ।

ଅନ୍ୟ କେତେକ ଲୋକ ମନେକରନ୍ତି ଯେ ପୃଥକ୍‌କରଣ ବ୍ୟବସ୍ଥା ଉତ୍ତମ କିନ୍ତୁ ସେମାନେ ଏହି ବ୍ୟବସ୍ଥାକୁ ରକ୍ଷା କରିବା ପାଇଁ ଏତେଦୂର ପର୍ଯ୍ୟନ୍ତ ଯିବାପାଇଁ ପ୍ରସ୍ତୁତ ନୁହନ୍ତି । ସେମାନେ କେବଳ ଗଣ୍ଡଗୋଳକାରୀମାନଙ୍କୁ ଜ୍ଞାତସାରରେ ହେଉ ବା ଅଜ୍ଞାତସାରରେ ହେଉ ସାହାଯ୍ୟ ଓ ଉତ୍ସାହ ଦେଇ ପାରନ୍ତି । ଫେଡେରାଲ

ସରକାରଙ୍କର ଏପରି ହସ୍ତକ୍ଷେପ କରିବା ସମ୍ବିଧାନର ବିରୋଧୀ ଓ ଅବୈଧ ବୋଲି ମତ ସୃଷ୍ଟି କରିବାରେ ସେମାନେ ଉତ୍ସାହ ଦେଇ ପାରନ୍ତି । ଉଦାହରଣସ୍ୱରୂପ, ଆଲବାମାର ଗଭର୍ଣ୍ଣର ଓଲେସ ବର୍ମିଙ୍ଗହାମରେ ଘଟିଥିବା ବୋମାବିସ୍ଫୋରଣର ନିନ୍ଦାବାଦ କରିଥିଲେ କିନ୍ତୁ ନର୍ଥ କାରୋଲିନାର ରାଲେରୁ ପ୍ରକାଶିତ ନିଉଜ ଏଣ୍ଡ ଅବଜର୍ଭର ନାମକ ପତ୍ରିକା ଲେଖିଥିଲା, "ଅବଶ୍ୟ ଆଲବାମାର ଗଭର୍ଣ୍ଣର ଜର୍ଜ ଓଏଲେସ ବୋମା ଘଟଣାର ବର୍ଣ୍ଣନା କରି 'ଏହି କରୁଣ ଦୁର୍ଘଟନା ସମଗ୍ର ଆଲବାମା-ବାସୀଙ୍କ ହୃଦୟକୁ ଦୁଃଖାଭିଭୂତ କରିଅଛି' ବୋଲି କହିଅଛନ୍ତି ; କିନ୍ତୁ ଦୁଃଖର କଥା ତାଙ୍କର ଏହି ଉକ୍ତିରେ ଆନ୍ତରିକତା ନାହିଁ । ଗଭର୍ଣ୍ଣର ହେବା ଦିନଠାରୁ ପ୍ରତ୍ୟେକ କାର୍ଯ୍ୟରେ ସେ ଯେକୌଣସି ପରିବର୍ତ୍ତନକୁ ଅନ୍ଧଭାବରେ ପ୍ରତିରୋଧ କରି ଆସିଅଛନ୍ତି ; ଗୋଷ୍ଠୀଗତ ବିଦ୍ୱେଷ ଓ ଘୃଣାକୁ ଯଥେଚ୍ଛା ଗଢି କରିବାକୁ ଉତ୍ସାହ ଦେଇ ଆସିଅଛନ୍ତି ।" ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ କେବଳ ବର୍ମିଙ୍ଗହାମରେ ନିଗ୍ରୋ-ମାନଙ୍କ ଘର ଉପରେ ପଚିଶ ଥର ବୋମା ନିକ୍ଷେପ କରାଯାଇଅଛି ; କିନ୍ତୁ ଏହି ଅପରାଧମାନଙ୍କରୁ ଗୋଟିଏ ସୁଦ୍ଧା ଧରା ପଡ଼ିନାହିଁ[୪] ।

ବିରୋଧର ସବୁ କ୍ଷେତ୍ରରେ ଯେ ହିଂସାତ୍ମକ କାଣ୍ଡ ଘଟେ, ତାହା ନୁହେଁ । କେତେକ ଅଞ୍ଚଳରେ ସରକାରୀ କର୍ମଚାରୀମାନେ 'ସ୍ୱାଙ୍ଗୀକୃତ' (ସମ୍ମିଳିତ) ସ୍କୁଲ ଚଲାଇବା ପରିବର୍ତ୍ତେ ସ୍କୁଲଗୁଡ଼ିକୁ ବନ୍ଦ କରି ଦେଇଅଛନ୍ତି । ନିଗ୍ରୋମାନେ ଭୋଟର ତାଲିକାଭୁକ୍ତ ହେବାରେ ନାନା ପ୍ରକାର ବିରୋଧ ଦେଖା ଯାଇଅଛି । ତାଲିକାଭୁକ୍ତ ହେବାର ନିୟମ ନିଗ୍ରୋମାନଙ୍କ ପାଇଁ ଭିନ୍ନ କରା ଯାଇଅଛି । କେଉଁଠାରେ ସେମା-ନଙ୍କୁ ଭୟ ପ୍ରଦର୍ଶନ କରା ଯାଇଅଛି ବା ଅନ୍ୟ କେଉଁଠାରେ ସେମାନଙ୍କର ଆର୍ଥିକ କ୍ଷତି କରିବାର ଉଦ୍ୟମ ହୋଇଅଛି[୫] । ଏ ପ୍ରକାର ବିରୋଧର ଫଳସ୍ୱରୂପ ଉଭୟ ଶ୍ୱେତାଙ୍ଗମାନଙ୍କର ଓ ନିଗ୍ରୋମାନଙ୍କର କ୍ଷତି ହୋଇଅଛି । ଯେଉଁଠାରେ ଅଧିକାଂଶ କ୍ଷମତା ପୃଥକ୍‌କରଣର ସମର୍ଥକମାନଙ୍କ ହାତରେ ଅଛି, ସେଠାରେ ଏ ସମର୍ଥନ କରୁଥିବା ନରମପନ୍ଥୀ ଉଦାରପନ୍ଥୀ ଶ୍ୱେତାଙ୍ଗମାନଙ୍କୁ ଉଭୟ ପ୍ରଦର୍ଶନ କରାଯାଇଅଛି କିମ୍ବା ବାସନ୍ଦ କରା ଯାଇଅଛି । ଅନେକ ସ୍ଥଳରେ ସେମାନଙ୍କୁ କ୍ଷମତାରୁ ବିତାଡ଼ିତ କରାଯାଇଅଛି । ଉଦାହରଣ ସ୍ୱରୂପ ମିସିସିପିର ନିଉଇୟର୍କ ଟାଇମସ ପତ୍ରିକାର ସମ୍ବାଦଦାତା ଲେଖିଥିଲେ—

[୪] ୧୯୬୩ ମସିହା ସେପ୍‌ଟେମ୍ବର ୯ ତାରିଖର ଦ ନିଉୟର୍କ ଟାଇମ୍‌ସ ପତ୍ରିକାର ଇ ଆଇ ପୃଷ୍ଠା ଦେଖ ।

[୫] ୧୯୬୨ ମସିହାରେ ଓ୍ୱାଶିଂଟନର ଗଭର୍ଣ୍ଣମେଣ୍ଟ ପ୍ରିଣ୍ଟିଂ ପ୍ରେସରୁ ପ୍ରକାଶିତ "ରିପୋର୍ଟ ଅଫ୍ ଦ ୟୁନାଇଟେଡ ଷ୍ଟେଟ କମିସନ ଅନ ସିଭିଲ ରାଇଟ୍‌ସ୍ ଭଲ୍ୟୁମ୍, ଭୋଟିଙ୍ଗ୍" ଦେଖ ।

"ବିଗତ କେତେ ମାସ ହେଲା ମିସିସିପିର ଯେଉଁ ଶ୍ୱେତାଙ୍ଗ ନେତାମାନେ ସରକାରଙ୍କ ଦୃଢ଼ ପୃଥକ୍‌କରଣ ନୀତିର ସମର୍ଥନ କରୁଥିଲେ, ସେମାନଙ୍କୁ ବିତାଡ଼ିତ କରିବାର ଆନ୍ଦୋଳନ କ୍ରମଶଃ ସଫଳ ହେଉଅଛି ।"

ଅନେକ ବର୍ଷ ହେଲା ଏହି ଆନ୍ଦୋଳନ ଶ୍ୱେତାଙ୍ଗ ନାଗରିକ କାଉନ୍‌ସିଲ୍-ମାନଙ୍କରେ ବିଶେଷ ଭାବରେ ଦୃଷ୍ଟିଗୋଚର ହେଉଥିଲା ; ଗତବର୍ଷର ମିସିସିପି ବିଶ୍ୱବିଦ୍ୟାଳୟର ଗଣ୍ଡଗୋଳ ଦିନୁ ଏହି ଆନ୍ଦୋଳନ ଅଧିକ ଉତ୍ତେଜନା ଲାଭ କରିଅଛି ।

ଅନେକ ଶ୍ୱେତାଙ୍ଗ ନେତା ବାଧ୍ୟ ହୋଇ କିମ୍ବା ବର୍ତ୍ତମାନ ପରିସ୍ଥିତିରେ କୌଣସି କାର୍ଯ୍ୟ କରିବାର ସମ୍ଭାବନା ଦେଖି ନପାରି ରାଜ୍ୟ ତ୍ୟାଗ କରିଅଛନ୍ତି । ଅନ୍ୟମାନେ ରାଜ୍ୟ ମଧ୍ୟରେ ଥିଲେହେଁ ଉତ୍ତେଜନାଶୀଳ ପଦମାନଙ୍କରୁ ବିତାଡ଼ିତ ହୋଇ ଅଛନ୍ତି । କିମ୍ବା ଶତ୍ରୁତାର ସମ୍ମୁଖୀନ ହୋଇ ସ୍ୱତଃ ପଦତ୍ୟାଗ କରି ଅଛନ୍ତି ।

ରାଜନୀତି, ଶିକ୍ଷା ଓ ଧର୍ମ କ୍ଷେତ୍ରରେ ଏହି ଆନ୍ଦୋଳନ ସର୍ବାପେକ୍ଷା ଅଧିକ ପରିଦୃଷ୍ଟ ହେଉଅଛି । ଏହା ଫଳରେ ସରକାରୀ ଓ ବେସରକାରୀ କ୍ଷେତ୍ରରେ 'ସ୍ୱାଙ୍ଗୀକରଣ' (ସମ୍ମିଳନ) ପ୍ରତି ଯେଉଁ ବିରାଟ ପ୍ରତିରୋଧ ଥିଲା ତାହାର ବିରୋଧଭାବ ଦିନକୁଦିନ କମି ଆସୁଅଛି [୭] ।

ସାମାଜିକ ସମସ୍ୟାମାନଙ୍କୁ ସମାଜବିଜ୍ଞାନ ଦୃଷ୍ଟିରୁ ବିଚାର କରିବାକୁ ଗଲା-ବେଳେ ଗୋଟିଏ ପ୍ରଶ୍ନ ପଚାରିବାକୁ ଆଗ୍ରହ ଜନ୍ମେ । ମୂଲ୍ୟ ବୋଧ ବିଷୟରେ ବିରୋଧ ଘଟିଲେ କିଏ କେଉଁ ପକ୍ଷ ଗ୍ରହଣ କରେ ? ଏବଂ ପ୍ରତ୍ୟେକର ସ୍ଥାନ ସହିତ ସମାଜରେ ତାର ଆସନ କିପରି ସମ୍ବନ୍ଧାନ୍ୱିତ ? ପୃଥକ୍‌କରଣବେଲୋପର ବିରୋଧ ସହିତ ସଂଯୁକ୍ତ ଅବସ୍ଥା ସମ୍ପର୍କରେ ଅନେକ ପ୍ରବନ୍ଧ ଲେଖା ଯାଇଅଛି । ଯେଉଁ ଅଞ୍ଚଳରେ ଶିକ୍ଷାରସ୍ତର ନିମ୍ନତମ, ଅର୍ଥନୀତି ନିତାନ୍ତ ଦୁର୍ବଳ, ଲୋକସଂଖ୍ୟା କ୍ରମଶଃ କ୍ଷୟପ୍ରାପ୍ତ ଓ ନିଗ୍ରୋମାନଙ୍କ ସଂଖ୍ୟା ସର୍ବାପେକ୍ଷା ଅଧିକ, ସେହି ଅଞ୍ଚଳମାନଙ୍କରେ ହିଂସାତ୍ମକ କାଣ୍ଡର ମାତ୍ରା ସର୍ବାଧିକ ଏବଂ ରାଜନୈତିକ ବାଦାନୁବାଦ ଓ ରାଜ-ନୈତିକ ବିକଳ୍ପ ଅତି କ୍ଷୀଣ । ଯେଉଁ ଅଞ୍ଚଳରେ ପ୍ରତିବାଦ ବା ପ୍ରତିରୋଧ ସର୍ବାପେକ୍ଷା ବଳଶାଳୀ, ସେହି ଅଞ୍ଚଳରେ ଅନେକ ପରିବର୍ତ୍ତନ ଦେଖାଯାଏ । ଏହି ଅବସ୍ଥାମାନଙ୍କ

[୭] 'ଦ ନିଉ ଇୟର୍କ ଟାଇମ୍' ପତ୍ରିକାର ୧୯୬୩ ମସିହା ନଭେମ୍ବର ୩ ତାରିଖ ସଂଖ୍ୟାଟି ୭୧ପୃଷ୍ଠା ଦେଖ ।

ମଧ୍ୟରୁ ଗୋଟିଏ ରହିଲେ, ଅନ୍ୟଟି ଯେ ରହି ନପାରେ ଏପରି ନୁହେଁ । ଯେଉଁଠାରେ ବିରୋଧ ଶାନ୍ତିଶାଳୀ, ସେଠାରେ ପ୍ରତ୍ୟେକ ପରିସ୍ଥିତିରେ ସବୁ ଅବସ୍ଥା ପ୍ରଯୋଜ୍ୟ ନୁହେଁ ; କିନ୍ତୁ ଏ ପ୍ରକ୍ରିୟାରୁ ଆମ୍ଭେମାନେ ସମ୍ଭବପର ପ୍ରତିରୋଧର ସୂଚନା ପାଇ ପାରିବା [୭] ।

ଯେଉଁମାନେ ଗଣ୍ଡଗୋଳରେ ନେତୃତ୍ୱ ନିଅନ୍ତି ବା ଅଂଶ ଗ୍ରହଣ କରନ୍ତି, ସାଧାରଣତଃ ସେମାନଙ୍କର ଶିକ୍ଷା କମ୍ ଓ ସେମାନଙ୍କର ଆର୍ଥିକ ନିରାପତ୍ତା ନଥାଏ । ଏଥିରୁ କେହି ହଠାତ୍ ଅନୁମାନ କରିପାରେ ଯେ, ଏହି ଶ୍ରେଣୀର ଲୋକେ ସ୍ୱାଙ୍ଗୀକରଣର (ସମ୍ମିଳନର) ବିରୋଧ କରନ୍ତି ଓ ଉଚ୍ଚଶିକ୍ଷିତ, ସଙ୍ଗତି ସମ୍ପନ୍ନ ଲୋକେ ଏହାକୁ ସ୍ୱାଗତ କରନ୍ତି । ଏହା ଆଂଶିକ ସତ୍ୟ ହୋଇପାରେ । କିନ୍ତୁ ଏକଥା ମଧ୍ୟ ଆଂଶିକ ସତ୍ୟ ଯେ ଏ ଦୁଇଟି ମଧ୍ୟରେ ଥିବା ପ୍ରଭେଦ ପ୍ରଣାଳୀ ନେଇ ଯେତେ ବେଶୀ, ଲକ୍ଷ୍ୟ ନେଇ ସେତେ ନୁହେଁ । ମିଷ୍ଟର କାମ୍ବେଲ ଲେଖିଅଛନ୍ତି ଯେ, ଲିଟିଲ୍ ରକ୍‌ରେ ସେଣ୍ଟ୍ରାଲ ହାଇସ୍କୁଲକୁ ପୃଥକ୍‌କରଣ ବିଲୋପର ବିରୋଧ କରି ଯେଉଁ ଧ୍ୱଂସାତ୍ମକ ବ୍ୟାପାରମାନ ଘଟିଲା, ସେଥିରେ ସହରାଞ୍ଚଳର ମଧ୍ୟବିତ୍ତ ଶ୍ରେଣୀ ଯୋଗ ଦେଇ ନଥିଲେ ; କିନ୍ତୁ ସେମାନେ ନିଜର ପିଲାମାନଙ୍କପାଇଁ ସହରର ଏକ ପ୍ରାନ୍ତରେ ଗୋଟିଏ ହାଇସ୍କୁଲ ପ୍ରତିଷ୍ଠା କରିଥିଲେ । ସେଥିରେ ସ୍ୱାଙ୍ଗୀକରଣ (ସମ୍ମିଳନ) ପ୍ରଶ୍ନ ଆଦୌ ଉଠିବାର ସମ୍ଭାବନା ନଥିଲା । ସ୍ୱାଙ୍ଗୀକରଣର (ସମ୍ମିଳନର) ଏଠାରେ ଅର୍ଥ ହେଉଛି, କୃଷ୍ଣକାୟଙ୍କ ସହ ଶ୍ୱେତାଙ୍ଗମାନଙ୍କର ଏକତ୍ର ଅଧ୍ୟୟନ । ଅତଏବ ନରମପନ୍ଥୀ ମଧ୍ୟବିତ୍ତ ସମ୍ପ୍ରଦାୟର ଗଣ୍ଡଗୋଳ କରିବାର ଆବଶ୍ୟକତା ନଥିଲା । ସେମାନଙ୍କୁ ସମାଜ ପଦ୍ଧତି ବିଷୟ ଜଣାଥିଲା ଏବଂ କୌଣସି ସିଦ୍ଧାନ୍ତ ଗ୍ରହଣ କରିବାର ଉପାୟ ମଧ୍ୟ ଜଣାଥିଲା । ତେଣୁ ସେମାନେ ନିଜର ଉଦ୍ଦେଶ୍ୟ ସିଦ୍ଧି ନିମନ୍ତେ ବୈକଳ୍ପିକ ପନ୍ଥା ବାହାର କରି ପାରିଥିଲେ [୮] ।

---

[୭] 'ସୋସିଆଲ ପ୍ରୋବ୍ଲେମ୍‌ସ' ପତ୍ରିକାର ୧୯୬୨ ମସିହା ଗ୍ରୀଷ୍ମକାଳୀନ ସଂଖ୍ୟାର ୮୪-୯୪ପୃଷ୍ଠାରେ ପ୍ରକାଶିତ ଓ୍ୱାରେନ ବ୍ରିଡ୍‌ଙ୍କର ଗ୍ରୁପ୍ ଷ୍ଟ୍ରାକ୍‌ଚର ଏଣ୍ଡ ରେସିଷ୍ଟେନ୍‌ସ ଟୁ ଡେଜଗ୍ରେଗେସନ୍' ପ୍ରବନ୍ଧ ; ଜର୍ଣ୍ଣାଲ ଅଫ୍ ସୋସିଆଲ ଇସୁଜ୍ ପତ୍ରିକାର ୧୯୫୯ ମସିହା ୧୫ଶ ବର୍ଷ ୪ର୍ଥ ସଂଖ୍ୟାର ୬୧-୭୧ପୃଷ୍ଠାରେ ପ୍ରକାଶିତ 'ଦ ଡେମୋଗ୍ରାଫି ଅଫ୍ ଡେଜଗ୍ରେଗେସନ୍' ପ୍ରବନ୍ଧ ; ଏବଂ ୧୯୫୮ ମସିହାରେ ପ୍ରିନ୍‌ସଟନ ଇଉନିଭରସିଟି ଦ୍ୱାରା ପ୍ରକାଶିତ ମେଲଭିନ୍ ଏମ୍. ଟୁମିନ୍‌ଙ୍କର ଡେଜଗ୍ରେଗେସନ୍, ରେସିଷ୍ଟେନ୍‌ସ ଏଣ୍ଡ ରେଡ଼ିନେସ୍ ପ୍ରବନ୍ଧ ଦେଖ ।

[୮] ଫାଇଲନ ପତ୍ରିକାର ୧୯୬୧ ମସିହା ଗ୍ରୀଷ୍ମକାଳୀନ ସଂଖ୍ୟାର ୧୩୫-୧୪୫ ପୃଷ୍ଠାରେ ପ୍ରକାଶିତ ଅର୍ଣ୍ଣେଷ୍ଟ କାମ୍ବେଲ୍‌ଙ୍କ ଲିଖିତ 'ଅନ୍ ଡେଜଗ୍ରେଗେସନ୍ ଏଣ୍ଡ ମ୍ୟାଟାରସ୍ ସୋସିଓଲଜିକଲ୍' ପ୍ରବନ୍ଧ ଦେଖ ।

ସାମାଜିକ ସମସ୍ୟା ଭାବରେ ପୃଥକ୍‌କରଣ କେବଳ ଆମେରିକାର ଦକ୍ଷିଣାଞ୍ଚଳରେ ସୀମାବଦ୍ଧ ନୁହେଁ । ଅବଶ୍ୟ ଉତ୍ତର ଓ ପଶ୍ଚିମ ଆମେରିକାରେ ସ୍ୱାଙ୍ଗୀକରଣ (ସମ୍ମିଳନ) ଦଗରେ ଅଧିକ ସମର୍ଥନ ଦେଖିବାକୁ ମିଳେ ; କିନ୍ତୁ ସେଥିପାଇଁ ଦକ୍ଷିଣାଞ୍ଚଳର ପୃଥକ୍‌କରଣକୁ ବାହୁଲ୍ୟ କରି ବର୍ଣ୍ଣନା କରିବା ଉଚିତ ନୁହେଁ । ଅନ୍ୟତ୍ର ଖୁବ୍ କମ୍ ଅନୁଷ୍ଠାନ କ୍ଷେତ୍ରରେ ପୃଥକ୍‌କରଣ ଏକ ସମସ୍ୟାରୂପେ ପରିଗଣିତ ହୁଏ । ଉଦାହରଣ ସ୍ୱରୂପ ଭୋଟ ଦେବାରେ ଓ ସର୍ବସାଧାରଣ ସୁବିଧାର ସୁଯୋଗ ନେବାରେ ପ୍ରତିବନ୍ଧକ କେବଳ ଦକ୍ଷିଣାଞ୍ଚଳରେ ବିଶେଷ ଭାବରେ ପରିଲକ୍ଷିତ ହୁଏ । ପୃଥକ୍‌କରଣର ବିରୋଧ ଏହାର ଆଭିମୁଖ୍ୟ ଅପେକ୍ଷା ଏହାର ଉପାୟ ଓ ପରିବର୍ତ୍ତନର ବେଗ ଉପରେ ଅଧିକ ନିର୍ଭର କରେ ଆଉ ଗୋଟିଏ ପ୍ରଭେଦ ମଧ୍ୟ ଲକ୍ଷ୍ୟ କରାଯାଇପାରେ । ଦକ୍ଷିଣାଞ୍ଚଳକୁ ଛାଡ଼ି ଦେଲେ ଆମେରିକାର ଅନ୍ୟାନ୍ୟ ଅଂଶରେ ସମସ୍ତ ବଡ଼ ବଡ଼ ନେତା ପୃଥକ୍‌କରଣ ବିଲୋପର ପକ୍ଷପାତୀ । ସରକାରୀ ନୀତିରେ ଓ ଆଇନମାନଙ୍କରେ ଏହାର ସମର୍ଥନ କରାଯାଏ । ଉଦାହରଣ ସ୍ୱରୂପ ମିସିସିପି ଓ ନ୍ୟୁୟର୍କର କଲେଜ ପ୍ରେସିଡେଣ୍ଟ, ଗଭର୍ଣ୍ଣର, ଟ୍ରେଡ଼ ୟୁନିୟନ କର୍ମୀ ଓ ସ୍ଥାନୀୟ ଧର୍ମଯାଜକମାନଙ୍କର ମତ ସଂଗ୍ରହ କଲେ ଏହି ପ୍ରଭେଦ ସ୍ପଷ୍ଟ ଜଣାଯିବ ।

ତଥାପି ଉତ୍ତର ଓ ପଶ୍ଚିମାଞ୍ଚଳରେ ପୃଥକ୍‌କରଣର ବିଲୋପ କେବଳ ପ୍ରଣାଳୀଗତ ସମସ୍ୟା ନୁହେଁ । ଗୋଟିଏ ସର୍ବସମ୍ମତ ଲକ୍ଷ୍ୟ ସାଧନ ପାଇଁ ଶ୍ରେଷ୍ଠ ଉପାୟ ବାହାର କରିବା ପ୍ରକୃତ ସମସ୍ୟା ନୁହେଁ । ଏଥିରେ ମୂଲ୍ୟବୋଧ ଜନିତ ବିରୋଧ ନିହିତ ରହିଅଛି । ଏହାହିଁ ହେଉଛି ସାମାଜିକ ସମସ୍ୟାର ମୂଳପିଣ୍ଡ । ସମସ୍ୟାର କେନ୍ଦ୍ରସ୍ଥଳ ଅଧିକାର କରୁଛି ତିନୋଟି ପରସ୍ପର ସଂପୃକ୍ତ ଓ ପରସ୍ପର ନିର୍ଭରଶୀଳ ତିନୋଟି ବିଷୟ—ଗୃହଯୋଗାଣ, ଚାକିରି ଓ ଶିକ୍ଷାଳୟ । ଗତ ଦଶବର୍ଷ ମଧ୍ୟରେ ଲକ୍ଷ ଲକ୍ଷ ପରିବାର ବହୁ କଷ୍ଟ ସହ୍ୟ କରି କ୍ରମଶଃ ଅଧୋଗତି ଲାଭ କରୁଥିବା ସହରାଞ୍ଚଳ ତ୍ୟାଗ କରି ଅନ୍ୟତ୍ର ଚାଲି ଯାଉଅଛନ୍ତି । ସେମାନେ ଯେତେବେଳେ ଘର କିଣିଥିଲେ ସେତେବେଳେ ସେଇଟି ସହରର ଗୋଟିଏ ସାଧାରଣ ଭଦ୍ର ପରିବାରର ଉପଯୋଗୀ ଅଂଶରେ ଅବସ୍ଥିତ ଥିଲା କିମ୍ବା ସେମାନେ ନିଜର ଗୋରୁଗାଈଙ୍କ ପାଇଁ ଅଧିକ ଚରି ପାଇବା ପାଇଁ ଓ ପିଲାମାନଙ୍କ ଶିକ୍ଷାର ସୁବିଧା ପାଇଁ ସହରତଳି ଅଞ୍ଚଳକୁ ଚାଲି ଯାଇଥିଲେ । ଏହାଦ୍ୱାରା ପ୍ରତିଷ୍ଠିତ ସମାଜରେ ଯେଉଁ ସାମାଜିକ ମର୍ଯ୍ୟାଦାର ସ୍ଥାନ ଏତେ ଗୁରୁତ୍ୱପୂର୍ଣ୍ଣ, ସେହି ସାମାଜିକ ମର୍ଯ୍ୟାଦାକୁ ସେମାନେ କିଛି ପାଇ ପାରିଲେ ; କିନ୍ତୁ ଏହା ଅତି ସାମାନ୍ୟ । ପୁଣି ଏହି କ୍ଷଣିକ ମର୍ଯ୍ୟାଦା କେତେଦୂର ନିରାପଦ, ତାହା ମଧ୍ୟ ସନ୍ଦେହଜନକ । ସେମାନଙ୍କ ପ୍ରତିବେଶୀମାନଙ୍କ ମଧ୍ୟରେ ପୃଥକ୍‌କରଣର ବିଲୋପ ଘଟିଲେ ସେମାନଙ୍କର ଯେଉଁ

ସାମାନ୍ୟ ମର୍ଯ୍ୟାଦା ଅଛି, ତାହା ମଧ୍ୟ ବିପନ୍ନ ହେବ । ତେଣୁ ସେମାନେ ପୃଥକ୍-କରଣର ବିଲୋପ ଗ୍ରହଣୀୟ ନାହିଁ । ସେମାନେ ଦାର୍ଶନିକ ଭଳି ପୃଥକ୍‌କରଣର ସଂଖ୍ୟାଲଘୁ ସମ୍ପ୍ରଦାୟ ଉପରେ ତଥା ସମଗ୍ର ସମାଜ ଉପରେ କି ମନ୍ଦଫଳ ଘଟୁଅଛି, ତାହା ଉପଲବ୍ଧି କରିବେ ବୋଲି ଆଶା କରାଯାଏ ନାହିଁ । ପରବର୍ତ୍ତୀ ଅଧ୍ୟାୟରେ ଆମେ ଦେଖି ପାରିବା ଯେ ଏ ଶ୍ରେଣୀର ଲୋକଙ୍କ କାର୍ଯ୍ୟ ପରିବର୍ତ୍ତନ କରିବାକୁ ହେଲେ ଆମ୍ଭମାନଙ୍କୁ ଗଠନମୂଳକ ଅବସ୍ଥା (ଯଥା—ନିରାପତ୍ତାର ଅଭାବର କାରଣ ଓ ଉପଯୁକ୍ତ ସମ୍ବାଦ) ପ୍ରତି ଅଧିକ ଦୃଷ୍ଟି ଦେବାକୁ ହେବ । ସେମାନଙ୍କର ମନୋବୃତ୍ତି ପ୍ରତି ସେତେ ଦୃଷ୍ଟି ଦେବାର ପ୍ରୟୋଜନ ନାହିଁ ; କାରଣ ମନୋବୃତ୍ତି ବା ଦୃଷ୍ଟିଭଙ୍ଗୀ କେବଳ ସେହି ଅବସ୍ଥାମାନଙ୍କର ପରିଣତି ମାତ୍ର ।

ଯଦି ପ୍ରତିବେଶୀମାନଙ୍କ ମଧ୍ୟରୁ ଶତକଡ଼ା ପାଞ୍ଚଦଶ ଜଣ ଏପରିକି କୋଡ଼ିଏ ଜଣ କୃଷ୍ଣକାୟ ହୁଅନ୍ତି, ତେବେ କେତେକ ବିରୋଧୀ ଶ୍ୱେତାଙ୍ଗ ଅସନ୍ତୋଷ ପ୍ରକାଶ କରି ନ ପାରନ୍ତି ; କିନ୍ତୁ ସେମାନେ ଦେଖୁଛନ୍ତି ଯେ ଅଳ୍ପ କେତେବର୍ଷ ଭିତରେ ପ୍ରତିବେଶୀମାନଙ୍କ ମଧ୍ୟରେ ବିରାଟ ପରିବର୍ତ୍ତନ ଘଟି ଯାଇଅଛି । (ବିଂଶ ଶତାବ୍ଦୀର ମଧ୍ୟଭାଗରେ ମାର୍କିନ ଯୁକ୍ତରାଷ୍ଟ୍ରର ସ୍ୱତନ୍ତ୍ର ଆର୍ଥିକ ଅବସ୍ଥା, ଗୃହ ନିର୍ମାଣ ବ୍ୟବସ୍ଥା ଓ ଜନସଂଖ୍ୟାର ବୃଦ୍ଧି ବିଷୟ ବିଚାର କଲେ ଏପରି ଘଟିବା ଅସାଧାରଣ ନୁହେଁ) । ଏଥିରୁ ସେମାନେ ଗୋଟିଏ ସାର୍ବଜନୀନ ଅଲଙ୍ଘ୍ୟ ନୀତିରେ ଉପନୀତ ହେଉଅଛନ୍ତି । ଏହା ଫଳରେ ସେମାନଙ୍କର ନିଜର ଭବିଷ୍ୟଦ୍‌ବାଣୀ ସ୍ୱତଃ ପ୍ରମାଣିତ ହେବାକୁ ଯାଉଅଛି, କାରଣ ଏପରି ଘଟିବ ବୋଲି ନିଜେ ଭବିଷ୍ୟଦ୍‌ବାଣୀ କରି ସେମାନେ ଆତଙ୍କିତ ହୋଇ ନିଜ ନିଜ ଘର ବିକ୍ରି କରି ଦେଉଅଛନ୍ତି । କେତେକ ଦଲାଲ ଏଥିରେ ସେମାନଙ୍କୁ ଉତ୍ସାହିତ କରି ବେଶ୍ ଦୁଇ ପଇସା ଲାଭ ମାରି ନେଉଅଛନ୍ତି । ଏହା ଫଳରେ ସେମାନଙ୍କର ଆଶଙ୍କାହିଁ ସତ୍ୟରେ ପରିଣତ ହେଉଅଛି । ପ୍ରଶ୍ନଟି ବଡ଼ଜଟିଳ ଓ ପରେ ଆମ୍ଭେମାନେ ଏହାର ବିଶଦ ଆଲୋଚନା କରିବା । ଉତ୍ତର ଓ ପଶ୍ଚିମାଞ୍ଚଳରେ ପୃଥକ୍‌କରଣର ବିଲୋପ ସମ୍ପର୍କରେ ଏହା ସର୍ବାପେକ୍ଷା କଠିନ ଅଂଶ ହୋଇ ଆହୁରି କେତେକ ବର୍ଷ ପର୍ଯ୍ୟନ୍ତ ରହିବ ବୋଲି ଆଶଙ୍କା କରାଯାଏ ।

ଯେଉଁମାନେ କୌଣସି ବ୍ୟବସାୟରେ ନିଯୁକ୍ତ ଅଛନ୍ତି, ସେମାନେ ଚାକିରିଆ ନିଯୁକ୍ତି ବିଷୟରେ ଦୃଢ଼ ନିୟନ୍ତ୍ରଣ ଇଚ୍ଛା କରନ୍ତି । ନିଯୁକ୍ତିରେ ଗୋଷ୍ଠୀଗତ ସ୍ୱାଙ୍ଗୀକରଣର (ସମ୍ମିଳନର) ବିରୋଧ ହେଉଛି ଏହି ଇଚ୍ଛାର ଏକ ପରିପ୍ରକାଶ ମାତ୍ର । କେତେକ ବିଶ୍ୱାସ କରନ୍ତି ଯେ ଡାକ୍ତରମାନଙ୍କ ସଂଖ୍ୟା ବୃଦ୍ଧି ପାଇବା ଉଚିତ । କିନ୍ତୁ ଆମେରିକା ମେଡ଼ିକାଲ ଆସୋସିଏସନ ଏହି ମତର ଘୋର ବିରୋଧୀ ଅଟେ । ଯେଉଁସବୁ କୌଶଳପୂର୍ଣ୍ଣ କାର୍ଯ୍ୟ କରିବା ପାଇଁ ଲୋକର ଅଭାବ, ସେଥିରେ

ମଧ୍ୟ ଲୋକଙ୍କୁ ଶିକ୍ଷା ଦେବାରେ ଭୀଷଣ ଅସନ୍ତୋଷ ରହିଛି । ଏକ ପକ୍ଷରେ ସୁଦୂର ହେଲେହେଁ ଲାଭର ଆଶା ଓ ଅନ୍ୟ ପକ୍ଷରେ ନିଜର ଜୀବିକା ହରାଇବାର ଆଶଙ୍କା ଏହି ଅସନ୍ତୋଷ ଆକାରରେ ପ୍ରକାଶ ପାଉଅଛି । ଯେଉଁସବୁ କର୍ମରେ ସାଧାରଣ ଭାବରେ ବେକାର ସମସ୍ୟା ଦେଖା ଯାଉଅଛି ଓ ସ୍ୱୟଂକ୍ରିୟ ଯନ୍ତ୍ର ପ୍ରଚଳନର ଆଶଙ୍କା ଅଛି, ସେ ସବୁ କ୍ଷେତ୍ରରେ ଆର୍ଥିକ କାରଣରୁ ପୃଥକ୍‌କରଣର ବିଲୋପ ପ୍ରତି ବିରୋଧ-ଭାବ ବିଶେଷ ଭାବରେ ଦେଖାଯାଉଅଛି । ସାମାଜିକ ସମସ୍ୟାମାନଙ୍କର ଅଧ୍ୟୟନ କରିବାକୁ ହେଲେ ଆମ୍ଭମାନଙ୍କୁ ମନେ ରଖିବାକୁ ହେବ, କିପରି ସମାଜରେ କୌଣସି ଲୋକର ଅବସ୍ଥିତି—ଅର୍ଥାତ୍ ତାର ଆସନ, ସେହି ଆସନର ନିରାପତ୍ତା, ତାର ସମ୍ପ୍ରଦାୟର ଲୋକମାନଙ୍କର ସଂସାର ପ୍ରତି ଦୃଷ୍ଟିଭଙ୍ଗୀ, ଜୀବନରେ ତାହାର ଆଶା ଓ ଆଶଙ୍କା—ସଂଖ୍ୟାଲଘୁ ସମ୍ପ୍ରଦାୟମାନଙ୍କ ପ୍ରତି ତାହାର କାର୍ଯ୍ୟାବଳୀକୁ ପ୍ରଭାବିତ କରେ । ପୃଥକ୍‌କରଣ ବିଲୋପର ବିରୋଧ ବ୍ୟକ୍ତିଗତ ବିକାର ନୁହେଁ; ଏହା ହେଉଛି ସମାଜରେ ଘଟୁଥିବା ଗୁପ୍ତ ଓ ପ୍ରଗାଢ଼ ଉଦ୍‌ବେଗର ବହିଃପ୍ରକାଶ । ଏ ମୂଳକ ପ୍ରତି ବିଶେଷ ମନୋଯୋଗ ଦେବା ପ୍ରୟୋଜନ ।



# ପଞ୍ଚମ ଅଧ୍ୟାୟ

## ପୃଥକ୍‌କରଣର ବିଲୋପ
## ସଂଖ୍ୟାଲଘୁ ସଂପ୍ରଦାୟର ଆସନରେ ପରିବର୍ତ୍ତନ

ପୂର୍ବବର୍ତ୍ତୀ ଅଧ୍ୟାୟରେ ଆମ୍ଭେମାନେ ଯେଉଁ ବିଷୟଗୁଡ଼ିକର ଆଲୋଚନା କରୁଅଛୁଁ, ସେଥିରୁ ଅନୁମିତ ହେବ ଯେ କୌଣସି ଗୋଷ୍ଠୀସହୃତ (ଗୋଷ୍ଠୀ ସ୍ୱାଙ୍ଗୀକୃତ) ସମାଜର ବିକାଶ ପଥରେ ସେଗୁଡ଼ିକ ପ୍ରଧାନ ଅନ୍ତରାୟ। ସଂଖ୍ୟାଲଘୁ ସଂପ୍ରଦାୟ ବିଷୟ ଅଧ୍ୟୟନ କଲାବେଳେ ଏ ଗୁଡ଼ିକୁ ଅବହେଳା କରିବା ବା ହେୟ ମନେ କରିବା ଉଚିତ ନୁହେଁ। ସମସାମୟିକ ଘଟନା ବୁଝିବାକୁ ହେଲେ ପରିବର୍ତ୍ତନର ସୂଚନା ପ୍ରତି ଦୃଷ୍ଟି ଦେବାକୁ ହେବ। ବଳିଷ୍ଠ ପ୍ରଭାବ ପ୍ରତିଷ୍ଠିତ ଅନୁଷ୍ଠାନ ମାନଙ୍କର ପ୍ରକାର ରକ୍ଷା କରିବାକୁ ଚେଷ୍ଟିତ ହୋଇଥାଏ। ଏଥିରେ ଆଶ୍ଚର୍ଯ୍ୟର ବିଶେଷ କାରଣ ନାହିଁ। ବହୁଳ ପରିବର୍ତ୍ତନ ଯେ ଚାଲିଛି, ତାହା ଲକ୍ଷ୍ୟ କରିବାର କଥା। ଗୋଟିଏ ଦୁଇଟି ଅନୁଷ୍ଠାନରେ ଯେ ପୃଥକ୍‌କରଣର ବିଲୋପ ଆରମ୍ଭ ହୋଇଅଛି, ତାହା ନୁହେଁ ; ବରଂ ଜାତୀୟ ଜୀବନର ପ୍ରତ୍ୟେକ ବିଭାଗରେ ଏହାର ଆରମ୍ଭ ହୋଇଅଛି। ପରବର୍ତ୍ତୀ କେତେକ ପୃଷ୍ଠାରେ ଏହି ଉନ୍ନତିର କେତେକ ନିଦର୍ଶନ ଦିଆଯିବ। ମାର୍କିନ ଯୁକ୍ତରାଷ୍ଟ୍ର କେତେ ପରିମାଣରେ ଗୋଟିଏ ସଂହୃତ (ବା ସ୍ୱାଙ୍ଗୀକୃତ) ସମାଜ ହେବାକୁ ଯାଉଅଛି ତାହା ସେଥିରୁ ବୁଝିହେବ।

## ବିଚାରବିଭାଗୀୟ ଓ ଆଇନଗତ ପରିବର୍ତ୍ତନ

ପୃଥକ୍‌କରଣର ବିଲୋପ ଦିଗରେ ଯେଉଁ ପ୍ରଭାବ ଗୁଡ଼ିକ ବିଶେଷ ବଳିଷ୍ଠ ସେ ଗୁଡ଼ିକ ମଧ୍ୟରେ ସୁପ୍ରିମକୋର୍ଟର ସିଦ୍ଧାନ୍ତ, ସ୍ଥାନୀୟ ଆଇନ, ରାଜ୍ୟ ଆଇନ ଓ ଫେଡେରାଲ (କେନ୍ଦ୍ରୀୟ) ଆଇନମାନ ଅନ୍ତର୍ଗତ। ଏସବୁ ଦ୍ୱାରା ପୃଥକ୍‌କରଣର ଆଇନଗତ ଭିତ୍ତି ଦୁର୍ବଳ ହୋଇ ପଡ଼ୁଅଛି। ଏ ସବୁର ପୂର୍ଣ୍ଣାଙ୍ଗ ତାଲିକା ନଦେଇ

ମୁଁ କେବଳ ଆଇନଗତ ପରିବର୍ତ୍ତନର ପରିସର ଦର୍ଶାଇ ଏ ସମ୍ପର୍କରେ କେତେଗୁଡ଼ିଏ ଅଦାଲତର ସିଦ୍ଧାନ୍ତ ଓ ଆଇନର ଉଲ୍ଲେଖ କରୁଅଛି । ୧୯୧୫ ମସିହାରେ ସୁପ୍ରିମକୋର୍ଟ ରାୟ ଦେଇଥିଲେ ଯେ ରାଜ୍ୟ ସମ୍ବିଧାନ ବା ନିୟମମାନଙ୍କରେ ଯେଉଁ ସବୁ ଉପଧାରା ଅଛି, ସେ ସବୁ ନିଗ୍ରୋମାନଙ୍କୁ ଭୋଟଦେବା ଅଧିକାରରୁ ବଞ୍ଚିତ କରିବା ଉଦ୍ଦେଶ୍ୟରେ କରା ଯାଇଥିବା ସୁସ୍ପଷ୍ଟ । ସେ ସବୁ ଯୁକ୍ତରାଷ୍ଟ୍ରର ସମ୍ବିଧାନର ବିରୋଧୀ । ଯେଉଁ ସବୁ ଆଇନ ଦ୍ୱାରା ବାସଗୃହ ସମ୍ବନ୍ଧରେ ପୃଥକ୍‌କରଣର ବ୍ୟବସ୍ଥା ହୋଇଥିଲା, ସେ ସବୁ ଆଇନ ଅସିଦ୍ଧ କରାଯାଇଥିଲା ଏବଂ ୧୯୪୮ ମସିହାରେ ଅଦାଲତ ଆଦେଶ ଦେଇଥିଲେ ଯେ ଯେଉଁ ସବୁ ନିଷେଧ ମୂଳକ ଘରୋଇ ଚୁକ୍ତିପତ୍ର ଦ୍ୱାରା କେତେକ ଅଞ୍ଚଳ ପୃଥକ୍ କରି ରଖା ଯାଉଥିଲା, ସେ ପ୍ରକାର ଚୁକ୍ତିପତ୍ର ଅଦାଲତରେ ଗ୍ରହଣୀୟ ହେବନାହିଁ । ନିଗ୍ରୋମାନଙ୍କୁ ଭୋଟ ଅଧିକାରରୁ ବଞ୍ଚିତ କରିବା ପାଇଁ 'ପ୍ରଥମେ ଶ୍ୱେତାଙ୍ଗମାନେ' ବୋଲି ଯେଉଁ କୌଶଳ ପ୍ରୟୋଗ କରାଯାଉଥିଲା ତାହା ୧୯୪୪ ମସିହାରେ ସୁପ୍ରିମକୋର୍ଟ ଦ୍ୱାରା ଅସିଦ୍ଧ କରାଗଲା । ସ୍କୁଲମାନଙ୍କରେ ପୃଥକ୍‌କରଣର ବିଲୋପ ପାଇଁ ୧୯୩୮ ମସିହାଠାରୁ ଉଦ୍ୟମ ହୋଇ ଆସୁଅଛି ; ୧୯୫୪ ମସିହାରେ ସୁପ୍ରିମକୋର୍ଟ ରାୟ ଦେଲେ ଯେ କୌଣସି ସାଧାରଣ ଶିକ୍ଷାନୁଷ୍ଠାନରେ ପୃଥକ୍‌କରଣ ବେଆଇନ ଅଟେ । ୧୯୪୬ ମସିହାରେ ଆନ୍ତଃରାଜ୍ୟ ଭ୍ରମଣରେ ପୃଥକ୍‌କରଣ ନିଷିଦ୍ଧ କରାଗଲା ଏବଂ ୧୯୫୫ ମସିହାରେ ଅଦାଲତ ଆଦେଶ ଦେଲେ ଯେ ସର୍ବସାଧାରଣ ଆମୋଦ-ପ୍ରମୋଦ ସ୍ଥଳରେ ପୃଥକ୍‌କରଣ ନିଷିଦ୍ଧ । ଫେଡ଼ରାଲ ନିର୍ବାଚନରେ ଭୋଟ ଅଧିକାର ପାଇଁ ଯେଉଁ ମୁଣ୍ଡକରର ବ୍ୟବସ୍ଥା ଥିଲା ତାହା ଉଠାଇ ଦିଆଯାଇ ୧୯୬୩ ମସିହାରେ ସମ୍ବିଧାନ ସଂଶୋଧନ କରାଯାଇଥିଲା ।

ଯେଉଁ ସବୁ ଆଗ୍ରହ ବିଗ୍ରହର ବିରୋଧରେ ଏପ୍ରକାରର ସିଦ୍ଧାନ୍ତଗୁଡ଼ିକ ଗ୍ରହଣ କରା ଯାଇଥିଲା ସେ ସବୁ ଯେ ସଙ୍ଗେ ସଙ୍ଗେ ପରିବର୍ତ୍ତିତ ହୋଇ ଯାଇଥିଲା, ତାହା ନୁହେଁ । ଏହି ସିଦ୍ଧାନ୍ତ ଗୁଡ଼ିକ କେତେଦୂର ପ୍ରତିପାଳିତ ହୋଇଥିଲା, ତାହାର କେତୋଟି ଉଦାହରଣ ନିମ୍ନରେ ଦିଆ ଯାଉଅଛି ।

୧୮୯୬ ମସିହାର ପ୍ଲେସି ଭି. ଫର୍ଗୁସନଙ୍କ ମକଦ୍ଦମାର ଅନୁସାରେ "ପୃଥକ କିନ୍ତୁ ସମାନ" ନୀତିକୁ ଆଇନ ଦୃଷ୍ଟିରୁ ଗ୍ରହଣୀୟ ବୋଲି ସ୍ଥିର କରାଯାଇଥିଲା । ସୁପ୍ରିମକୋର୍ଟର ସିଦ୍ଧାନ୍ତ ଗୁଡ଼ିକ ଏହି ମତରେ ଏକ ଭିନ୍ନ ରୂପ । ଅଦାଲତର ସିଦ୍ଧାନ୍ତକୁ ୧୮୭୬ ମସିହାର ରାଜନୈତିକ ନିଷ୍ପତ୍ତି ସହିତ ସମାନ ବୋଲି କୁହାଯାଇପାରେ । ଏହି ସମୟରେ ପୃଥକ୍‌କରଣ ଓ ଭେଦଭାବ ସମ୍ପର୍କୀୟ ଆଇନ ଓ ଆଚରଣ ପ୍ରତି ସୁପ୍ରିମକୋର୍ଟ ଉଦାସୀନତା ପ୍ରକାଶ କରୁଥିଲେ । ପରବର୍ତ୍ତୀ ପ୍ରାୟ ଷାଠିଏ ବର୍ଷ ମଧ୍ୟରେ କାର୍ଯ୍ୟତଃ ପୃଥକ୍‌କରଣର ଅର୍ଥହେଲା 'ପୃଥକ ଓ ଅସମାନ' ବ୍ୟବହାର ।

କିନ୍ତୁ ୧୯୩୦ ମସିହା ବେଳକୁ ସୁପ୍ରିମକୋର୍ଟର ଏହି ଉଦାସୀନତା ଲୋପପାଇ ଆସିଥିଲା ଏବଂ ଆଉ କୋଡ଼ିଏ ବର୍ଷ ପରେ ଏହା ସମ୍ପୂର୍ଣ୍ଣରୂପେ ଲୋପ ପାଇଥିଲା । ଫର୍ଗୁସନଙ୍କ ମତବାଦ ଦୁଇଟି ସୋପାନ ଦେଇ ସମ୍ପୂର୍ଣ୍ଣ ପରିବର୍ତ୍ତିତ ହୋଇ ଯାଇଥିଲା । ପ୍ରଥମତଃ ଅଦାଲତ ଅଧିକରୁ ଅଧିକ ଜୋର ଦେଲେ ଯେ ଶ୍ୱେତାଙ୍ଗ ଓ କୃଷ୍ଣକାୟଙ୍କ ପାଇଁ ସୁଯୋଗ ପୃଥକ ହେଲେହେଁ ତାହା 'ସମାନ' ହେବ । କିନ୍ତୁ ୧୯୫୪ ମସିହାର ସ୍କୁଲ ସମ୍ବନ୍ଧୀୟ ନିଷ୍ପତ୍ତିରେ ଦ୍ୱିତୀୟ ସୋପାନ ଉପସ୍ଥିତ ହେଲା । ପୃଥକକରଣରେ ସୁଯୋଗର ଅସମାନତା ଅନ୍ତର୍ନିହିତ ବୋଲି ଘୋଷଣା କରାଗଲା ।

ଯେଉଁ ସବୁ ସ୍ଥାନୀୟ ଆଇନ, ରାଜ୍ୟ ଆଇନ ଓ ଫେଡ଼େରାଲ ଆଇନ ପୃଥକ-କରଣ ବିଲୋପ ପ୍ରକ୍ରିୟାକୁ ସମର୍ଥନ କରି ପ୍ରଣୟନ କରା ଯାଇଅଛି, ସେମାନଙ୍କ ମଧ୍ୟରେ ନିମ୍ନଲିଖିତ କେତୋଟି ବିଶେଷ ଗୁରୁତ୍ୱପୂର୍ଣ୍ଣ ।

୧୯୪୫ ମସିହାରେ ନିଉୟର୍କଠାରୁ ଆରମ୍ଭ କରି ଏକୋଇଶଟି ରାଜ୍ୟରେ ଏବଂ ୧୯୬୩ ମସିହାରେ ଚାଳିଶଟିରୁ ଅଧିକ ସହରରେ ଚାକିରିରେ ନ୍ୟାୟସଙ୍ଗତ ନିଯୁକ୍ତି ସମ୍ପର୍କରେ ଆଇନ ପ୍ରଣୟନ କରା ଯାଇଥିଲା । ଏହି ଆଇନ ଗୁଡ଼ିକର ପରିସର ଓ ପ୍ରୟୋଗ ନିମନ୍ତେ କ୍ଷମତା ଦିଗରୁ ବିଭିନ୍ନତା ଥିଲେହେଁ ଏ ଗୁଡ଼ିକ ଫଳରେ ସଂଖ୍ୟାଲଘୁ ସମ୍ପ୍ରଦାୟର ଶ୍ରମିକମାନେ ଚାକିରି କ୍ଷେତ୍ରରେ ଯଥେଷ୍ଟ ଅଧିକ ସୁଯୋଗ ପାଇଅଛନ୍ତି । ଏହି ଆଇନଗୁଡ଼ିକ ଯେଉଁ ସବୁ ରାଜ୍ୟ ବା ସହରରେ ପ୍ରଚଳିତ, ସେ ସବୁରେ ସଂଖ୍ୟାଲଘୁ ସମ୍ପ୍ରଦାୟର ପ୍ରାୟ ଅର୍ଦ୍ଧେକ ଲୋକଙ୍କୁ ନେଇ ସମଗ୍ର ଦେଶର ଲୋକସଂଖ୍ୟାର ଶତକଡ଼ା ୬୦ ଭାଗ ଲୋକ ବାସ କରନ୍ତି । ୧୯୫୦ ମସିହାଠାରୁ ୧୭ଟି ରାଜ୍ୟ ଓ ଅନେକ ସହରରେ ନ୍ୟାୟ ସଙ୍ଗତ ବାସଗୃହ ବିଷୟକ ଆଇନମାନ ପ୍ରବର୍ତ୍ତିତ ହୋଇଅଛି । ଏହି ସମସ୍ତ ଆଇନ ସର୍ବସାଧାରଣ ପାଣ୍ଠି ସାହାଯ୍ୟରେ ନିର୍ମିତ ଗୃହ ପ୍ରତି ପ୍ରଯୋଜ୍ୟ । ଅଧିକାଂଶ ଗୃହ ଏହି ପ୍ରଣାଳୀରେ ନିର୍ମିତ । ଏଗାରଟି ନିୟମ ବେସରକାରୀ ଦୋକାନଘର ପ୍ରତି ପ୍ରଯୋଜ୍ୟ । ଏହାଛଡ଼ା ନିଉୟର୍କ, ପିଟସବର୍ଗ ଓ ଅନ୍ୟ କେତେକ ବଡ଼ ସହରରେ ଅନେକ ଘରୋଇ ଗୃହ-ନିର୍ମାଣରେ ଭେଦଭାବ ଉଠାଇ ଦେଇଅଛନ୍ତି । ଫେଡ଼େରାଲ (କେନ୍ଦ୍ର) ସ୍ତରରେ ୧୯୫୭, ୧୯୬୦ ଓ ୧୯୬୪ ମସିହାର ନାଗରିକ ଅଧିକାର ବିଲ୍‌ଗୁଡ଼ିକ ପ୍ରଧାନତଃ ଭୋଟଦେବା ଦରକାର, ସର୍ବସାଧାରଣ ସ୍ଥାନରେ ଚଳପ୍ରଚଳ ଓ ଅର୍ଥନୈତିକ ସୁଯୋଗ ସହିତ ସମ୍ପୃକ୍ତ । ୧୮୭୫ ମସିହାପରେ ନାଗରିକ ଅଧିକାର ସମ୍ବନ୍ଧରେ କଂଗ୍ରେସ ଦ୍ୱାରା ପ୍ରଥମେ ଏହି ବିଲ୍‌ଗୁଡ଼ିକ ପ୍ରଣୟନ କରା ଯାଇଅଛି ।

ଏଥିରୁ ଦେଖାଯିବ ଯେ ମାର୍କିନ ଯୁକ୍ତରାଷ୍ଟ୍ର ସଂଖ୍ୟାଲଘୁ ସମ୍ପ୍ରଦାୟର ଲୋକମାନଙ୍କ ସୁଯୋଗର ଅଭାବ ହ୍ରାସ କରିବା ଦିଗରେ ଅନେକ ଦୃଢ଼ ରାଷ୍ଟ୍ରରାଷ୍ଟ୍ରୀୟ ଓ ଆଇନଗତ ପଦକ୍ଷେପ ଗ୍ରହଣ କରୁଅଛନ୍ତି ।

## ରାଜନୀତି

ଏହିସବୁ ରାଷ୍ଟ୍ରରାଷ୍ଟ୍ରୀୟ ଓ ଆଇନଗତ ପରିବର୍ତ୍ତନ କେତେକ ପରିମାଣରେ ମାର୍କିନ ଯୁକ୍ତରାଷ୍ଟ୍ରରେ ସଂଖ୍ୟାଲଘୁ ସମ୍ପ୍ରଦାୟମାନଙ୍କର ବିଶେଷତଃ ନିଗ୍ରୋମାନଙ୍କର ରାଜନୈତିକ କ୍ଷମତା ବିଷୟରେ ପରିବର୍ତ୍ତନର ଫଳ । ନିଗ୍ରୋମାନେ ଲୋକସଂଖ୍ୟାର ଦଶ ଭାଗର ଏକ ଭାଗରୁ କିଛି ଅଧିକ । ଏହି ପରିବର୍ତ୍ତନ ମଧ୍ୟରେ ତିନୋଟି ହେଉଛି ଗୁରୁତ୍ୱପୂର୍ଣ୍ଣ । (କ) ୧୯୪୪ ମସିହାରେ 'ପ୍ରଥମେ ଶ୍ୱେତାଙ୍ଗମାନେ' ନୀତିର ଦୂରୀକରଣ । ଏହା ଫଳରେ ନିଗ୍ରୋ ଭୋଟରମାନଙ୍କ ସଂଖ୍ୟା ଓ ଭୋଟ ସଂଖ୍ୟା ଦକ୍ଷିଣାଞ୍ଚଳରେ ବୃଦ୍ଧି ପାଇବାରେ ଲାଗିଅଛି । ୧୯୪୪ ମସିହାରେ ଦକ୍ଷିଣାଞ୍ଚଳରେ ପ୍ରାୟ ୨,୫୦୦୦୦ ନିଗ୍ରୋ ଭୋଟର ତାଲିକାରେ ଥିଲେ । ୧୯୬୪ ମସିହା ବେଳକୁ ଏମାନଙ୍କ ସଂଖ୍ୟା ଏହାର ସାତଗୁଣ ହୋଇଯାଇଥିଲା । ଏଠାରେ ଉଲ୍ଲେଖ କରାଯାଇ ପାରେ ଯେ ତଥାପି ଦକ୍ଷିଣାଞ୍ଚଳରେ ଯେତେ ସଂଖ୍ୟକ ନିଗ୍ରୋ ଭୋଟରତାଲିକାଭୁକ୍ତ ହୋଇ ପାରନ୍ତେ, ଏହି ସଂଖ୍ୟା ତାହାର ଶତକଡ଼ା ୩୦ ମାତ୍ର । ଦକ୍ଷିଣାଞ୍ଚଳର ଭୋଟରତାଲିକାଭୁକ୍ତ ଶ୍ୱେତାଙ୍ଗମାନଙ୍କର ସଂଖ୍ୟା ହେଉଛି ଶତକଡ଼ା ଷାଠିଏ । ଆମେରିକାର ଉତ୍ତର ଓ ପଶ୍ଚିମାଞ୍ଚଳରେ ୩୦,୦୦୦୦୦ (ତିରିଶ ଲକ୍ଷ) ନିଗ୍ରୋ ଭୋଟର ତାଲିକାଭୁକ୍ତ ହୋଇଅଛନ୍ତି । ନିଗ୍ରୋମାନଙ୍କୁ ଅଧିକ ଭୋଟ ଅଧିକାର ଦେବା ଫଳରେ ଯେଉଁ ଅଞ୍ଚଳରେ ନିଗ୍ରୋ ଭୋଟରଙ୍କ ସଂଖ୍ୟା ଅଧିକ ସେଠାରେ ନିଗ୍ରୋମାନଙ୍କ ସମର୍ଥନ ପାଇବା ଲାଗି ପ୍ରତିଦ୍ୱନ୍ଦ୍ୱିତା ହେଉଅଛି । ଏଭଳି ଅଞ୍ଚଳମାନଙ୍କରେ ନିଗ୍ରୋମାନଙ୍କର ସୁରକ୍ଷା ପାଇଁ ଉତ୍ତମ ପୋଲିସ ବ୍ୟବସ୍ଥା ହୋଇଅଛି ; ସେମାନଙ୍କ ବିଦ୍ୟାଳୟମାନଙ୍କ ପ୍ରତି ଅଧିକ ଦୃଷ୍ଟି ଦିଆଯାଉଅଛି ଏବଂ ଗୋଷ୍ଠୀଗତ ଆକ୍ରମଣ କମି ଯାଇଅଛି । ସ୍ଥାନୀୟ (ଅନୁଷ୍ଠାନ) ସଂସ୍ଥାମାନଙ୍କରେ ଅନେକ ନିଗ୍ରୋ କର୍ମକର୍ତ୍ତାରୂପେ ନିର୍ବାଚିତ ହୋଇ ପାରିଅଛନ୍ତି । (ଖ) ପରିବର୍ତ୍ତନର ଦ୍ୱିତୀୟ କାରଣ ହେଉଛି ଯେ ଦକ୍ଷିଣାଞ୍ଚଳରେ ମଧ୍ୟବିତ୍ତ ସହରବାସୀ ଶ୍ୱେତାଙ୍ଗମାନଙ୍କର ସଂଖ୍ୟା ଓ ଗୁରୁତ୍ୱ ବୃଦ୍ଧି ପାଇଅଛି । ସେମାନଙ୍କର ରାଜନୈତିକ ସ୍ୱାର୍ଥ ସହିତ ଭୂମ୍ୟଧିକାରୀ ଭଦ୍ରବ୍ୟକ୍ତିମାନଙ୍କ ସ୍ୱାର୍ଥର ଆଦୌ ମେଳ ନାହିଁ । ବିଭିନ୍ନ ଦଳ ମଧ୍ୟରେ ଓ ଗୋଟିଏ ଦଳର ବ୍ୟକ୍ତିମାନଙ୍କ ମଧ୍ୟରେ ପ୍ରତିଦ୍ୱନ୍ଦ୍ୱିତା ବୃଦ୍ଧି ପାଉଅଛି । ଯେଉଁଠାରେ ବିଭିନ୍ନଦଳ ଓ ରାଜନୀତିଜ୍ଞମାନଙ୍କ ମଧ୍ୟରେ ପ୍ରତିଦ୍ୱନ୍ଦ୍ୱିତା ହୁଏ, ସେଠାରେ ପ୍ରତିଦ୍ୱନ୍ଦ୍ୱୀମାନେ ପୂର୍ବରୁ ଅବହେଳିତ ସଂପ୍ରଦାୟମାନଙ୍କର ଭୋଟ ପାଇବାକୁ ଚେଷ୍ଟିତ

ହୁଅନ୍ତି । ଆମେରିକାର ରାଜନୀତିରେ,—ପ୍ରଧାନତଃ ରାଜ୍ୟସ୍ତରରେ ଓ ଦକ୍ଷିଣାଞ୍ଚଳରେ—ସହରର ଭୋଟରମାନେ ନିତାନ୍ତ ଅଳ୍ପ ସଂଖ୍ୟାରେ ପ୍ରତିନିଧିତ୍ୱ କରିଆନ୍ତି । ଗତ କେତେବର୍ଷ ହେଲା ସେମାନେ ଅନୁଭବ କଲେଣି ଯେ ଗୋଟିଏ ଦୃଢ଼ରୂପେ ନିୟନ୍ତ୍ରିତ ଓ ଅଳ୍ପ କେତେଜଣ କ୍ଷମତାଶାଳୀ ଲୋକଙ୍କ ଦ୍ୱାରା ପରିଚାଳିତ ଶାସନ ପଦ୍ଧତିରେ ସେମାନଙ୍କର ବିଶେଷ ଲାଭ ନାହିଁ । ଏହି ଶାସନ ପଦ୍ଧତିର ଗୋଟିଏ ପ୍ରଧାନ ଅଙ୍ଗ ହେଉଛି, ନିଗ୍ରୋମାନଙ୍କୁ ଭୋଟ ଦେବା ଅଧିକାରରୁ ବଞ୍ଚିତ କରି ରଖିବା । ଦକ୍ଷିଣାଞ୍ଚଳର ଅନେକ ଅଂଶରେ ଦେଶର ଅନ୍ୟାନ୍ୟ କେତେକ ଅଞ୍ଚଳ ଭଳି ଦଳଗତ ପ୍ରତିଦ୍ୱନ୍ଦ୍ୱିତା ଅତି ସାମାନ୍ୟ । କିନ୍ତୁ ପ୍ରତ୍ୟେକ ଅଞ୍ଚଳର ଅବସ୍ଥିତି ଓ ଅର୍ଥନୀତିର ପ୍ରକାରଭେଦ ଅନୁସାରେ ପ୍ରତିଦ୍ୱନ୍ଦ୍ୱିତାର ପ୍ରକାରର ମଧ୍ୟ ପରିବର୍ତ୍ତନ ହେଉଅଛି । ୧୯୬୪ ମସିହାରେ ସୁପ୍ରିମକୋର୍ଟ ରାୟ ଦେଇଅଛନ୍ତି ଯେ ଫେଡେରାଲ ନିର୍ବାଚନ ତଥା ରାଜ୍ୟ ବିଧାନସଭାର ନିର୍ବାଚନରେ ନିଶ୍ଚୟ ସମାନ ପ୍ରତିନିଧି ରହିବେ । ଏହି ରାୟର ଫଳାଫଳ ଜାଣିବାକୁ ଆହୁରି କେତେକ ବର୍ଷ ଲାଗିବ । କିନ୍ତୁ ଅନୁମାନ କରାଯାଏ, ଏହା ଦ୍ୱାରା କଂଗ୍ରେସ ଓ ରାଜ୍ୟ ବିଧାନସଭାମାନଙ୍କର ଗଠନରେ ଏପରି କେତେକ ପରିବର୍ତ୍ତନ ଘଟିପାରେ ଯେ ତାହା ଗୋଷ୍ଠୀଗତ ସମ୍ପର୍କ ଦୃଷ୍ଟିରୁ ଗୁରୁତ୍ୱପୂର୍ଣ୍ଣ ହେବ । ନିଗ୍ରୋ ଭୋଟରର ମୂଲ୍ୟ ବୃଦ୍ଧି ପାଇବ ଓ ଭେଦଭାବ ସୃଷ୍ଟିକାରୀ ଶ୍ୱେତାଙ୍ଗ ଭୋଟରର ମୂଲ୍ୟ ଊଣା ହୋଇଯିବ । (ଗ) ମାର୍କିନ ଯୁକ୍ତରାଷ୍ଟ୍ରରେ ସଂଖ୍ୟାଲଘୁ ସଂପ୍ରଦାୟମାନଙ୍କର ରାଜନୈତିକ ଭୂମିକା ଉପରେ ପ୍ରଭାବ ପକାଉଥିବା ଲକ୍ଷଣୀୟ ପରିବର୍ତ୍ତନ ହେଉଛି, ନିଗ୍ରୋମାନଙ୍କର ଉତ୍ତରାଞ୍ଚଳର ସହରମାନଙ୍କୁ ପ୍ରସ୍ଥାନ । ଅନ୍ତତଃ ଆଠଟି ଶିଳ୍ପପ୍ରଧାନ ରାଜ୍ୟରେ କୃଷ୍ଣକାୟ ଭୋଟରମାନେ ଏପରି ସ୍ଥାନ ଅଧିକାର କରିଅଛନ୍ତି ଯେ ସେମାନେ କ୍ଷମତାର ଭାରସାମ୍ୟ ରକ୍ଷାକରିବାକୁ ସମର୍ଥ । ସେମାନଙ୍କ ସ୍ୱାର୍ଥ ପ୍ରତି ଅବହେଳା ପ୍ରଦର୍ଶନର ଅର୍ଥ ରାଜନୈତିକ ପରାଜୟ ବରଣ କରିବା ।

ଏହି ତିନି ପ୍ରକାର ପରିବର୍ତ୍ତନ ଓ ତତ୍ସଙ୍ଗେ ଶିକ୍ଷା ଓ ଅର୍ଥନୀତି କ୍ଷେତ୍ରରେ ସଂଖ୍ୟାଲଘୁ ସମ୍ପ୍ରଦାୟମାନଙ୍କର ଉନ୍ନତି ଫଳରେ ପୃଥକ୍‌କରଣ ବିଲୋପ ପ୍ରକ୍ରିୟା ଉପରେ ରାଜନୈତିକ ଚାପ ପଡୁଅଛି । କୃଷ୍ଣକାୟ ଭୋଟରମାନଙ୍କର ରାଜନୈତିକ କ୍ଷମତା କିପରି ବୃଦ୍ଧି ପାଉଅଛି, ତାହାର କେତେକ ଉଦାହରଣ ଦେଖାଯାଉ । ୧୯୫୬ ମସିହାର ନିର୍ବାଚନରେ ଦକ୍ଷିଣାଞ୍ଚଳର ପାଞ୍ଚୋଟି ରାଜ୍ୟମଧ୍ୟରୁ ଅନ୍ତତଃ ତିନୋଟି ରାଜ୍ୟର ନିଗ୍ରୋମାନଙ୍କ ଭୋଟରେ ପ୍ରେସିଡେଣ୍ଟ ଆଇଜେନହାୱାର ଜୟଲାଭ କରିଥିଲେ ବୋଲି କୁହାଯାଇପାରେ, କାରଣ ଏହି ନିର୍ବାଚନରେ ସେ ୧୯୫୨ ମସିହାର ନିର୍ବାଚନଠାରୁ ଯେତେ ଅଧିକା ଭୋଟ ପାଇଁ ନିର୍ବାଚିତ ହୋଇଥିଲେ, ନିଗ୍ରୋ ଭୋଟରମାନଙ୍କ ସଂଖ୍ୟା ତହିଁରୁ ଅଧିକ ବୃଦ୍ଧି ପାଇଥିଲା । ପ୍ରେସିଡେଣ୍ଟ

ଆଇଜେନ ହାଉଏର ଟେନେସିରେ ପାଖିହଜାର ଅଧିକା ଭୋଟ ପାଇ ଜିଣିଥିଲେ କିନ୍ତୁ କେବଳ ମେମ୍ଫିସରେ ନିଗ୍ରୋମାନେ ରିପବ୍ଲିକାନ ଦଳକୁ କୋଡ଼ିଏ ହଜାର ଭୋଟ ଦେଇଥିଲେ । ୧୯୫୬ ମସିହାର ନିର୍ବାଚନରେ ନିଗ୍ରୋମାନଙ୍କର ଏହି ଦଳପ୍ରତି ଆନୁଗତ୍ୟ ଯୋଗୁଁ ସମଗ୍ର ଦେଶର ନିର୍ବାଚନ ଫଳ ଉପରେ କୌଣସି ପ୍ରଭାବ ପଡ଼ି'ନଥିଲା । କିନ୍ତୁ ୧୯୬୦ ମସିହାର ନିର୍ବାଚନ ବେଳକୁ ଅବସ୍ଥା ବଦଳିଗଲା । ୧୯୫୬ ମସିହାର ନିର୍ବାଚନରେ ରିପବ୍ଲିକାନ ଦଳର ଯେତେ ଭୋଟ ମିଳିଥିଲା ସେଥିର ହାରାହାରି ଶତକଡ଼ା ଆଠଜଣ ଡେମୋକ୍ରାଟିକ ଦଳକୁ ବଦଳି ଥିବାର ଦେଖା ଯାଇଥିଲା । ଏହି ସାମାନ୍ୟ ବୃଦ୍ଧି ଯୋଗେ ପ୍ରେସିଡେଣ୍ଟ କେନେଡ଼ି ନିର୍ବାଚିତ ହୋଇ ପାରିଥିଲେ । ନିଗ୍ରୋ ଭୋଟରମାନଙ୍କ ମଧ୍ୟରେ ଏହି ଦଳ ପରିବର୍ତ୍ତନ ଶତକଡ଼ା ଷୋହଳ ବୋଲି ପରିଲକ୍ଷିତ ହୋଇଥିଲା । ଯଦି ଡେମୋକ୍ରାଟିକ ଦଳ ନିଗ୍ରୋଭୋଟରମାନଙ୍କ ମଧ୍ୟରୁ ଶତକଡ଼ା ଆହୁରି ଆଠଜଣଙ୍କର ଭୋଟ ଅଧିକ ପାଇ ପାରିଥାନ୍ତେ, ତାହାହେଲେ ମିଷ୍ଟର ନିକ୍ସନ ପ୍ରେସିଡେଣ୍ଟ ହୋଇ ପାରିଥାନ୍ତେ । ଟେକ୍ସାସ, ସାଉଥ କାରୋଲିନା, ଇଲିନଇସ, ନିଉଜର୍ସି, ମିସିଗାନ ଓ ଅନ୍ୟ କେତେକ ରାଜ୍ୟରେ ପ୍ରେସିଡେଣ୍ଟ କେନେଡ଼ି ଯେତେ ଅଧିକା ଭୋଟ ପାଇଥିଲେ, ତାହାର ସଂଖ୍ୟା ନିଗ୍ରୋମାନଙ୍କଠାରୁ ପାଇଥିବା ଭୋଟସଂଖ୍ୟାରୁ ଊଣା । ଏହି ଘଟଣାଗୁଡ଼ିକୁ କୌଣସି ଦଳ ଉପେକ୍ଷା କରି ପାରିବେ ନାହିଁ ଓ ଭବିଷ୍ୟତ ନିର୍ବାଚନ ଲଢ଼େଇରେ ଏଗୁଡ଼ିକର ପ୍ରଭାବ ପଡ଼ିବା ସୁନିଶ୍ଚିତ ।

## ସୈନ୍ୟବିଭାଗ

ଆମ୍ଭେମାନେ ପୂର୍ବରୁ ଆଇନଗତ ଓ ରାଜନୈତିକ ପରିବର୍ତ୍ତନ ବିଷୟ ଆଲୋଚନା କରିଅଛୁଁ । ୧୯୫୦ ମସିହାଠାରୁ ସୈନ୍ୟ ବିଭାଗରେ ପୃଥକ୍‌କରଣର ବିଲୋପ ସହିତ ଏହି ପରିବର୍ତ୍ତନର ନିକଟ ସମ୍ପର୍କ ପ୍ରତିଷ୍ଠିତ ହୋଇଅଛି । କେତେକ ସାମାନ୍ୟ ବ୍ୟତିକ୍ରମକୁ ଛାଡ଼ି ଦେଲେ, ଦ୍ୱିତୀୟ ବିଶ୍ୱଯୁଦ୍ଧ ପୂର୍ବରୁ ଓ ଏହି ଯୁଦ୍ଧ ଚାଲି ଥିଲାବେଳେ ସକଳ ପ୍ରକାର ସୈନ୍ୟ ବିଭାଗରେ ଶ୍ୱେତାଙ୍ଗ ଓ କୃଷ୍ଣକାୟ ସୈନ୍ୟ ପୃଥକ୍ ଥିଲେ । ଉଇନଷ୍ଟନ ଚର୍ଚ୍ଚିଲ ପୃଥିବୀର ଅବସ୍ଥା ଅପେକ୍ଷା ଆମେରିକାର ଗୋଷ୍ଠୀଗତ ସମ୍ବନ୍ଧକୁ ଲକ୍ଷ୍ୟ ରଖି ସେ ସମୟକୁ 'ଝଡ଼ର ଆରମ୍ଭ' ବୋଲି କହିଥିଲେ । ନିଗ୍ରୋ ସୈନ୍ୟମାନଙ୍କ ପ୍ରତି ଭେଦଭାବ ସଙ୍କଟ ଜନକ ହୋଇଥିଲା । ଏହାଦ୍ୱାରା ବିରୋଧୀ ଆନ୍ଦୋଳନ କ୍ରିୟାନ୍ୱିତ ହୋଇ ଗୋଟାଏ ଆଭିମୁଖ୍ୟ ଗ୍ରହଣ କରିବାକୁ ସମର୍ଥ ହୋଇଥିଲା । ପୂର୍ବବର୍ତ୍ତୀ ଅବସ୍ଥା ବର୍ଣ୍ଣନା କରିବାକୁ ଯାଇ ଜେମସ୍ ବଲ୍‌ଡଉଇନ କହିଅଛନ୍ତି ।

"ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟରେ ନିଗ୍ରୋମାନଙ୍କ ପ୍ରତି ଯେଉଁ ବ୍ୟବହାର ପ୍ରଦର୍ଶନ କରାଗଲା, ସେଥିରୁ ମୋର ମନେହୁଏ ଯେ, ଏହା ହେଉଛି ନିଗ୍ରୋମାନଙ୍କର ଆମେରିକା ସହିତ ସମ୍ପର୍କର ଏକ ସନ୍ଧିଗଣ ସଂକ୍ଷେପରେ ସରଳ ଭାଷାରେ କହିବାକୁ ଗଲେ, ଗୋଟିଏ ଆଶା ଧ୍ୱଂସ ପାଇ ଯାଇଅଛି ; ଆମେରିକାର ଶ୍ୱେତାଙ୍ଗମାନଙ୍କ ପ୍ରତି ସମ୍ମାନର ହ୍ରାସ ଘଟି ଅଛି । ସେମାନେ ଏବେ ହୁଏତ କୃପାର ପାତ୍ର ଅଥବା ଘୃଣାର ପାତ୍ର । ଯିଏ ଦେଶର ପୋଷାକ ପିନ୍ଧି ଦେଶକୁ ରକ୍ଷା କରିବାପାଇଁ ମରିବାକୁ ପ୍ରସ୍ତୁତ, ଯାହାକୁ ତାହାର ସଙ୍ଗୀ ସୈନ୍ୟମାନେ ଓ ଅଫିସରମାନେ 'ନିଗାର' ବୋଲି କହନ୍ତି, ଯିଏ ଜାଣେ ଯେ ଶ୍ୱେତାଙ୍ଗ ଯୁଦ୍ଧାମାନେ ତାକୁ ନୀଚସ୍ତରର ମନୁଷ୍ୟ ବୋଲି ଇଉରୋପୀୟମାନଙ୍କ ଆଗରେ ଚିତ୍ରଣ କରନ୍ତି, (ଆମେରିକାର ପୁରୁଷ-ମାନଙ୍କ ଯୌନଜୀବନସଂକ୍ରାନ୍ତପାଇଁ ?) ଯିଏ ଶ୍ୱେତାଙ୍ଗମାନଙ୍କ ପାଇଁ ରକ୍ଷିତ ୟୁ. ଏସ୍. ଓ.ରେ ନୃତ୍ୟ କରି ପାରେନାହିଁ ; ଯେଉଁ ହୋଟେଲରେ ଶ୍ୱେତାଙ୍ଗ ସୈନ୍ୟମାନେ ମଦ୍ୟପାନ କରନ୍ତି, ସେଠାରେ ଯେ ମଦ୍ୟପାନ କରି ପାରେନାହିଁ ; ଯିଏ ଜର୍ମାନ ଯୁଦ୍ଧ ବନ୍ଦୀ-ମାନଙ୍କ ପ୍ରତି ଆମେରିକାର ସୈନ୍ୟମାନଙ୍କର ବ୍ୟବହାର ଠିକ୍ ଏ ମାନବୋଚିତ ହେବାକୁ ଦୃଷ୍ଟି ରଖିଥାଏ, ଅଥଚ ସେହି ଆମେରିକାର ସୈନ୍ୟମାନଙ୍କଠାରୁ ସେପରି ମାନବୋଚିତ ବ୍ୟବହାର ପାଇ ନଥାଏ ; ସେହି କୃଷ୍ଣକାୟ ନିଗ୍ରୋର ଚର୍ମରେ ତୁମ୍ଭଙ୍କୁ ଆବୃତ ହେବାକୁ ପଡ଼ିବ ।" [୧]

ଏହି ମନ୍ତବ୍ୟକୁ ପୂର୍ଣ୍ଣ ସତ୍ୟ ବୋଲି ଗ୍ରହଣ କରିନେବା ଉଚିତ ହେବନାହିଁ । ପ୍ରକୃତରେ ଏହାର କେତେକ ବିପରୀତ ଘଟନା ଛାଡ଼ି ଦିଆ ଯାଇଅଛି ଏବଂ ନିଜର ଅଭିମତ ବ୍ୟକ୍ତ କରିବାର ଉଦ୍ୟମ ହୋଇଅଛି । ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ଦଶ ଲକ୍ଷ ନିଗ୍ରୋସୈନ୍ୟ ନିଜ ନିଜ ଘରକୁ ଫେରି ଆସିଲେ । ସେମାନେ ଭେଦଭାବକୁ ମାନିନେବାପାଇଁ ପୂର୍ବପରି ଆଉ ପ୍ରସ୍ତୁତ ନଥିଲେ । ଏହା ବିରୋଧରେ ସଂଗ୍ରାମ ଚଳାଇବା ପାଇଁ ସେମାନେ ଅଧିକ ଦୃଢ଼ତା ଓ କୌଶଳ ପ୍ରୟୋଗ କରିବାକୁ ପ୍ରସ୍ତୁତ ଥିଲେ । ସୈନ୍ୟ ବିଭାଗରେ ପୃଥକ୍‌କରଣ ନୀତିରେ ଯେଉଁ ପରିବର୍ତ୍ତନ ହଠାତ୍ ଦେଖାଗଲା, ଏହି ଦୃଷ୍ଟିରୁ ତାହା ଗୁରୁତ୍ୱପୂର୍ଣ୍ଣ । ପ୍ରେସିଡେଣ୍ଟ ଟ୍ରୁମାନ "ସୈନ୍ୟ-ବିଭାଗରେ ସମାନ ବ୍ୟବହାର ଓ ସମାନ ସୁଯୋଗ" ବିଷୟରେ ନିଯୁକ୍ତ କରିଥିବା କମିଟିର ରିପୋର୍ଟ ପାଇବାମାତ୍ରେ ଆଦେଶ ଦେଲେ ଯେ ସବୁ ସାମରିକ ବିଭାଗରେ ପୃଥକ୍‌କରଣର ବିଲୋପ ନୀତିକୁ ଅତି ଶୀଘ୍ର କାର୍ଯ୍ୟକାରୀ କରାଯିବ । ନିଉୟର୍କ ଟାଇମସ୍ ପତ୍ରିକା ଏ ସମ୍ପର୍କରେ ଲେଖିଥିଲେ, "ସାମରିକ ବିଭାଗମାନଙ୍କରେ

[୧] ନିଉୟର୍କର ଦ ଡାଏଲ ପ୍ରେସରୁ ୧୯୬୩ ମସିହାରେ ପ୍ରକାଶିତ ଜେମସ୍ ବାଲ୍ଡ୍‌ଉଇନଙ୍କର 'ଦ ଫାୟର୍ ନେକ୍ସଟ ଟାଇମ୍' ପୁସ୍ତକର ୬୩ ପୃଷ୍ଠା ଦେଖ ।

ଗୋଷ୍ଠୀଗତ ସଂହତ ହେଉଛନ୍ତି, ବିଂଶ ଶତାବ୍ଦୀର ଗୋଟିଏ ପ୍ରସିଦ୍ଧ ଘଟଣା । ବୋଧହୁଏ ଏହା ଠିକ୍ ଆଗରୁ ହୋଇଗଲା ।" ଏହାର ତିନି ଚାରି ବର୍ଷ ମଧ୍ୟରେ ସାମରିକ ବିଭାଗମାନଙ୍କରେ କୃଷ୍ଣକାୟମାନଙ୍କର ଯେତେ ପ୍ରକାର ପ୍ରତିବନ୍ଧକ ଥିଲା, ସେଥିରୁ ଅଧିକାଂଶ ବିଦୂରିତ ହୋଇ ପାରିଥିଲା ।

ସାମରିକ ଶକ୍ତିର ଚାରିଗୋଟି ବିଭାଗରେ ନିଗ୍ରୋମାନଙ୍କର ସଂଖ୍ୟା ଶତକଡ଼ା କେତେ ଥିଲା, ତାହାର ହିସାବ ନିମ୍ନରେ ଦିଆଗଲା [୨] ।

| | ସ୍ଥଳ ବାହିନୀ | ବିମାନ ବାହିନୀ | ନୌ ବିଭାଗ | ନୌ ସୈନ୍ୟ |
|---|---|---|---|---|
| ଅଫିସର | ୩.୨ | ୧.୨ | ୦.୩ | ୦.୨ |
| ଓ୍ୱାରେଣ୍ଟ ଅଫିସର | ୩.୩ | ୧.୨ | ୦.୩ | ୦.୩ |
| ତାଲିକାଭୁକ୍ତ | ୧୨.୨ | ୯.୨ | ୫.୨ | ୭.୭ |
| ମୋଟ | ୧୧.୧ | ୭.୮ | ୪.୭ | ୭ |

[୨] ଓ୍ୱାଶିଙ୍ଗଟନର ଗଭର୍ଣ୍ଣମେଣ୍ଟ ପ୍ରିଣ୍ଟିଂ ପ୍ରେସରୁ ୧୯୬୩ ମସିହାରେ ପ୍ରକାଶିତ 'ରିପୋର୍ଟ ଅଫ୍ ଦ ୟୁ. ଏସ୍. କମିଶନ ଅନ୍ ସିଭିଲ୍ ରାଇଟ୍ସ୍, ୧୯୬୩'ର ୨୧୮ ପୃଷ୍ଠା । ସାମରିକ ବିଭାଗମାନଙ୍କରେ ସଂହତି (ଇଣ୍ଟିଗ୍ରେସନ୍) ବିଷୟରେ ବିଶଦ ଆଲୋଚନା ଉକ୍ତ କମିସନଙ୍କ ରିପୋର୍ଟର ୧୭୯-୨୨୪ ପୃଷ୍ଠାରେ ଦେଖ ।

6

ନିଗ୍ରୋମାନଙ୍କର ସଂଖ୍ୟା ସମୁଦାୟ ଲୋକସଂଖ୍ୟାର ଶତକଡ଼ା ୧୦.୫ ଅଟେ । ଏହି ଦୃଷ୍ଟିରୁ ବିଚାର କଲେ ସ୍ପଷ୍ଟ ଜଣାଯାଏ ଯେ ଅନୁପାତ ହିସାବରେ ଅଫିସର ଶ୍ରେଣୀରେ ନିଗ୍ରୋମାନଙ୍କ ସଂଖ୍ୟା ଊଣା ; ବିଶେଷତଃ ନୌବିଭାଗ ଓ ସାମୁଦ୍ରିକ ସୈନ୍ୟ ବିଭାଗରେ ସେମାନଙ୍କ ସଂଖ୍ୟା ଖୁବ୍ କମ । ଏଥିରୁ ଅନୁମିତ ହେବ ଯେ ବିଶେଷ ଭାବରେ ସ୍ଥଳବାହିନୀ ଓ ବିମାନବାହିନୀରେ ସେମାନଙ୍କର କୋୖଷ୍ଠିକ୍ତ ଓ ଟ୍ରେନିଂର ଅଭାବ ରହିଅଛି । ସମାନ ବ୍ୟବହାରର ଅଭାବ ସାମାନ୍ୟ ପରିମାଣରେ ଥାଇପାରେ । ୧୯୬୩ ମସିହାରେ ଉପନୋଟିସ୍‌ପୋକ ସାମରିକ ବିଦ୍ୟାଳୟରେ ମାତ୍ର ୩୬ ଜଣ ନିଗ୍ରୋଥିଲେ । ଏଥିରୁ ସ୍ପଷ୍ଟ ଜଣାଯାଏ ଯେ ସେମାନଙ୍କର ଆନୁପାତିକ ସଂଖ୍ୟା ଅତି କମ୍ । ସେହିପରି ନୌବିଭାଗରେ ଓ ସାମୁଦ୍ରିକ ସୈନ୍ୟ ବିଭାଗରେ କାରିଗରକାମ, ଇଲେକ୍‌ଟ୍ରନିକ୍ସ, ମୋଟର ମରାମତି ଏବଂ ଏହିଭଳି ବେସାମରିକ କାର୍ଯ୍ୟରେ ମଧ୍ୟ ନିଗ୍ରୋମାନଙ୍କର ନିଯୁକ୍ତି ଅନୁପାତ ଦୃଷ୍ଟିରେ ଅତି ଅଳ୍ପଥିଲା ।

ସ୍ଥଳ ବାହିନୀରେ ପୃଥକକରଣର ବିଲୋପ ପ୍ରବର୍ତ୍ତିତ ହେବା ସଙ୍ଗେ ଦେଶର ସରକାରୀ କାରଖାନାମାନଙ୍କରେ ବେସାମରିକ ଚାକିରିରେ ଓ ସୈନିକମାନଙ୍କ ସନ୍ତାନମାନଙ୍କ ନିମନ୍ତେ ପ୍ରତିଷ୍ଠିତ ବିଦ୍ୟାଳୟମାନଙ୍କରେ ମଧ୍ୟ ପୃଥକ୍‌କରଣର ଲୋପ ହୋଇଅଛି । ଏହା ଫଳରେ ଅଧିକସଂଖ୍ୟକ ନିଗ୍ରୋ କାରିଗରୀ କାମ ଶିକ୍ଷା କରି ପାରୁଅଛନ୍ତି ; କେତେକ ଅଧିକ ଆୟ କରି ପାରୁଅଛନ୍ତି ଏବଂ ସକଳ ପ୍ରକାର ଚାକିରିରେ ଗୋଷ୍ଠୀଗତ ପ୍ରାଚୀର ଲୋପ ପାଇବାରୁ ନିଗ୍ରୋମାନେ ଅଧିକ ପରିମାଣରେ ସମାନ ବ୍ୟବହାର ପାଇପାରୁଅଛନ୍ତି ।

## ଚାକିରି ଓ ଆୟ

ଏହି ସଂକ୍ଷିପ୍ତ ବିବରଣରେ ମାର୍କିନ ଅର୍ଥନୀତି ପଦ୍ଧତିରେ ସଂଖ୍ୟାଲଘୁ ସମ୍ପ୍ରଦାୟ ସକାଶେ ଯେଉଁ ପରିବର୍ତ୍ତନ ଗୁଡ଼ିକ ଘଟୁଅଛି, କେବଳ ସେହିଗୁଡ଼ିକୁ ମୁଁ ଉଲ୍ଲେଖ କରିବି । ବିଶେଷତଃ ୧୯୪୦ ମସିହାଠାରୁ କୃଷ୍ଣକାୟ ଶ୍ରମିକମାନେ ଯଥେଷ୍ଟ ପରିମାଣରେ ସେମାନଙ୍କ ଆୟବୃଦ୍ଧି କରି ପାରିଛନ୍ତି ଓ ନିଜ କାର୍ଯ୍ୟ-କ୍ଷେତ୍ରରେ ଦକ୍ଷତା ଅର୍ଜି ପାରିଅଛନ୍ତି । ସବୁଠାରେ ଯେ ଲାଭ ସଙ୍ଗେ ପୃଥକ୍‌କରଣ ଲୋପ ପାଇଅଛି, ତାହା ନୁହେଁ, ମାତ୍ର ଗୋରାଙ୍କ ଓ ନିଗ୍ରୋମାନଙ୍କ ମଧ୍ୟରେ ଆୟ ଓ କାର୍ଯ୍ୟ ଦକ୍ଷତାରେ ଯେଉଁ ପ୍ରଭେଦ ଥିଲା, ତାହା ସେତିକ କମି ଆସୁଅଛି । ଭେଦଭାବର ପ୍ରାଚୀର ସେତିକ କମି ଆସୁଥିବାର ଦେଖା ଯାଉଅଛି ।

ଗତ ଏକ ପୁରୁଷ ମଧ୍ୟରେ ଶ୍ୱେତାଙ୍ଗମାନେ ଯେତେ ଘରର ଅଧିକାରୀ ହୋଇ ଅଛନ୍ତି, କୃଷ୍ଣକାୟମାନେ ତାହାର ଦେଢ଼ଗୁଣ ଘରର ଅଧିକାରୀ ହୋଇ ପାରିଛନ୍ତି । ହାଇସ୍କୁଲ ଓ କଲେଜରୁ ଉତ୍ତୀର୍ଣ୍ଣ ହୋଇଥିବା ଛାତ୍ରଛାତ୍ରୀଙ୍କ

ସଂଖ୍ୟାର ବୃଦ୍ଧି ବିଚାର କଲେ ଦେଖାଯାଏ ଯେ, ଅନୁପାତ ଅନୁସାରେ ଏହି ବୃଦ୍ଧିର ପରିମାଣ ଶ୍ୱେତାଙ୍ଗମାନଙ୍କ କ୍ଷେତ୍ରରେ ଯେତେ, କୃଷ୍ଣକାୟମାନଙ୍କ କ୍ଷେତ୍ରରେ ତାହାର ଦ୍ୱିଗୁଣ । ଅବଶ୍ୟ ସଂଖ୍ୟା ଦିଗରୁ କୃଷ୍ଣକାୟ ଶ୍ରମଜୀବୀ କମ୍ ଥିଲେ । ୧୯୩୦ ମସିହାରେ ଗୋଟିଏ ଶ୍ୱେତାଙ୍ଗ ପରିବାରର ହାରାହାରି ଆୟ ୧୦୦ ଧରାଗଲେ ଗୋଟିଏ ନିଗ୍ରୋପରିବାରର ଆୟ ୩୦ ଥିଲା । ପରବର୍ତ୍ତୀ ୨୫ ବର୍ଷ ମଧ୍ୟରେ କୃଷ୍ଣକାୟ ପରିବାରର ଆୟ ପ୍ରତିବର୍ଷ ହାରାହାରି ଶତକଡ଼ା ୧ ବୃଦ୍ଧି ପାଉଥିଲା । ତେଣୁ ୧୯୫୫ ମସିହା ବେଳକୁ ଏହାର ପରିମାଣ ଶ୍ୱେତାଙ୍ଗ ପରିବାର ଆୟର ଶତକଡ଼ା ୫୫ ଥିଲା । ଏହି ସମୟରେ ଆମେରିକାର ଅର୍ଥନୀତିର ପତନ ଘଟିଲା ଏବଂ ବେକାର ସମସ୍ୟା ଦେଖାଦେଲା । ୧୯୫୮ ଓ ୧୯୬୧ ମସିହାର ଅର୍ଥନୈତିକ ଅବନତି ହେତୁରୁ ଏହି ପରିବାରମାନଙ୍କର ଆୟ ଏତେ କମିଗଲା ଯେ ସେମାନେ ଆଉ ସହ୍ୟ କରି ପାରିଲେ ନାହିଁ । ଏହା ଫଳରେ ନିଗ୍ରୋ ଓ ଶ୍ୱେତାଙ୍ଗମାନଙ୍କ ଆୟର ଅନୁପାତରେ ଯେଉଁ ବୃଦ୍ଧି ଦେଖା ଯାଉଥିଲା, ତାହା ବନ୍ଦ ହୋଇଗଲା । ୧୯୬୩ ମସିହାରେ ଏହି ଅନୁପାତ ପୂର୍ବପରି ଶତକଡ଼ା ପ୍ରାୟ ୫୫ ରହିଥିଲା । ଏହି ବର୍ଷଟି 'ଭୀଷଣ ପ୍ରତିବାଦର ବର୍ଷ' ବୋଲି କୁହାଯାଏ । ନିଗ୍ରୋମାନଙ୍କର ଅର୍ଥନୈତିକ ସୁଯୋଗର ଅଭାବ ଯେତେ କମି ଆସୁଥିଲା, ବର୍ତ୍ତମାନ (୧୯୬୩ ମସିହାପରେ) ସେତେ କମୁଁ ନାହିଁ ।

ସୁଦୂର ଭବିଷ୍ୟତ ଦୃଷ୍ଟିରୁ ଦେଖିଲେ ମନେହୁଏ, କାର୍ଯ୍ୟର ପ୍ରକାରରେ ଯେଉଁ ଯେଉଁ ପରିବର୍ତ୍ତନ ଘଟୁଅଛି, ତାହା ହେଉଛି ଅର୍ଥନୈତିକ ଅବସ୍ଥାର ସର୍ବାପେକ୍ଷା ଗୁରୁତ୍ୱପୂର୍ଣ୍ଣ ଦିଗ । ଏବେସୁଦ୍ଧା ଅନେକ ସୁବିଧାର ଉପଭୋଗରୁ ବଞ୍ଚିତ ଥିଲେହେଁ କୃଷ୍ଣକାୟ ଲୋକେ ସହରମାନଙ୍କରେ ପୁରୁଷମାନଙ୍କ ପାଇଁ ଉଦ୍ଦିଷ୍ଟ କାର୍ଯ୍ୟକ୍ଷେତ୍ରରେ ଯଥେଷ୍ଟ ଉନ୍ନତି ଲାଭ କରିଅଛନ୍ତି । ଆମେରିକାର ଅର୍ଥନୀତିରେ ଏହା ଯେ ସେମାନଙ୍କ ସ୍ଥାନର ଶ୍ରେଷ୍ଠ ନିଦର୍ଶନ ଏଥିରେ ସନ୍ଦେହ ନାହିଁ । ୧୯୪୦ ଠାରୁ ୧୯୬୨ ମସିହା ମଧ୍ୟରେ ବ୍ୟବସାୟ, ପରିଚାଳନା, କିରାନିଗିରି, ବିକ୍ରୟ ପ୍ରଭୃତି ଭଦ୍ରୋଚିତ ଚାକିରିରେ ଶ୍ୱେତାଙ୍ଗ ପୁରୁଷମାନଙ୍କ ସଂଖ୍ୟା ଶତକଡ଼ା ୩୦·୩ରୁ ୪୧·୨ ପର୍ଯ୍ୟନ୍ତ ବୃଦ୍ଧି ପାଇଥିବା ସ୍ଥଳେ କୃଷ୍ଣକାୟ ପୁରୁଷମାନଙ୍କ ସଂଖ୍ୟା ଶତକଡ଼ା ୫·୬ରୁ ୧୬·୦ ପର୍ଯ୍ୟନ୍ତ ବୃଦ୍ଧି ପାଇଥିଲା । ସାମୂହିକ ହିସାବରେ ଏହି ପରିବର୍ତ୍ତନ (ଶତକଡ଼ା ୧୦·୪ରୁ ୧୦·୯୬) ସାମାନ୍ୟ ହେଲେହେଁ ତୁଳନାତ୍ମକ ଦୃଷ୍ଟିରୁ କୃଷ୍ଣକାୟମାନଙ୍କର ଉନ୍ନତି ଖୁବ୍ ବେଶି ବୋଲି ସ୍ୱୀକାର କରିବାକୁ ହେବ । ଏହି ୧୨ ବର୍ଷ ମଧ୍ୟରେ କୌଶଳପୂର୍ଣ୍ଣ କାର୍ଯ୍ୟ ଓ ଅର୍ଦ୍ଧ କୌଶଳପୂର୍ଣ୍ଣ କାର୍ଯ୍ୟ କ୍ଷେତ୍ରରେ କୃଷ୍ଣକାୟ ଲୋକେ କ୍ରମାଗତ ଉନ୍ନତି କରି ଆସିଥିଲେ । ଶ୍ୱେତାଙ୍ଗ ଶ୍ରମିକମାନଙ୍କ ସଂଖ୍ୟା ଶତକଡ଼ା ୩୪·୩ରୁ ୩୮·୬କୁ ବୃଦ୍ଧି

ପାଇଥିବା ସ୍ଥଳେ କୃଷ୍ଣକାୟ ଶ୍ରମିକମାନଙ୍କ ସଂଖ୍ୟା ଶତକଡ଼ା ୧୬.୭ରୁ ୩୬.୭କୁ ବୃଦ୍ଧି ପାଇଥିଲା । ଏହି କୃଷ୍ଣକାୟ ଶ୍ରମିକମାନେ ଅଦକ୍ଷ ଓ କୃଷିକାର୍ଯ୍ୟରେ ନିଯୁକ୍ତ ଶ୍ରମିକ ଶ୍ରେଣୀରୁ ଆସିଥିଲେ ; ତେଣୁ ସେମାନେ କୌଶଳପୂର୍ଣ୍ଣ କାର୍ଯ୍ୟରେ ନିଯୁକ୍ତ ହେବା ଦ୍ୱାରା, ସେମାନଙ୍କ ଆର୍ଥିକ ଅବସ୍ଥାର ଯେ ବିଶେଷ ଉନ୍ନତ ଘଟିଥିଲା, ତାହା ଲକ୍ଷ୍ୟ କରିବାର ବିଷୟ[୩] ।

ଅନେକ ସମୟରେ ବେକାର ସମସ୍ୟା ଉପୁଜିଲେ ଶ୍ୱେତାଙ୍ଗ ଶ୍ରମିକମାନଙ୍କ ଅପେକ୍ଷା କୃଷ୍ଣକାୟ ଶ୍ରମିକମାନେ ଅଧିକ ପରିମାଣରେ କଷ୍ଟ ଅନୁଭବ କରନ୍ତି । ହାରାହାରି ଦେଖିବାକୁ ଗଲେ ଏହି ଅବସ୍ଥାରେ ଯେତେ ଶ୍ୱେତାଙ୍ଗ କଷ୍ଟ ଭୋଗ କରନ୍ତି ତାହାର ଦୁଇଗୁଣ କୃଷ୍ଣକାୟ ଲୋକ କଷ୍ଟ ଭୋଗ କରନ୍ତି । ପଟୁତା ଦୃଷ୍ଟିରୁ ସେମାନଙ୍କ କାର୍ଯ୍ୟ ନିମ୍ନ ସ୍ତରର ହୋଇଥିବାରୁ ସ୍ୱୟଂକ୍ରିୟ ଯନ୍ତ୍ରର ପ୍ରଚଳନ ଦ୍ୱାରା ସେମାନେ ଅଧିକ ସଂଖ୍ୟାରେ କର୍ମଚ୍ୟୁତ ହୁଅନ୍ତି । ସେମାନଙ୍କ ଶିକ୍ଷା ଓ କାର୍ଯ୍ୟ-ଦକ୍ଷତାର ବୃଦ୍ଧି ଦିଗରେ ବିଶେଷ ଉଦ୍ୟମ କରି ନଗଲେ ସେମାନଙ୍କର ଏହି ଦୁର୍ଦ୍ଦଶା ଦୂର ହୋଇ ପାରିବ ନାହିଁ । ସେମାନଙ୍କର ବ୍ୟବସାୟିକ ଅବସ୍ଥାର ଉନ୍ନତି ଦିଗରେ ଅନେକ ଶକ୍ତି କାର୍ଯ୍ୟ କରୁଥିବାର ସୂଚନା ମିଳେ । ଏହି ସବୁ ଶକ୍ତିର ଆଲୋଚନା ନକରି ମୁଁ ଅନ୍ୟ କେତୋଟି କଥାର ଅବତାରଣା କରୁଅଛି ; ଯଥା-ନିଗ୍ରୋମାନଙ୍କର ସହରାଞ୍ଚଳରେ ବସବାସ, ଉନ୍ନତ ଧରଣର ଶିକ୍ଷା, ଶ୍ରମିକ ସଂଘ, ରାଜ୍ୟ ଓ ସ୍ଥାନୀୟ ସ୍ତରରେ 'ଚାକିରିରେ ସମତା' ଆଇନ, କେନ୍ଦ୍ରୀୟ (ଫେଡେରାଲ) ବେସାମରିକ ଚାକିରି ଓ ଚୁକ୍ତିପ୍ରଥା ; ଚାକିରିରେ ସମାନ ସୁଯୋଗ ବିଷୟରେ ପ୍ରେସିଡେଣ୍ଟଙ୍କ ଦ୍ୱାରା ନିଯୁକ୍ତ କମିଟିର କାର୍ଯ୍ୟ ଏବଂ ଜାତିର ଉଚ୍ଚ ଅର୍ଥନୈତିକ ଉନ୍ନତି । ସଂଖ୍ୟାଲଘୁ ସମ୍ପ୍ରଦାୟ-ମାନଙ୍କର ଉନ୍ନତିକୁ ରକ୍ଷା କରିବାରେ ଏହି ଶକ୍ତିଗୁଡ଼ିକ ବିଶେଷ ସହାୟକ ହୋଇଅଛି । ଏମାନଙ୍କ ମଧ୍ୟରୁ କେତୋଟିର କିଛି ଫଳ ହୋଇ ନଥାଇପାରେ; କିନ୍ତୁ ଏ ସମସ୍ତଙ୍କର ସମ୍ମିଳିତ ଫଳ ସ୍ୱରୂପ ଆମେରିକାର ଅର୍ଥନୀତିରେ ପୃଥକ୍‌କରଣର ବିଲୋପ ଅଧିକ ହୋଇଅଛି । କାରିଗରି କାର୍ଯ୍ୟକ୍ଷେତ୍ରରେ, ବ୍ୟବସାୟରେ ଓ ସରକାରୀ ଚାକିରିରେ କୃଷ୍ଣକାୟ ଲୋକଙ୍କ ପାଇଁ ଯେଉଁସବୁ ବାଧା ଥିଲା, ସେଥି ମଧ୍ୟରୁ ଅନେକ ୧୯୬୦ ମସିହାର 'ପ୍ରତିବାଦ ଆନ୍ଦୋଳନ' ଫଳରେ ଧ୍ୱଂସ ପାଇଥିବାର ପ୍ରମାଣ ମିଳେ । ଏହି ପରିବର୍ତ୍ତନର ଫଳ ସ୍ୱରୂପ, କେତେସଂଖ୍ୟକ ନିଗ୍ରୋ ଉପକୃତ ହେବେ, ତାହା

---

[୩] ମାର୍କିନଯୁକ୍ତରାଷ୍ଟ୍ରର ଶ୍ରମବିଭାଗରୁ ୧୯୬୬ ମସିହାରେ ପ୍ରକାଶିତ ୩ ନମ୍ବର ଗ୍ରନ୍ଥର ପତ୍ରରେ 'ଦି ଏକନମିକ ସିଚୁଏସନ ଅଫ ନିଗ୍ରୋଜ୍ ଇନ୍ ଦି ଇଉନାଇଟେଡ ଷ୍ଟେଟସ୍' ଦେଖ ।

ସ୍ଥିର କରିବାର ସମୟ ଆସିନାହିଁ ; କିନ୍ତୁ ୧୯୫୫ ଠାରୁ ୧୯୬୩ ମସିହା ମଧ୍ୟରେ ଅବସ୍ଥା ଯାହା ଥିଲା, ତାହାର ଯେ ଉନ୍ନତି ହେବ, ଏପରି ବିଶ୍ୱାସ କରିବାର ଯଥେଷ୍ଟ କାରଣ ଅଛି [୪] ।

## ବାସଗୃହ ଯୋଜନା

କୃଷ୍ଣକାୟ ପରିବାରଗୁଡ଼ିକ ବହୁ ସଂଖ୍ୟାରେ ବସତି ସ୍ଥାପନ କରିବାକୁ ସହରକୁ ଆସିଲେ । ସେମାନଙ୍କର ଅନ୍ୟାନ୍ୟ ଉନ୍ନତି ସଙ୍ଗେ ଆୟର ବୃଦ୍ଧି ହୋଇଅଛି । ଏହି ହେତୁରୁ ବସତି ବିଷୟରେ ପୃଥକ୍‌କରଣ ପ୍ରତି ଦିନକୁ ଦିନ ଅଧିକ ଦୃଷ୍ଟି ଆକୃଷ୍ଟ ହେଉଅଛି । ଅନେକ ଦିଗରୁ ଏହା ଦକ୍ଷିଣାଞ୍ଚଳର ସମସ୍ୟା ନୁହେଁ ବରଂ ଉତ୍ତରାଞ୍ଚଳର ସମସ୍ୟା ; କାରଣ ଉତ୍ତରାଞ୍ଚଳର ବଡ଼ ବଡ଼ ସହରମାନଙ୍କରେ ବହୁସଂଖ୍ୟକ ପୃଥକ୍‌କୃତ ବସତି ଦେଖିବାକୁ ମିଳେ । ଦକ୍ଷିଣାଞ୍ଚଳରେ ନିଗ୍ରୋମାନଙ୍କପାଇଁ ପୃଥକ୍ ସ୍କୁଲ ଥିବାରୁ ଯେଉଁ ଉତ୍ତରାଞ୍ଚଳବାସୀୟାଙ୍କିମାନେ ସମାଲୋଚନା କରିଥାନ୍ତି ସେହିମାନେ ଉତ୍ତରାଞ୍ଚଳର ପୃଥକ୍ ବାସଗୃହ ବ୍ୟବସ୍ଥାକୁ ସମର୍ଥନ କରିଥାନ୍ତି । ଅଥଚ ଗୋଷ୍ଠୀ ସମ୍ପର୍କ ଓ ବ୍ୟକ୍ତିତ୍ୱ ଦୃଷ୍ଟିରୁ ଏ ପ୍ରକାର ବସତି ବ୍ୟବସ୍ଥାର ଫଳ ପୃଥକ୍ ସ୍କୁଲ ବ୍ୟବସ୍ଥାର ଫଳଠାରୁ ଭିନ୍ନ ନୁହେଁ ।

ପରିବର୍ତ୍ତନ ପ୍ରକ୍ରିୟାର ଅନ୍ୟାନ୍ୟ ବିଭାବଠାରୁ ବସତି ବିଷୟରେ ପୃଥକ୍‌କରଣ ବିଲୋପର ଗତି ମନ୍ଥର ହୋଇଅଛି । ଅଧିକାଂଶ ଠିକାଦାର ଓ ଯୋଜନାକାରୀ କେବଳ ଶ୍ୱେତାଙ୍ଗ ପରିବାର ଉଦ୍ଦେଶ୍ୟରେ ଗୃହ ନିର୍ମାଣ କରନ୍ତି । ଅତି ଅଳ୍ପଲୋକ କୃଷ୍ଣକାୟଙ୍କ ଉଦ୍ଦେଶ୍ୟରେ ଗୃହ ନିର୍ମାଣ କରିଥାନ୍ତି । ଖୁବ୍ ଅଳ୍ପ ଲୋକ—ବୋଧହୁଏ ସମଗ୍ର ଦେଶରେ କୋଡ଼ିଏ ପଚିଶ ଜଣ—କୃଷ୍ଣକାୟ ଓ ଶ୍ୱେତାଙ୍ଗ ଉଭୟଙ୍କ ସମ୍ମିଳିତ ବାସପାଇଁ ଗୃହ-ନିର୍ମାଣ କରିଥାନ୍ତି । ସମ୍ମିଳିତ ବସତି ନିର୍ମାଣ ଉଦ୍ଦେଶ୍ୟରେ କେତୋଟି ସର୍ବସାଧାରଣ ଅନୁଷ୍ଠାନ ଅଛି ; କିନ୍ତୁ ଏହି ଅନୁଷ୍ଠାନମାନଙ୍କମଧ୍ୟରୁ କେତେକ ପୃଥକ୍‌କୃତ ଗୃହ-ନିର୍ମାଣର ପକ୍ଷପାତୀ ବୋଲି ମନେ

---

[୪] ନିଉୟର୍କର ହଲମାର୍କ ଏମ୍ପ୍ଲୟମେଣ୍ଟ ଏଜେନ୍‌ସି ଉଚ୍ଚୋଚିତ ବୃତ୍ତିରେ ନିଗ୍ରୋମାନଙ୍କ ନିଯୁକ୍ତି ସମ୍ବନ୍ଧରେ ବିଶେଷଜ୍ଞ । ସେମାନଙ୍କ ରିପୋର୍ଟରୁ ପ୍ରକାଶ ଯେ ୧୯୬୩ ମସିହାର ପ୍ରଥମ ଦୁଇମାସରେ ଯେତେ ନିଗ୍ରୋ ନିଯୁକ୍ତ ହୋଇଥିଲେ, ୧୯୬୪ ମସିହାର ଉକ୍ତ ଦୁଇ ମାସରେ ତାହାର ସଂଖ୍ୟା ଶତକଡ଼ା ୫୦ ବୃଦ୍ଧି ପାଇଥିଲା । ୧୯୬୪ ମସିହା ମାର୍ଚ୍ଚ ୨୩ ତାରିଖର ନିଉଜ୍ ଉଇକ୍ ପତ୍ରିକାର ୮୬-୮୮ ପୃଷ୍ଠା ଦେଖ ।

ହୁଏ । ସହରର ଉନ୍ନତି ମୂଳକ ଯୋଜନା ଯେଉଁ ସ୍ଥିତରେ କାର୍ଯ୍ୟକାରୀ କରାଯାଏ, ତାହା ଦ୍ୱାରା ମଧ୍ୟ ପୃଥକ୍‌କରଣ ବୃଦ୍ଧି ପାଇଥାଏ । ସାଧାରଣତଃ ସଂଖ୍ୟାଲଘୁ ସମ୍ପ୍ରଦାୟର ପରିବାରମାନେ ପୁରୁଣା ଭଙ୍ଗା ଘରେ ରହୁଥାନ୍ତି । ସହରର ଉନ୍ନତି କରାଗଲା ବେଳେ ତାହା ସ୍ଥାନରେ ଏତେ ବହୁମୂଲ୍ୟ ଘର ତିଆରି କରାଯାଏ ଯେ ସେମାନେ ବ୍ୟୟବାହୁଲ୍ୟ ହେତୁ ସେଥିରେ ରହି ପାରନ୍ତି ନାହିଁ । ତେଣୁ ସେମାନେ ବାଧ୍ୟ ହୋଇ ଲୋକ ବହୁଳ ପୃଥକ୍‌କୃତ ଅଞ୍ଚଳକୁ ଚାଲି ଯାଆନ୍ତି । ଏହା ଫଳରେ ସେମାନଙ୍କର ଆହୁରି ଅବନତି ଘଟେ ।

କେତେକ ଲୋକ ସର୍ବସାଧାରଣ ସୁବିଧା ଓ ଚାକିରି ବିଷୟରେ ସମ୍ମିଳନ ବା ସ୍ୱାଙ୍ଗୀକରଣ ନୀତିକୁ ସ୍ୱୀକାର କରୁଥିଲେହେଁ ବସତି ଯୋଗାଣ ବିଷୟରେ ପୃଥକ୍‌କରଣର ବିଲୋପର ବିରୋଧ କରନ୍ତି ; କାରଣ ସେମାନଙ୍କ ମତରେ ସାମାଜିକ ମିଳାମିଶାର ଏହା ହେଉଛି ଶେଷ ସୋପାନ । କୌଣସି ପରିବାରର ଆସନ ବା ମର୍ଯ୍ୟଦା ତାର ଗୃହର ଅବସ୍ଥିତି ଉପରେ ବହୁପରିମାଣରେ ନିର୍ଭର କରିଥାଏ । ଗୋଟି ଘରଟିଏ କରିବାର ଅର୍ଥ ହେଉଛି ଗୋଟିଏ ଜୀବନବ୍ୟାପୀ ପ୍ରଧାନ ବ୍ୟୟ । ତେଣୁ ବିଷୟଟି ବଡ଼ ଜଟିଳ ହୋଇପଡେ । ଗୃହ-ନିର୍ମାଣର ବ୍ୟୟ ଅତ୍ୟଧିକ ଏବଂ ଅନେକ ବର୍ଷ ହେଲା ମାର୍କିନ ଯୁକ୍ତରାଷ୍ଟ୍ରର ଅଧିକାଂଶ ଅଞ୍ଚଳରେ ବାସଗୃହର ଅଭାବ ଅନୁଭୂତ ହେଉଅଛି । ସହରମାନଙ୍କରେ କୃଷ୍ଣକାୟ ଲୋକଙ୍କର ସଂଖ୍ୟା ଯେଉଁ ପରିମାଣରେ ବୃଦ୍ଧି ପାଉଅଛି, ସେମାନଙ୍କ ଗୃହର ପରିମାଣ ସେହି ଅନୁପାତରେ ବୃଦ୍ଧି ପାଉନାହିଁ । ପରିଣାମରେ ଗୃହର ଅଭାବ ଘଟୁଅଛି ଓ ବିରୋଧଭାବ ବା ଉତ୍ତେଜନା ସୃଷ୍ଟି ହେଉଅଛି । ଏହି ପରିସ୍ଥିତିରେ ପ୍ରଭାବଶାଳୀ ସ୍ୱାର୍ଥପର ଲୋକେ ପୃଥକ୍-କରଣର ଓ ଜନ-ବାହୁଲ୍ୟର ସୁଯୋଗ ନେଇ ଧନୀ ହୋଇ ପାରୁଅଛନ୍ତି ।

'ଗୋଷ୍ଠୀ ଓ ବାସ ଗୃହ' ବିଷୟରେ ଯେଉଁ କମିଶନ ବସିଥିଲା, ସେ ହିସାବ କରି ଦେଖି ଅଛନ୍ତି ଯେ, ଆମେରିକାରେ ଏକ ଷଷ୍ଠାଂଶ ଲୋକଙ୍କର ନିଜର ବାସଗୃହ ନିର୍ବାଚନ କରିବାରେ ସ୍ୱାଧୀନତା ନଥାଏ । ତେଣୁ ଅନେକେ ବାଧ୍ୟ ହୋଇ ସହରର କଦର୍ଯ୍ୟ ଗଳିମାନଙ୍କରେ ବାସ କରନ୍ତି । ଏପରି ଗଳିମାନଙ୍କରେ ବାସ କରୁଥିବା ଲୋକେ ଯେ କେବଳ ଜନବହୁଳ ଅଞ୍ଚଳରେ ଭଙ୍ଗାଦଦରା କୁଡ଼ିଆରେ ରହନ୍ତି ତାହା ନୁହେଁ ; ସେଠାରେ ପ୍ରମୋଦଉଦ୍ୟାନ ନ ଥାଏ ; ସ୍ୱାସ୍ଥ୍ୟଜନକ କୌଣସି ସୁବିଧା ନଥାଏ ; ଶିଳ୍ପ ଓ ବାଣିଜ୍ୟ ଗୃହ ମଧ୍ୟରେ ବାସଗୃହ ଅବସ୍ଥିତ ହୋଇଥାଏ । ଏହା ନାନା ଅନ୍ୟାୟ ଓ ପାପ କାର୍ଯ୍ୟରେ ପୂରିଥାଏ [*] ।

[*] କାଲିଫର୍ଣ୍ଣିଆ ଇଉନିଭରସିଟି ପ୍ରେସ ଦ୍ୱାରା ୧୯୫୮ ମସିହାରେ ପ୍ରକାଶିତ "କମିସନ ଅନ୍ ରେସ୍ ଏଣ୍ଡ ହାଉସିଂର ହୋୟାର ସାଲ ଉଇ ଲିଭ୍ ?" ଦେଖ ।

ତଥାପି କୁହାଯାଇପାରେ ଯେ ଗତ କେତେ ବର୍ଷରୁ ମଧ୍ୟରେ ସଂଖ୍ୟାଲଘୁ ସମ୍ପ୍ରଦାୟମାନଙ୍କର ବାସଗୃହର କେତେକ ଉନ୍ନତି ହୋଇଅଛି ; କିନ୍ତୁ ତାହା ସଙ୍ଗେ ଦେଖିବାକୁ ହେବ ଯେ ଆମର ଜାତୀୟ ଆୟ ଓ ଜାତୀୟ ନିମ୍ନତମ ବାସଗୃହର ମାନ ମଧ୍ୟ ବୃଦ୍ଧି ପାଇଅଛି । ତେଣୁ ଆମର ଯାହା ଅଛି ଓ ଯାହା ଆମର ଜାତୀୟ ଲକ୍ଷ୍ୟ ଓ ମାନ, ଏ ଦୁଇଟି ମଧ୍ୟରେ ବ୍ୟବଧାନ ବୃଦ୍ଧି ପାଇଅଛି ।

ବାସଗୃହ ବିଷୟରେ ପୃଥକ୍‌କରଣର ପରିଣାମ ଯେଉଁ ଭୟଙ୍କର ତାହା କେବଳ ସଂଖ୍ୟାଲଘୁ ସମ୍ପ୍ରଦାୟର ଲୋକେ ଅନୁଭବ କରନ୍ତି ନାହିଁ । ସମଗ୍ର ଗୋଷ୍ଠୀ ପକ୍ଷରେ ମଧ୍ୟ ଏହା କ୍ଷତିକାରକ । ବାସଗୃହ ବିଷୟରେ ପୃଥକ୍‌କରଣ ଫଳରେ ଅନ୍ୟ କେତେକ ପ୍ରକାରର ପୃଥକ୍‌କରଣର ସୃଷ୍ଟି ହୁଏ ; ଯଥା—ବିଦ୍ୟାଳୟରେ, ଗୀର୍ଜାରେ, ହସପାତାଳରେ ଏବଂ ସର୍ବସାଧାରଣଙ୍କ ବ୍ୟବହାର୍ଯ୍ୟ ସ୍ଥାନମାନଙ୍କରେ । ଏହା ସହିତ ଭେଦଭାବର ନିକଟ ସମ୍ପର୍କ ଅଛି । ପୃଥକ୍‌କରଣ ସଙ୍ଗେ ସଂଖ୍ୟାଲଘୁ ସମ୍ପ୍ରଦାୟର ପୁଲିସ ଓ ନର୍ଦ୍ଦମା ବ୍ୟବସ୍ଥା ଅନୁନ୍ନତ ଅବସ୍ଥାରେ ରହେ ; ସ୍ୱାସ୍ଥ୍ୟ-ରକ୍ଷାର ଉପଯୁକ୍ତ ବ୍ୟବସ୍ଥା ରହେନାହିଁ । ସେମାନଙ୍କ ପାଇଁ ସ୍କୁଲ ପୁରୁଣା ଭଙ୍ଗାଦଦରା ଘରେ ହୁଏ । ଗୃହନିର୍ମାଣ ସମ୍ବନ୍ଧୀୟ ନିୟମାବଳୀ କଠୋର ଭାବରେ ଅନୁସୃତ ହୁଏ ନାହିଁ । ବାସଗୃହ ନିର୍ମାଣ ବିଷୟରେ ସେମାନଙ୍କର ସ୍ୱାଧୀନତା ନଥିବାରୁ ସେମାନଙ୍କୁ ଅଧିକ ଘରଭଡ଼ା ଓ ଘରର ମୂଲ୍ୟ ଦେବାକୁ ପଡ଼େ । ଜଣେ ଶ୍ୱେତାଙ୍ଗଙ୍କୁ କୌଣସି ଘରପାଇଁ ଯେତିକି ଭଡ଼ା ବା ମୂଲ୍ୟ ଦେବାକୁ ହୁଏ, ଠିକ୍ ସେହି ଘର ପାଇଁ ଜଣେ ନିଗ୍ରୋକୁ ଶତକଡ଼ା ପଚିଶଭାଗ ଅଧିକ ଦେବାକୁ ହୋଇଥାଏ । ଅଥଚ ଏହି ଅଧିକ ଭଡ଼ା ବା ମୂଲ୍ୟ ଦେବାକୁ ସେମାନଙ୍କର ସାମର୍ଥ୍ୟ ନଥାଏ । ଯେଉଁମାନେ ଏପରି କଦର୍ଯ୍ୟ ଗଳିମାନଙ୍କରେ ରହିଥାନ୍ତି, ସେମାନଙ୍କ ମଧ୍ୟରୁ ଅନେକେ ନୂଆ ହୋଇ ସହରକୁ ଆସିଥାନ୍ତି । ସହରରେ ରହିଲେ କିପରି ଚଳିବାକୁ ହେବ ତାହା ସେମାନଙ୍କୁ ଜଣା ନଥାଏ । କିନ୍ତୁ ସେମାନେ ଜନସାଧାରଣଙ୍କଠାରୁ ପୃଥକ୍ ରହିବା ହେତୁ ତାହା ଶିକ୍ଷା କରି ପାରନ୍ତି ନାହିଁ । ଫଳତଃ ସଂଖ୍ୟାଲଘୁ ସମ୍ପ୍ରଦାୟ ନିଜର ସୀମାଭିତରେ ଆବଦ୍ଧ ରହି ନୈରାଶ୍ୟ ଓ ନିରୁତ୍ସାହ ମଧ୍ୟରେ ନିଜର ଗୋଟାଏ ଆଚରଣପଦ୍ଧତି ଅନୁସରଣ କରନ୍ତି । ପୃଥକ୍‌କୃତ ସମ୍ପ୍ରଦାୟର ସନ୍ତାନମାନେ ନିଜର ଲକ୍ଷ୍ୟ ଓ ନିଜର ଚିନ୍ତାଧାରା ଦ୍ୱାରା ଚାଳିତ ହେବାରୁ ସେମାନଙ୍କ ଉପରେ ଗୋଟାଏ ନୀଚ ସଂସ୍କୃତି ବା ବିରୋଧୀ ସଂସ୍କୃତିର (ବିକୃତିର) ପ୍ରଭାବ ପଡ଼ି ସେମାନଙ୍କୁ ସହରର ଅନ୍ୟାନ୍ୟମାନଙ୍କଠାରୁ ପୃଥକ୍ କରି ରଖେ ।

ଏହି ପରିସ୍ଥିତି ଦ୍ୱାରା କେବଳ ଯେ ସଂଖ୍ୟାଲଘୁ ସମ୍ପ୍ରଦାୟର ବ୍ୟକ୍ତି ବିଶେଷଙ୍କର କ୍ଷତି ଘଟେ ତାହା ନୁହେଁ । ସମଗ୍ର ସମ୍ପ୍ରଦାୟର କାର୍ଯ୍ୟପଟୁତା ହ୍ରାସ

ହୋଇପାଏ । ବାସଗୃହର ପୃଥକ୍‌କରଣହେତୁ ଏପରି କେତେକ ଅବସ୍ଥାର ସୃଷ୍ଟି ହୁଏ ଯେ ସେଥିରେ ଶଣ୍ଡତା ଓ ଅସାମାଜିକ ଆଚରଣ ବୃଦ୍ଧି ପାଏ ; କଦର୍ଯ୍ୟ ଗଳିର ସଂଖ୍ୟା ବୃଦ୍ଧି ପାଏ ଓ ସମ୍ପ୍ରଦାୟ ଉପରେ ମନ୍ଦପ୍ରଭାବ ପଡ଼େ । କେବେ ଏଭଳି ଗଳି ଶୁଦ୍ଧିକର ସଂସ୍କାର ହୋଇ ସେଠାରେ ନୂତନ ଗୃହ ନିର୍ମାଣ କରାଗଲେ ସେ ସମ୍ପ୍ରଦାୟର ଲୋକେ ନୂତନ ଗୃହର ମୂଲ୍ୟ ଦେବାକୁ ଅସମର୍ଥ ହୁଅନ୍ତି ଓ ସହରର ଅନ୍ୟ ଅଞ୍ଚଳକୁ ଚାଲି ଯାଇ ନୂଆ ନୂଆ କଦର୍ଯ୍ୟ ଗଳି ସୃଷ୍ଟି କରନ୍ତି । ପୃଥକ୍‌କରଣ ଫଳରେ ମାର୍କିନ ଯୁକ୍ତରାଷ୍ଟ୍ରର ବୈଦେଶିକ ସମ୍ପର୍କରେ ମଧ୍ୟ ସମସ୍ୟା ଦେଖା ଦେଇଅଛି । ସୁଦୂର ଓ ଚିରାଚରିତ ପ୍ରଥା ପରିପୂର୍ଣ୍ଣ ସମ୍ପର୍କର ବୃଦ୍ଧି ହେତୁ କେତେକ ବିଦ୍ୱେଷଭାବର ଉତ୍ପତ୍ତି ହେଉଅଛି ଓ ଏହା ସାମାଜିକ ଜୀବନକୁ ଛିନ୍ନବିଚ୍ଛିନ୍ନ କରି ପକାଉଅଛି [୬] ।

ଆମ୍ଭମାନଙ୍କର ସ୍ମରଣ ରଖିବା ଉଚିତ ଯେ ଖାଲି ମାର୍କିନ ଯୁକ୍ତରାଷ୍ଟ୍ର କାହିଁକି, ସମଗ୍ର ପୃଥିବୀ ନଗରାଭିମୁଖୀ ହୋଇ ପଡ଼ିଅଛି । ଏହାର ଆଭିମୁଖ୍ୟ ହୁଏତ ଭିନ୍ନ ଭିନ୍ନ ସ୍ଥାନରେ ଭିନ୍ନ ହୋଇପାରେ । କିନ୍ତୁ ଏହି ପ୍ରକ୍ରିୟାକୁ ଆଜିଯାଏ କେହି ନିୟନ୍ତ୍ରଣ କରିନାହିଁ କିମ୍ବା କେତେଜଣ ବିଶେଷଜ୍ଞଙ୍କ ଛଡ଼ା ଆଉ କେହି ଅଧ୍ୟୟନ କରିନାହିଁ । ଆମେରିକାର ଲୋକେ ଏହି ପ୍ରକ୍ରିୟା ପ୍ରତି ଦୃଷ୍ଟି ଦେଇ ନପାରନ୍ତି କିନ୍ତୁ ଏହା ବନ୍ଦ ହୋଇ ଯିବନାହିଁ କିମ୍ବା ଏହାକୁ ଏଡ଼ିଦେଇ ହେବନାହିଁ । ପୂର୍ଣ୍ଣ ନାଗରିକ ସଭ୍ୟତା ଆଡ଼କୁ ଏ ଯେଉଁ ଗତି, ତାହାର ଗୋଟିଏ ପ୍ରଧାନ ଦିଗହେଉଛି ଆମେ ସହରମାନଙ୍କରେ ଅବାରିତ ଭାବରେ ବିଭିନ୍ନ ସମ୍ପ୍ରଦାୟର ଲୋକଙ୍କୁ ଗ୍ରହଣ କରି ନେଉଛୁ, ଯେଉଁ ମାନଙ୍କର କି ସୁବିଧା ସୁଯୋଗ ଭିନ୍ନ, ଯେଉଁମାନଙ୍କର ସଂସ୍କୃତି ଜୀବନସ୍ତରର ଓ ବିଭିନ୍ନ ; ଏହିମାନଙ୍କ ସଙ୍ଗେ ଆମର ନିକଟ ସମ୍ପର୍କ ଘଟୁଅଛି ଓ ଆମ୍ଭେମାନେ ଏମାନଙ୍କ ସହିତ ପରସ୍ପର ନିର୍ଭରଶୀଳ ହୋଇ ପଡ଼ୁଅଛୁ ।

ବାସଗୃହ ସମ୍ବନ୍ଧରେ ପୃଥକ୍‌କରଣ ଅତି ସାଧାରଣ ହେଲେହେଁ ଟିକିଏ ସୂକ୍ଷ୍ମ ଦୃଷ୍ଟି ନିକ୍ଷେପ କଲେ ଜଣାଯିବ ଯେ ଜାତୀୟ ଜୀବନର ଏହି ଦିଗରେ ମଧ୍ୟ ପୃଥକକରଣର ବିଲୋପ ନିମନ୍ତେ ଦିନକୁ ଦିନ ଅଧିକ ଉଦ୍ୟମ ହେଉଅଛି । କୌଣସି ସାମାଜିକ ପ୍ରକ୍ରିୟାର ଠିକ୍ ଦିନ ବା ତାରିଖ ଦେବା ସହଜ ନୁହେଁ । ତଥାପି

---

[୬] ପୂର୍ବୋଲ୍ଲିଖିତ କମିସନ ଅନ୍ ରେସ୍ ଏଣ୍ଡ ହାଉସିଂ ଙ୍କର 'ହୋୟେର ସାଲ୍ ଉଇ ଲିଭ୍' ଏବଂ ଡେଭିଡ୍‌ସ୍‌ମାକ୍‌ଏଣ୍ଟାୟାରଙ୍କ ଦ୍ୱାରା ଲିଖିତ ଓ କାଲିଫର୍ଣ୍ଣିଆ ଇଉନିଭରସିଟି ପ୍ରେସ ଦ୍ୱାରା ୧୯୬୦ ମସିହାରେ ପ୍ରକାଶିତ 'ରେସିଡେନ୍‌ସ ଏଣ୍ଡ ରସ୍' ପୁସ୍ତକ ଦେଖ ।

କୁହାଯାଇପାରେ ଯେ ପ୍ରାୟ ୧୯୫୦ ମସିହା ବେଳକୁ ଗୋଟାଏ ପରିବର୍ତ୍ତନର ସୂଚନା ଦେଖାଦେଲା ଓ ବିଗତ ପାଞ୍ଚବର୍ଷ ମଧ୍ୟରେ ଏହା ଯଥେଷ୍ଟ ବୃଦ୍ଧି ପାଇଲା । ପ୍ରଥମେ କେନ୍ଦ୍ରୀୟ ଗୃହନିର୍ମାଣ କର୍ତ୍ତୃପକ୍ଷ ଓ ଗୃହ-ନିର୍ମାଣ ସହିତ ସମ୍ପୃକ୍ତ ଅନ୍ୟାନ୍ୟ ସରକାରୀ ସଂସ୍ଥାମାନେ ମନେ କରୁଥିଲେ ଯେ, ପୃଥକକରଣ ସ୍ୱାଭାବିକ ଓ ବାଞ୍ଛନୀୟ । କିନ୍ତୁ ଗତ ଦଶନ୍ଧି ମଧ୍ୟରେ ଏହି ସଂସ୍ଥାମାନେ ସମ୍ମିଳିତ ଗୃହନିର୍ମାଣ ଯୋଜନାକୁ ଅଧିକରୁ ଅଧିକତର ସମର୍ଥନ ଓ ଉତ୍ସାହ ଦେଇ ଆସିଅଛନ୍ତି । ୧୯୬୨ ମସିହାର ନଭେମ୍ବର ମାସରେ ପ୍ରେସିଡେଣ୍ଟ କେନେଡି ସରକାରୀ ଘୋଷଣା ପ୍ରକାଶ କଲେ ଯେ ସରକାରୀ ସାହାଯ୍ୟରେ ନିର୍ମିତ ଗୃହ, ଜାତି, ଧର୍ମ ଓ ଗୋଷ୍ଠୀ ନିର୍ବିଶେଷରେ ଭଡ଼ା ଦିଆଯାଇ ପାରିବ ବା ବିକ୍ରି କରାଯାଇ ପାରିବ । ଏପରି ଏକ ଘୋଷଣା ପ୍ରକାଶ ପାଇବ ବୋଲି ଲୋକେ ବହୁପୂର୍ବରୁ ଆଶା କରିଥିଲେ । ଅନେକ ଲୋକ ଭାବିଥିଲେ ଯେ ଘୋଷଣାଟି ଆହୁରି ବ୍ୟାପକ ଓ ଆହୁରି ବାଧ୍ୟତା ମୂଳକ ହେବ । କୃଷ୍ଣକାୟ ଆମେରିକାବାସୀମାନଙ୍କୁ ଗୃହ-ନିର୍ମାଣ ଯୋଜନାମାନଙ୍କ ନିମନ୍ତେ ଅନ୍ୟାନ୍ୟ ଆମେରିକାବାସୀଙ୍କ ଭଳି କରଦେବାକୁ ପଡ଼େ କିନ୍ତୁ ଏହାର ଉପକାରିତାକୁ ସେମାନେ ସମାନ ଭାବରେ ଉପଭୋଗ କରି ପାରନ୍ତି ନାହିଁ । ଅନ୍ତତଃ ବୋଷ୍ଟନ ଟି ପାର୍ଟି ଦିନଠାରୁ ଆମେରିକାର ଲୋକେ ଏ ପ୍ରକାର ବ୍ୟବସ୍ଥା ମାନିନେବାକୁ ପ୍ରସ୍ତୁତ ନଥିଲେ । ପୁଣି ଏହା ଯେ ସମ୍ବିଧାନର ବିରୋଧୀ ଏଥିରେ ସନ୍ଦେହ ନାହିଁ ।

ଆମ୍ଭେମାନେ କହୁଅଛୁଁ ଯେ ସ୍ଥାନୀୟ ଆଇନ, ରାଜ୍ୟ ଆଇନ ତଥା କେନ୍ଦ୍ରୀୟ ଆଇନମାନଙ୍କ ଦ୍ୱାରା ବାସଗୃହସଂକ୍ରାନ୍ତ ପୃଥକ୍‌କରଣକୁ ସଙ୍କୁଚିତ କରି ଯାଉଅଛି । ଏହି ନିୟମ ଗୁଡ଼ିକ ସମ୍ବିଧାନର ମୌଳିକ ଭିତ୍ତି ଉପରେ ପ୍ରତିଷ୍ଠିତ । ଏହି ଭିତ୍ତି ହେଉଛି, ସମାନ ଭାବରେ ଯେଉଁ ସୁବିଧା ସମସ୍ତେ ଉପଭୋଗ କରି ପାରନ୍ତି ନାହିଁ, ସେଥିପାଇଁ କାହାରି ଉପରେ କର ବସାଇବା ଆଇନ ସଙ୍ଗତ ନୁହେଁ । ଆହୁରି ଗୋଟିଏ ଭିତ୍ତି ହେଉଛି, ସମାଜର ପୁଲିସ କ୍ଷମତା—ଅର୍ଥାତ୍ ବାସଗୃହର କ୍ଷୟିଷ୍ଣୁ ଓ ଜୀର୍ଣ୍ଣ ଅବସ୍ଥା ଜନିତ କୁପରିଣାମରୁ ନିଜକୁ ରକ୍ଷା କରିବାପାଇଁ ସମାଜର ଅଧିକାର ଅଛି । ଷୋଳଟି ରାଜ୍ୟ ଓ ଅନେକ ଗୁଡ଼ିଏ ନାଗରିକ ସମିତି ଗୃହ-ନିର୍ମାଣରେ ଭେଦଭାବ ଦୂର କରିବାକୁ ଚେଷ୍ଟା କରି ଅଛନ୍ତି । ଯେଉଁଠାରେ ନିୟମ ଗୁଡ଼ିକୁ କାର୍ଯ୍ୟକାରୀ କରିବାର କ୍ଷମତା ରହିଅଛି, ସେଠାରେ ବିରୋଧର ସୃଷ୍ଟି ହୋଇଅଛି । ଏ ପ୍ରକାର ନିୟମକାନୁନଦ୍ୱାରା ଭୂମ୍ୟଧିକାରୀମାନଙ୍କର ସ୍ୱାଧୀନତା ଯେ କ୍ଷୁଣ୍ଣ ହୁଏ, ଏହା ନିଶ୍ଚିତ । ପ୍ରାୟ ଅଧିକାଂଶ ଆଇନ ଦ୍ୱାରା କେତେକଙ୍କର ସ୍ୱାଧୀନତା କେତେକ ପରିମାଣରେ ଖର୍ବ ହୋଇଥାଏ । ତେଣୁ ପ୍ରକୃତ ପ୍ରଶ୍ନ ହେଉଛି, ଏହି ସବୁ ଆଇନ ଦ୍ୱାରା ସମାଜର ସମୂହ ମଙ୍ଗଳ ସାଧିତ ହେଉଅଛି କି ନା ? ବର୍ତ୍ତମାନ ପୃଥକ୍‌କୃତ ସମ୍ପ୍ରଦାୟର ସ୍ୱାଧୀନତାରେ ଏହା ସାହାଯ୍ୟ କରୁଅଛି କି ? ମୋ ମତରେ ଏହା

ଦ୍ଵାରା ସମାଜର ସମୂହ ମଙ୍ଗଳ ସାଧିତ ହେଉଅଛି ଓ ଏହା ସଙ୍ଖ୍ୟାଲଘୁ ସମ୍ପ୍ରଦାୟର ସ୍ଵାଧୀନତାରେ ସାହାଯ୍ୟ କରୁଅଛି । ମୋର ବିଶ୍ଵାସ ପରିଶେଷରେ ଏହି ସବୁ ଆଇନ ଭୂସମ୍ପତ୍ତିଧିକାରୀଙ୍କ ସ୍ଵାଧୀନତାରେ କୌଣସି ହସ୍ତକ୍ଷେପ କରିବ ନାହିଁ । ବାସ-ଗୃହସଂକ୍ରାନ୍ତ ପୃଥକ୍‌କରଣର ବିଲୋପ ଫଳରେ ସମାଜର ଯେଉଁ ସମୂହ ଲାଭ ହେବ, ସେଥିରୁ ଭଡ଼ା ଲଗାଉଥିବା ଘର ମାଲିକମାନେ ଯଥେଷ୍ଟ ଲାଭବାନ୍ ହୋଇ ପାରିବେ । କୃଷ୍ଣକାୟ ଲୋକଙ୍କ ବାସଗୃହ ବିଷୟରେ କଟକଣା ଥିବାରୁ ଯେଉଁ ଅଳ୍ପ କେତେ ଜଣ ଲାଭ ଉଠାଉ ଅଛନ୍ତି, ପୃଥକ୍‌କରଣର ବିଲୋପ ହେଲେ ସେମାନେ ଦେଖିବେ ଯେ କଦର୍ଯ୍ୟ ଗଳିର ଘରଗୁଡ଼ିକ ସେମାନଙ୍କ ପକ୍ଷରେ ସେତେ ଲାଭଜନକ ନୁହେଁ ।

ବାସଗୃହସଂକ୍ରାନ୍ତ ପୃଥକ୍‌କରଣର ବିଲୋପ ଦିଗରେ ସହାୟକ କେତୋଟି ପ୍ରସ୍ତାବର ବିଷୟ ଏଠାରେ ଉଲ୍ଲେଖ କରି ଯାଉଅଛି । ବିଭିନ୍ନ ଗୋଷ୍ଠୀର ଲୋକଙ୍କ ଦ୍ଵାରା ଗଠିତ କେତେକ ଶ୍ରମିକ ଇଉନିଅନ ଏବେ ବନ୍ଧକ ବ୍ୟବସାୟରେ ପ୍ରବେଶ କରୁ ଅଛନ୍ତି । ପୂର୍ବ କାଳର ବିଦ୍ଵେଷ ସାଧାରଣତଃ ହ୍ରାସ ପାଉଥିବାର କେତେକ ସଙ୍କେତ ମିଳୁଅଛି । ସମ୍ମିଳିତ ବାସଗୃହାଞ୍ଚଳ ଦିଗରେ ଲୋକଙ୍କର ମତଗତି ଜାଗୁଅଛି । ବୋଧହୁଏ ଏହାର କାରଣ ହେଉଛି, ଏ ପ୍ରକାର ଅଞ୍ଚଳର ଲୋକ-ମାନଙ୍କ ମଧ୍ୟରେ ସମ୍ମିଳିତ ବସତି ଦିଗରେ ଆଗ୍ରହ ପ୍ରକାଶ ପାଇଅଛି । କେତେକ ବେସରକାରୀ ଗୃହନିର୍ମାଣ ସଂସ୍ଥା କେବଳ ସମ୍ମିଳିତ ଗୋଷ୍ଠୀପାଇଁ ଗୃହନିର୍ମାଣର ଉନ୍ନତି ଦିଗରେ ଲାଗି ଅଛନ୍ତି [୭] । ଅନେକ ଚର୍ଚ୍ଚରେ ପ୍ରତିଜ୍ଞାପତ୍ର ପ୍ରଚାର କରି ଯାଉଅଛି— ଯେ କୌଣସି ଲୋକ, ଯେ କୌଣସିଠାରେ ବସବାସ କରି ପାରିବ । ଠିକ୍ ବେଆଇନ ନ ହେଲେହେଁ ଆଇନର ସୀମା ଅତିକ୍ରମ କରି ଆମେରିକାର କେତେକ ଚର୍ଚ୍ଚରେ ଗୋଷ୍ଠୀଗତ ଓ ଧର୍ମଗତ ବିଚାରରେ ଅନେକଙ୍କୁ ସମାଜଠାରୁ ଦୂରରେ ରଖା ଯାଉଥିଲା । ବର୍ତ୍ତମାନ ଏହାର ବ୍ୟତିକ୍ରମ ଘଟିଅଛି । ସହସ୍ର ସହସ୍ର ଖ୍ରୀଷ୍ଟିଆନ ଏହି ମର୍ମରେ ପ୍ରତିଜ୍ଞା କରୁଅଛନ୍ତି—

"ମୁଁ ଯେ କୌଣସି ସଚ୍ଚରିତ୍ର ବ୍ୟକ୍ତିକୁ ତାର ଗୋଷ୍ଠୀ, ଧର୍ମ ଓ ଜାତି ନିର୍ବିଶେଷରେ ମୋର ପ୍ରତିବେଶୀ ରୂପେ ସ୍ଵାଗତ କରିବି ।"

---

[୭] କାଲିଫର୍ଣ୍ଣିଆ ଇଉନିଭରସିଟି ପ୍ରେସ ଦ୍ଵାରା ୧୯୬୦ ମସିହାରେ ପ୍ରକାଶିତ ଓ ଇଉନିସଗ୍ରିଅର ଓ ଜର୍ଜ ଗ୍ରିଆରଙ୍କ ଦ୍ଵାରା ଲିଖିତ 'ପ୍ରାଇଭେଟ୍‌ଲି ଡେଭଲପ୍‌ଡ ଇଣ୍ଟେରରେସିଆଲ ହାଉସିଂ : ଆନ୍ ଏନାଲିସିସ୍' ପୁସ୍ତକ ଦେଖ ।

ସ୍ଥାନୀୟ ଅଧିବାସୀମାନେ ସମ୍ମିଳିତ ପରିବେଶ ଚାହାନ୍ତି ନାହିଁ ଓ ସେଥିପାଇଁ ପୃଥକ୍‌କରଣ ରହିଅଛି—ଏହି ଉକ୍ତି ଯେ କେତେ ଦୁର୍ବଳ, ତାହା ଉପର୍ଯ୍ୟୁକ୍ତ ପ୍ରତିଜ୍ଞା ଦ୍ୱାରା ପ୍ରମାଣିତ ହେଉଅଛି ।

ବିଗତ କୋଡ଼ିଏ ବର୍ଷ ମଧ୍ୟରେ ବାସଗୃହ ସଂକ୍ରାନ୍ତ ପୃଥକ୍‌କରଣ ବୋଧହୁଏ ମାକିନ ଯୁକ୍ତରାଷ୍ଟ୍ରରେ ବୃଦ୍ଧି ପାଇଅଛି । ଉତ୍ତରାଞ୍ଚଳର ସହରମାନଙ୍କରେ ଯେ ବୃଦ୍ଧି ପାଇଅଛି, ଏହା ନିଃସନ୍ଦେହ । ଏବେ ଏହି ପ୍ରକାର ବିପରୀତ ଦିଗରେ ଗତି କରିବା ଲାଗି ପ୍ରବଳ ଚାପ ପଡ଼ୁଅଛି । ଏହି ଚାପ ଅଳ୍ପଦିନ ହେଲା ଦେଖା ଦେଇଥିବାରୁ ଏହାର ପ୍ରଭାବର ପରିମାଣ ସ୍ଥିର କରିବାର ସମୟ ଆସିନାହିଁ । କିନ୍ତୁ ପୃଥକ୍‌କରଣର ବିଲୋପ ଦିଗରେ ପରିଚାଳିତ ଅନ୍ୟାନ୍ୟ ପ୍ରଭାବ ଏହାର ସମର୍ଥନ କରୁଥିବାରୁ ଅନୁମାନ କରାଯାଏ ଏହା କ୍ରମେ ଶକ୍ତିଶାଳୀ ହେବ ଏବଂ ବାସଗୃହ ସଂକ୍ରାନ୍ତ ପୃଥକ୍-କରଣର ବିଲୋପ ଆହୁରି ତ୍ୱରାନ୍ୱିତ ହେବ ।

## ଶିକ୍ଷା

ଆମେରିକାର ସ୍କୁଲମାନଙ୍କରେ ପରିବର୍ତ୍ତନ ପ୍ରତି ଯେତେ ଦୃଷ୍ଟି ଦିଆଯାଇଅଛି; ପୃଥକକରଣର ବିଲୋପ ଦିଗରେ ଅନ୍ୟ କୌଣସି ବିଭାଗ ପ୍ରତି ସେତେ ଦୃଷ୍ଟି ଦିଆ ଯାଇନାହିଁ । ଶିକ୍ଷାର ଗୁରୁତ୍ୱପୂର୍ଣ୍ଣ ଭୂମିକାର ଉଲ୍ଲେଖ ନିଷ୍ପ୍ରୟୋଜନ । ଗଣତାନ୍ତ୍ରିକ ଭିତ୍ତିରେ ରାଜନୈତିକ ସଂଗଠନ ଉପରେ ପ୍ରତିଷ୍ଠିତ ଓ ବିବିଧ ଉଦ୍ୟୋଗକୌଶଳରେ ନିପୁଣ ଗୋଟିଏ ସମାଜରେ ବ୍ୟକ୍ତିବିଶେଷ ନିମନ୍ତେ ତଥା ସମଗ୍ର ସମ୍ପ୍ରଦାୟ ନିମନ୍ତେ ଶିକ୍ଷାର ଗୁରୁତ୍ୱ ଅବଶ୍ୟ ସ୍ୱୀକାର କରିବାକୁ ହେବ । ଉନ୍ନତି ପଥରେ ଅନ୍ୟାନ୍ୟ ପ୍ରଭାବ ସହାୟକ ହୋଇଥିଲେ ସୁଦ୍ଧା, ଯେଉଁମାନଙ୍କର ଶିକ୍ଷାର ଉନ୍ନତିପଥ ରୁଦ୍ଧ, ସେମାନଙ୍କର ଆସନ ନୀଚ ହେବା ସ୍ୱାଭାବିକ । ଯେଉଁ ସମ୍ପ୍ରଦାୟ ଶିକ୍ଷାଲାଭର ସୁଯୋଗ ପାଇଥାଏ, ଅନ୍ୟାନ୍ୟ ପ୍ରଭାବ ତାହାର ପ୍ରତିକୂଳ ହୋଇଥିଲେହେଁ, ତାହା ନିଜର ଆସନକୁ ଉନ୍ନତ କରିବାର ଗୋଟିଏ ଶକ୍ତିଶାଳୀ ଅସ୍ତ୍ର (ଉପାୟର) ଅଧିକାରୀ ହୋଇଥାଏ । ଆମେରିକାରେ ଶିକ୍ଷା ଗୋଟିଏ ପ୍ରଧାନ ସୋପାନ ସ୍ୱରୂପ । ଯେଉଁ-ମାନେ ସୁଯୋଗରୁ ବଞ୍ଚିତ, ସେମାନେ ଏଥିରେ ଆରୋହଣ କରି ଜୀବନରେ ଉନ୍ନତତର ସ୍ଥାନ ଲାଭ କରି ପାରିଅଛନ୍ତି । ସମାଜକୁ ଉନ୍ମୁକ୍ତ ରଖିବା ପାଇଁ ଆମେରିକାବାସୀ ଯେ ଦୃଢ଼ ପ୍ରତିଜ୍ଞ, ତାହାର ଗୋଟିଏ ନିଦର୍ଶନ ହେଉଛି ଆମ ଦେଶରେ ଶିକ୍ଷାଲାଭର ସୁଯୋଗର ବ୍ୟାପକତା । ଅବଶ୍ୟ ଗୁଣ ଦିଗରୁ ଏହି ଶିକ୍ଷା ସର୍ବଦା ଉଚ୍ଚ ସ୍ଥାନ ଅଧିକାର କରିନପାରେ ।

ମାର୍କିନ ଯୁକ୍ତରାଷ୍ଟ୍ରରେ ଶିକ୍ଷାର ପରିସର ଯେପରି ଅଧିକରୁ ଅଧିକତର ସମ୍ପ୍ରଦାୟ ନିମନ୍ତେ ଉନ୍ମୁକ୍ତ ରହିବ ସେଥିପାଇଁ ଲକ୍ଷ୍ୟରଖି ଉଦ୍ୟମ କରା ଯାଉଅଛି । ଏହି ଉଦ୍ୟମର ଅତ୍ୟାଧୁନିକ ପରିପ୍ରକାଶ ହେଉଛି, ପୃଥକକରଣର ବିଲୋପ । ପୃଥକ୍‌କରଣର ବିଲୋପ ନିମନ୍ତେ ବିଶ୍ୱବିଦ୍ୟାଳୟମାନଙ୍କ ଆଦେଶର ଉଲ୍ଲେଖ କରିବାକୁ ମୁଁ ଚାହୁନାହିଁ । ୧୯୩୦ ମସିହାର ପରବର୍ତ୍ତୀ ଦଶନ୍ଧିର ଶେଷ ଭାଗରୁ ଯେଉଁ ପରିବର୍ତ୍ତନ-ଗୁଡ଼ିକ ଲୋକେ ସ୍ୱତଃ ପ୍ରବର୍ତ୍ତନ କରିଅଛନ୍ତି, ତାହା ଫଳରେ କୃଷ୍ଣକାୟ ଲୋକମାନଙ୍କର ଶିକ୍ଷା ଲାଭର ସୁଯୋଗ ବୃଦ୍ଧି ପାଇଅଛି ଏବଂ ପୃଥକକରଣର ପ୍ରତିବନ୍ଧକଗୁଡ଼ିକ ହ୍ରାସ ପାଇଅଛି । ୧୯୫୪ ମସିହାରେ ସୁପ୍ରିମକୋର୍ଟ ରାୟ ଦେଲେ ଯେ ସର୍ବସାଧାରଣ ବିଦ୍ୟାଳୟରେ ପୃଥକକରଣ ସମ୍ବିଧାନର ବିରୋଧୀ । ଏହା ଗୋଟିଏ ବିଶିଷ୍ଟ ଘଟନା । ଏହା ପରେ ପରେ ୧୯୫୫ ମସିହାରେ ଆଦେଶ ଦିଆଗଲା ଯେ ସ୍କୁଲ ବିଭାଗୀୟ କର୍ତ୍ତୃପକ୍ଷ ନିଜ ନିଜ ଜିଲ୍ଲାର ସ୍କୁଲଗୁଡ଼ିକୁ ଯଥାସମ୍ଭବ ଶୀଘ୍ର 'ସମ୍ମିଳିତ' ସ୍କୁଲରେ ପରିଣତ କରିବାକୁ ଚେଷ୍ଟିତ ହେବେ । ସୁପ୍ରିମକୋର୍ଟ ଦେଖି ପାରିଥିଲେ ଯେ ଏପରି ନିକଟରେ ଅନେକ କଠିନ ସମସ୍ୟା ଦେଖାଦେବ ।

୧୯୫୪ ମସିହାର ସୁପ୍ରିମକୋର୍ଟ ରାୟ ଦେଲାବେଳକୁ ଦକ୍ଷିଣାଞ୍ଚଳର ସମସ୍ତ ୧୭ଟି ରାଜ୍ୟର ଓ କଲମ୍ବିଆ ଜିଲ୍ଲାର ସବୁ ସ୍କୁଲରେ ପୃଥକକରଣ ନୀତି ଚଳୁଥିଲା । ୧୯୬୪ ମସିହା ବେଳକୁ ଦୁଇ ଗୋଷ୍ଠୀ ବିଶିଷ୍ଟ ସ୍କୁଲମାନଙ୍କ ମଧ୍ୟରୁ ଶତକଡ଼ା ୪୬ରୁ ଅଧିକ(୩୦୬୭ ସ୍କୁଲ ମଧ୍ୟରୁ ୧୬୮୯) କେତେକ ପରିମାଣରେ ପୃଥକକରଣରୁ ମୁକ୍ତ ହୋଇଥିଲେ । ପ୍ରତି ପାଞ୍ଚୋଟି ସ୍କୁଲ ମଧ୍ୟରୁ ଚାରୋଟି ସ୍ୱତଃପ୍ରବୃତ୍ତ ହୋଇ ସମ୍ମିଳିତ ସ୍କୁଲରେ ପରିଣତ ହୋଇଥିଲେ । କେତେକ କ୍ଷେତ୍ରରେ ସମ୍ମିଳନ ସମ୍ପୂର୍ଣ୍ଣରୂପେ ଘଟିଅଛି । ଉଦାହରଣ ସ୍ୱରୂପ ଓ୍ୱାଶିଂଟନରେ ଏପରି ହୋଇ ପାରିଅଛି । କିନ୍ତୁ ଅନ୍ୟ କ୍ଷେତ୍ରରେ ଅତି ସାମାନ୍ୟ ପରିବର୍ତ୍ତନ ଦେଖା ଯାଇଅଛି ।

ରାଜ୍ୟଗୁଡ଼ିକୁ ଚାରୋଟି ଶ୍ରେଣୀରେ ବିଭକ୍ତ କରାଯାଇପାରେ । ପ୍ରଥମତଃ ସୀମାନ୍ତବର୍ତ୍ତୀ ରାଜ୍ୟସମୂହ । ଏଗୁଡ଼ିକରେ ଶତକଡ଼ା ୫୭ ଜଣ ନିଗ୍ରୋ ଛାତ୍ରଛାତ୍ରୀ ଶ୍ୱେତାଙ୍ଗ ଛାତ୍ର-ଛାତ୍ରୀଙ୍କ ସହ ଅଧ୍ୟୟନ କରନ୍ତି । ଦୁଇଗୋଷ୍ଠୀ ସମ୍ବଳିତ ସ୍କୁଲ-ମାନଙ୍କ ମଧ୍ୟରୁ ଶତକଡ଼ା ନବେ ସ୍କୁଲରେ ପୃଥକକରଣର ବିଲୋପ ହୋଇଅଛି ।

ପଶ୍ଚିମ ଭର୍ଜିନିଆ, ଡେଲାଓ୍ୱେର, ମିଶୌରି, କେଣ୍ଟୁକି, ମେରିଲାଣ୍ଡ ଓ କଲାହୋମା ଓ ଓ୍ୱାଶିଂଟନ; ଚାରୋଟି ରାଜ୍ୟ (ଟେକ୍‌ସାସ, ଟେନେସି, ଭର୍ଜିନିଆ ଓ ଫ୍ଲୋରିଡ଼ା) ଏମାନଙ୍କରେ ପୃଥକକରଣର ବିଲୋପ ସାମାନ୍ୟ ପରିମାଣରେ ଘଟିଅଛି । ଏହା ଫଳରେ ସ୍କୁଲ ସଂଖ୍ୟାର ଏକତୃତୀୟାଂଶ ଓ ନିଗ୍ରୋ ଛାତ୍ରଛାତ୍ରୀ ସଂଖ୍ୟାର ଶତକଡ଼ା

୨ ଠାରୁ ୫ ପର୍ଯ୍ୟନ୍ତ ଉପକୃତ ହୋଇଅଛନ୍ତି ।' ମାଉଣ୍ଟି ରାଜ୍ୟରେ ସମ୍ମିଳନର ସଙ୍କେତ ମାତ୍ର ଦେଖା ଯାଇଅଛି । ମିସିସିପିରେ ୬୦ ଜଣ ମାତ୍ର ନିଗ୍ରୋ ଛାତ୍ରଛାତ୍ରୀ ଅଛନ୍ତି । ଏହି ସଂଖ୍ୟା ସବୁଠାରୁ କମ୍ । ନର୍ଥ କାରୋଲିନାରେ ନିଗ୍ରୋ ଛାତ୍ର-ଛାତ୍ରୀଙ୍କର ସଂଖ୍ୟା ତିନି ହଜାରରୁ ଅଧିକ । ଏହା ସବୁଠାରୁ ବେଶି । ସାଉଥ କାରୋଲିନା, ଆଲବାମା, ଜର୍ଜିଆ, ଆରକାନ୍‌ସସ୍ ଓ ଲୁଇସିଆନା ମଧ୍ୟବର୍ତ୍ତୀ ସ୍ଥାନଗୁଡ଼ିକ ଅଧିକାର କରିଅଛନ୍ତି । ଏମାନଙ୍କ ମଧ୍ୟରୁ ପ୍ରତ୍ୟେକରେ ଶତକଡ଼ା ୧ରୁ କମ ନିଗ୍ରୋ ଛାତ୍ରଛାତ୍ରୀ ସମ୍ମିଳିତ ସ୍କୁଲରେ ଯୋଗ ଦେଇଥାନ୍ତି । ମୋଟଉପରେ ଦକ୍ଷିଣାଞ୍ଚଳରେ ଶତକଡ଼ା ୯·୩ ନିଗ୍ରୋ ବାଳକ-ବାଳିକା ଶ୍ୱେତାଙ୍ଗମାନଙ୍କ ସହିତ ଅଧ୍ୟୟନ କରନ୍ତି; ଏମାନଙ୍କର ଦଶ ଭାଗରୁ ନଅଭାଗ ସୀମାନ୍ତ ରାଜ୍ୟମାନଙ୍କରେ ଦେଖାଯାନ୍ତି । ସୀମାନ୍ତ ରାଜ୍ୟମାନଙ୍କରେ ଓ ୱାଶିଂଟନରେ ଶିକ୍ଷକମାନଙ୍କ ମଧ୍ୟରେ କୃଷ୍ଣକାୟ ଓ ଶ୍ୱେତାଙ୍ଗ ଉଭୟ ଅଛନ୍ତି । ଫ୍ଲୋରିଡ଼ା, ଟେନେସି, ଟେକ୍‌ସାସ୍ ଓ ଭର୍ଜିନିଆରେ ମଧ୍ୟ ଉଭୟ କୃଷ୍ଣକାୟ ଓ ଶ୍ୱେତାଙ୍ଗ ଶିକ୍ଷକ ନିଯୁକ୍ତ କରିବା ଆରମ୍ଭ ହୋଇଅଛି [୮] ।

ଏପରିକି ସୁପ୍ରିମ କୋର୍ଟର ୧୯୫୪ ମସିହାର ରାୟ ପୂର୍ବରୁ ମଧ୍ୟ ସ୍ନାତକ ଶ୍ରେଣୀର ସ୍କୁଲ ଓ କଲେଜମାନଙ୍କରେ ପୃଥକ୍‌କରଣର ବିଲୋପ ଆରମ୍ଭ ହୋଇଥିଲା । ପ୍ରାଥମିକ ଓ ମାଧ୍ୟମିକ ଶ୍ରେଣୀରେ ଏହି ନୀତି ପ୍ରବର୍ତ୍ତିତ ହେଲାଣି । ଦକ୍ଷିଣାଞ୍ଚଳର ଦ୍ୱିତୃତୀୟାଂଶ ସର୍ବସାଧାରଣ କଲେଜ ଓ ବିଶ୍ୱବିଦ୍ୟାଳୟରେ ଶ୍ୱେତାଙ୍ଗ ଓ କୃଷ୍ଣକାୟ ଛାତ୍ରଛାତ୍ରୀ ପ୍ରବେଶ କରି ପାରୁଅଛନ୍ତି । ଅନୁପାତ ଦୃଷ୍ଟିରେ କୃଷ୍ଣକାୟମାନଙ୍କ ସଂଖ୍ୟା ଅଧିକ ନୁହେଁ । ଦକ୍ଷିଣାଞ୍ଚଳର ଅଭ୍ୟନ୍ତରରେ ଏମାନଙ୍କ ସଂଖ୍ୟା ନିତାନ୍ତ ନଗଣ୍ୟ । ତଥାପି ଉଚ୍ଚ ଶିକ୍ଷାଳୟମାନଙ୍କରେ ପ୍ରାୟ ଦଶହଜାର ଛାତ୍ରଛାତ୍ରୀ ଅଧ୍ୟୟନ କରୁଅଛନ୍ତି । ଅଳ୍ପ କେତେବର୍ଷ ପୂର୍ବେ ସେମାନଙ୍କୁ ସମ୍ପୂର୍ଣ୍ଣରୂପେ ପୃଥକ୍ ରଖା ଯାଉଥିଲା । ୫୨ଟି କଲେଜ ପୂର୍ବେ କେବଳ ନିଗ୍ରୋମାନଙ୍କ ନିମନ୍ତେ ଉଦ୍ଦିଷ୍ଟ ଥିଲା । ସେଥିମଧ୍ୟରୁ ୨୪ଟିରେ ଏବେ ଶ୍ୱେତାଙ୍ଗମାନେ ମଧ୍ୟ ଅଧ୍ୟୟନ କରୁଅଛନ୍ତି [୯] ।

ଲୋକସଂଖ୍ୟା ଦୃଷ୍ଟିରୁ ବିଚାର କଲେ ବୁଝି ହୋଇପାରେ ଯେ, ସ୍କୁଲ-ମାନଙ୍କରେ ପୃଥକ୍‌କରଣର ବିଲୋପ ଯଥେଷ୍ଟ ଅଗ୍ରସର ହୋଇ ପାରିନାହିଁ । ଏ

---

[୮] ୧୯୬୪ ମସିହା ସେପ୍ଟେମ୍ବର ମାସର 'ସାଉଥ୍‌ଇନ୍ ସ୍କୁଲସ୍' ନ୍ୟୁଜ୍ ପତ୍ରିକାର ୧-୧୧ପୃଷ୍ଠା ଏବଂ ସାଉଥ୍‌ରନ୍ ଏଡୁକେସନ ରିପୋର୍ଟିଂ ସର୍ଭିସର ଷ୍ଟାଟିଷ୍ଟିକେଲ ସମାପ୍ତି, ୧୯୬୩ର ୨ପୃଷ୍ଠା ଦେଖ ।

---

[୯] ପୂର୍ବୋଲ୍ଲିଖିତ ରିପୋର୍ଟର ୩ପୃଷ୍ଠା ।

ଶରେ ଯେଉଁ ସବୁ ହସ୍ତକ୍ଷେପ କରାଯାଇଅଛି, ତାହା ଫଳରେ ଅନେକ ମାମଲା-ମକଦ୍ଦମାର ସୃଷ୍ଟି ହୋଇଅଛି ; କେତେକ ସ୍ଥଳରେ ବିଚାରାଳୟର ଆଦେଶ ନାମ ମାତ୍ର ପାଳିତ ହୋଇଛି ; ଅନ୍ୟ କେତେକ ସ୍ଥାନରେ ଗଣ୍ଡଗୋଳ ଘଟିଅଛି । ତଥାପି ମୋର ମନେହୁଏ ଯେ ଗୋଟାଏ ଦିଗରେ ଗତି ଆରମ୍ଭ ହୋଇଅଛି । ସେଥିରୁ ଆଉ ଫେରି ହେବନାହିଁ । ଲିଟିଲ୍‌ରକ୍, ନିଉଅର୍ଲିଅନ୍‌ସ, ଅକ୍‌ସଫୋର୍ଡ ଓ ଅନ୍ୟ କେତେକ ସ୍ଥାନରେ ବିରୋଧ ଘଟିବାରୁ ସମ୍ବାଦପତ୍ରମାନଙ୍କରେ ବଡ଼ ବଡ଼ ଅକ୍ଷରରେ ଅନେକ କଥା ବାହାରିଥିଲା ସତ୍ୟ ; ମାତ୍ର ତାହା ସଙ୍ଗେ ହ୍ୟୁଷ୍ଟନ୍, ଆଟଲାଣ୍ଟା, ଡେଲାସ, ରିଚମଣ୍ଡ ଓ ମେମ୍ଫିସର ସ୍କୁଲମାନଙ୍କରେ ପୃଥକ୍‌କରଣ ବିଲୋପର ସୂତ୍ରପାତ ହୋଇଥିଲା । ଗୋଟିଏ ବର୍ଷ ପୃଥକ୍‌କରଣ ବିଲୋପ ପାଇଁ ବିରୋଧ ଦେଖାଦେଲେ ପର ବର୍ଷ ଶାନ୍ତି ପୂର୍ଣ୍ଣ ପରିବର୍ତ୍ତନ ହୋଇପାରେ । ଉଦାହରଣ ସ୍ୱରୂପ ଲିଟିଲ୍‌ରକ୍‌ରେ ତିନୋଟି ହାଇସ୍କୁଲ କେବଳ ଶ୍ୱେତାଙ୍ଗମାନଙ୍କ ପାଇଁ ରକ୍ଷିତ ଥିଲା । ଏବେ ସେ ତିନୋଟି ହାଇସ୍କୁଲ ଓ ଅଧିକାଂଶ ଜୁନିଅର ହାଇସ୍କୁଲରେ ନିଗ୍ରୋବାଳକ ବାଳିକାମାନେ ପ୍ରବେଶ କରି ପାରୁଅଛନ୍ତି । ୧୯୬୦ ମସିହାର ଶରତ ଋତୁରେ ନିଉଅର୍ଲିଅନ୍‌ସର ଦୁଇଟି ଏଲିମେଣ୍ଟାରି ସ୍କୁଲରେ ପୃଥକ୍‌କରଣର ବିଲୋପ କରାଯିବାରୁ ଭୟଙ୍କର ବାଦବିବାଦ ସୃଷ୍ଟି ହୋଇଥିଲା । କିନ୍ତୁ ଠିକ୍ ସେହି ସମୟରେ ସ୍କୁଲ ବୋର୍ଡ଼କୁ ଜଣେ ନରମପନ୍ଥୀ ସଭ୍ୟରୂପେ ନିର୍ବାଚିତ ହୋଇ ପାରିଥିଲେ । ତାଙ୍କର ତିନିଜଣ ପ୍ରତିଦ୍ୱନ୍ଦୀ ପୃଥକ୍‌କରଣର ସମର୍ଥକ ଥିଲେ । ସେ ତିନିଜଣ ଯାକ ମିଳି ଯେତିକି ଭୋଟ ପାଇଥିଲେ, ଏହି ନିର୍ବାଚିତ ପ୍ରାର୍ଥୀ ତାହାଠାରୁ ଦଶହଜାର ଭୋଟ ଅଧିକ ପାଇଥିଲେ । ଆର୍କାନସସର ପୌରସଭାରେ ୧୯୬୦ ମସିହାରେ ଗୋଟିଏ ସଂଶୋଧନ ପ୍ରସ୍ତାବ ଆସିଥିଲା ଯେ ପୃଥକ୍‌କରଣ ବିଲୋପକୁ ଏଡ଼ିବାପାଇଁ ସ୍କୁଲବୋର୍ଡ ସ୍କୁଲ ଗୃହକୁ ବନ୍ଦକରି ଦେବେ । କିନ୍ତୁ ଏହି ସଂଶୋଧନ ପ୍ରସ୍ତାବର ସପକ୍ଷରେ ଯେତେ ଭୋଟ ମିଳିଲା, ବିରୋଧରେ ତାହାର ତିନିଗୁଣ ଭୋଟ ମିଳିଲା । ଆର୍କାନସସର ଗଭର୍ଣ୍ଣର ପୃଥକ୍‌କରଣର ପକ୍ଷପାତୀ ଥିଲେ ଏବଂ ପୃଥକ୍-କରଣକୁ ସଫଳ କରିବାପାଇଁ ତାଙ୍କର ଗୋଟିଏ ଯୋଜନାଥିଲା । ଏହି ଭୋଟ ପ୍ରମାଣ କରିଦେଲା ଯେ ଲୋକସାଧାରଣ ଏହି ନୀତିର ବିରୋଧୀ ।

ସ୍କୁଲମାନଙ୍କରେ ପୃଥକ୍‌କରଣର ବିଲୋପ ମୁଖ୍ୟତଃ ଦକ୍ଷିଣାଞ୍ଚଳର ଗୋଟିଏ ସମସ୍ୟା କିନ୍ତୁ ଉତ୍ତର ଓ ଦକ୍ଷିଣାଞ୍ଚଳର ସହରମାନଙ୍କରେ ଅନେକ ସ୍କୁଲରେ ପୃଥକ-କରଣ ସଦୃଶ ଏକ ବ୍ୟବସ୍ଥା ଦେଖାଯାଏ । ଏହି ବିଦ୍ୟାଳୟମାନଙ୍କରେ ଯେଉଁ ପ୍ରକାର ପୃଥକ୍‌କରଣ ଦେଖାଯାଏ, ତାହାର କାରଣ ଏହି ଯେ କୃଷ୍ଣକାୟ ଲୋକମାନେ ସହରର ଅଳ୍ପ କେତୋଟି ଅଂଶରେ ଏକତ୍ର ବାସ କରନ୍ତି । ୧୯୫୭ ମସିହାରେ

ଆମେରିକାନ ଇହୁଦୀ କମିଟି ହିସାବ ନେଇ ଦେଖିଥିଲେ ଯେ ସର୍ବସାଧାରଣ ସ୍କୁଲ ମଧ୍ୟରୁ ଚିକାଗୋରେ ଶତକଡ଼ା ୨୦, ସିନ୍‌ସିନାଟିରେ ଶତକଡ଼ା ୪୩, କ୍ଲିଭଲାଣ୍ଡରେ ଶତକଡ଼ା ୨୨, ଡେଟ୍ରୟଟରେ ଶତକଡ଼ା ୨୧, ଲସ୍‌ଏଞ୍ଜେଲ୍‌ସରେ ଶତକଡ଼ା ୧୫, ନିଉୟର୍କରେ ଶତକଡ଼ା ୨୦, ଫିଲାଡେଲ୍‌ଫିଆରେ ଶତକଡ଼ା ୨୭ ଓ ସାନ୍‌ଫ୍ରାନ୍‌ସିସ୍କୋରେ ଶତକଡ଼ା ୭ଟି ସ୍କୁଲରେ କୃଷ୍ଣକାୟ ଛାତ୍ରଛାତ୍ରୀଙ୍କ ସଂଖ୍ୟା ଅଧିକ ଥିଲା। ବର୍ତ୍ତମାନ ଲୋକସଂଖ୍ୟା ବୃଦ୍ଧି ସଙ୍ଗେ ଏହି ଅନୁପାତ ବୃଦ୍ଧି ପାଉଅଛି। ସମୟେ ସମୟେ ପରିପାର୍ଶ୍ୱର ପରିବର୍ତ୍ତନ ହେତୁ ସମ୍ମିଳିତ ସ୍କୁଲ ପୁଣି ପୃଥକ୍‌କୃତ ସ୍କୁଲରେ ପରିଣତ ହେଉଅଛି। ସରକାରୀ ନୀତି ଅନୁସାରେ ବାଧ୍ୟତାମୂଳକ ପୃଥକ୍‌କରଣଠାରୁ ଏ ପ୍ରକାର ପୃଥକ୍‌କରଣ ସମ୍ପୂର୍ଣ୍ଣ ଭିନ୍ନ। ଅବଶ୍ୟ ଉଲ୍ଲିଖିତ ସ୍କୁଲମାନଙ୍କରେ କେତେକ ଶ୍ୱେତାଙ୍ଗ ଛାତ୍ରଛାତ୍ରୀ ଦେଖାଯାନ୍ତି; କିନ୍ତୁ ଏହା ଅସ୍ୱୀକାର କରିହେବ ନାହିଁ ଯେ ଉତ୍ତର ଓ ପଶ୍ଚିମାଞ୍ଚଳର ବଡ଼ ବଡ଼ ସହରମାନଙ୍କରେ କୃଷ୍ଣକାୟ ବାଳକ ବାଳିକାମାନଙ୍କର ଅଧିକାଂଶ ଓ ମେକ୍‌ସିକାନ ଓ ପୁଏର୍ଟୋରିକାନ ବାଳକ ବାଳିକାମାନେ ଯେଉଁ ସ୍କୁଲମାନଙ୍କରେ ଅଧ୍ୟୟନ କରନ୍ତି, ସେଥିରେ ଆନ୍ତଃସାମ୍ପ୍ରଦାୟିକ ମିଳାମିଶାର ସୁଯୋଗ ନିତାନ୍ତ କମ୍। ଯେଉଁ ସହର ତଳି ଅଞ୍ଚଳରେ ଖୁବ୍ କମ୍ କୃଷ୍ଣକାୟ ଲୋକ ଅଛନ୍ତି ବା ଆଦୌ ନାହାନ୍ତି ସେହିଭଳି ଅଞ୍ଚଳକୁ ଅନେକ ଶ୍ୱେତାଙ୍ଗ ଚାଲି ଯାଉଅଛନ୍ତି। ତେଣୁ ଏ ପ୍ରକାର ସ୍କୁଲମାନଙ୍କରେ କୃଷ୍ଣକାୟ ଛାତ୍ରଛାତ୍ରୀମାନଙ୍କର ଆନୁପାତିକ ସଂଖ୍ୟା ବୃଦ୍ଧି ପାଇବାର ସମ୍ଭାବନା ଅଛି।

ନିଉୟର୍କର ନିଉରଚେଲରୁ ହୋଇଥିବା ଏକ ମକଦ୍ଦମାରେ ଫେଡେରାଲ କୋର୍ଟ ରାୟ ଦେଇଥିଲେ ଯେ କୌଣସି ସାଧାରଣ ଅନୁଷ୍ଠାନର କାର୍ଯ୍ୟରେ ବର୍ତ୍ତମାନ ବା ପୂର୍ବରୁ ପୃଥକ୍‌କରଣ ଘଟିଥିଲେ ସେ କାର୍ଯ୍ୟର ପୁନର୍ବିଚାର କରି ଯାଇପାରିବ। ଯେପରି ଶ୍ୱେତାଙ୍ଗ ବା କୃଷ୍ଣକାୟ କୌଣସି ଗୋଟିଏ ସମ୍ପ୍ରଦାୟର ଛାତ୍ରଛାତ୍ରୀମାନେ ଏକତ୍ର ପଢ଼ି ପାରିବାର ସୁବିଧା ବୃଦ୍ଧି ପାଇବ। ସେହି ଉଦ୍ଦେଶ୍ୟ ଦୃଷ୍ଟିରେ ରଖି ସ୍କୁଲ ଅଞ୍ଚଳ ଗଠନ କରିବାର କୌଶଳ ସମ୍ପର୍କରେ ଏହି ମକଦ୍ଦମା ହୋଇଥିଲା। ଏହି ମକଦ୍ଦମାର ରାୟ ସମ୍ବନ୍ଧରେ ନାଗରିକ ଅଧିକାର କମିଶନ ନିମ୍ନଲିଖିତ ମତ ଦେଇଥିଲେ।

ଯେଉଁ ସବୁ ସ୍କୁଲବୋର୍ଡ ସମ୍ବିଧାନ ଅନୁସାରେ ସେମାନଙ୍କ ସ୍କୁଲଗୁଡ଼ିକୁ ଚଳାଇବାକୁ ଚାହାନ୍ତି, ସେ ସବୁ ଅନୁସନ୍ଧାନ କରିବା ଉଚିତ—କୌଣସି ପୃଥକ୍ କରିଥିଲେ ତାହାର କାରଣ କଅଣ ? ସେମାନଙ୍କୁ ପ୍ରମାଣ କରିବାକୁ ହେବ ଯେ ସ୍କୁଲ ଅଞ୍ଚଳଗୁଡ଼ିକୁ ବସତି ଅନୁସାରେ ସ୍ଥିର କରି ଯାଇନାହିଁ। ହୁଏତ କୌଣସିଠାରେ ଦୈବାତ୍ ସେପରି ହୋଇ ପାରିଥାଏ; ସ୍କୁଲ ଗୃହ ସ୍ଥାପନ କରିବାପାଇଁ

ସ୍ଥାନ ଓ ଆକାର ସ୍ଥିର କଲାବେଳେ ପୃଥକ୍‌କରଣ ରଖିବା ଉଦ୍ଦେଶ୍ୟରେ କରି ଯାଉନାହିଁ ; ବସତିର ପ୍ରକାର ପ୍ରଥମରୁ ସରକାରୀ ନୀତି ଅନୁସାରେ ସ୍ଥିର କରାଯାଇ ନଥିଲା । ଉତ୍ତର ଓ ପଶ୍ଚିମାଞ୍ଚଳର ଅନେକ ସ୍କୁଲ ବୋର୍ଡ଼ ଭାବିଥିଲେ ଯେ ସେମାନେ କୌଣସି ପ୍ରକାରେ ଅଭିଯୁକ୍ତ ହୋଇ ପାରିବେ ନାହିଁ, କାରଣ ବର୍ତ୍ତମାନ ଯେଉଁ ପୃଥକ୍‌କରଣ ରହିଅଛି, ତାହା ଗୋଷ୍ଠୀ ବା ସମ୍ପ୍ରଦାୟ ଅନୁସାରେ ସ୍କୁଲ ସ୍ଥାପନର ପରିଣତି ନୁହେଁ । କିନ୍ତୁ ନଉରଟଲ ମକଦ୍ଦମାର ଉକ୍ତ ରାୟ ଅନୁସାରେ ସେମାନେ ମଧ୍ୟ ଆଇନର ପରିସର ମଧ୍ୟରେ ପଡ଼ିଗିବେ [୧୦] ।

ସ୍କୁଲବୋର୍ଡ ବା ଶାସନ ବିଭାଗୀୟ କର୍ମଚାରୀମାନେ ପ୍ରାୟ ପୃଥକ୍‌କୃତ ସ୍କୁଲମାନଙ୍କର ସଂଖ୍ୟା କମାଇବା ପାଇଁ ନାନା ଉପାୟ ଅବଲମ୍ବନ କରୁଅଛନ୍ତି । ସଂଖ୍ୟାଲଘୁ ସମ୍ପ୍ରଦାୟର ପିଲାମାନେ ଯେପରି ଅନେକ ଭିନ୍ନ ଭିନ୍ନ ସ୍କୁଲରେ ରହିଲେ, ସେହି ଉଦ୍ଦେଶ୍ୟ ରଖି ସ୍କୁଲ କକ୍ଷାମାନଙ୍କର ସୀମା ନିର୍ଦ୍ଧାରଣ କରି ଯାଉଅଛି । ସ୍ଥଳ ବିଶେଷରେ ପ୍ରାୟ ପୃଥକ୍‌କରଣର ବିପରୀତ ପନ୍ଥା ଗୃହୀତ ହେଉଅଛି । ନିଉୟର୍କ ସିଟି, କ୍ଲିଭଲାଣ୍ଡ ଓ ଅନ୍ୟ କେତେକ ସହରରେ ଗୋଟିଏ ଗୋଟିଏ ସ୍ଥାନରେ ନିଗ୍ରୋ ଓ ପିଉର୍ଟୋରିକାନ ପିଲାମାନେ ଯେପରି ପୁଞ୍ଜୀଭୂତ ନ ହୁଅନ୍ତି ସେଥିପାଇଁ ପ୍ରତିଦିନ ହଜାର ହଜାର ପିଲାଙ୍କୁ ବିଭିନ୍ନ ସ୍କୁଲ କକ୍ଷାକୁ ନେବା ଆଣିବା କରିବାର ବ୍ୟବସ୍ଥା ହୋଇଅଛି । କେତେକ ଅଞ୍ଚଳରେ ପିଲାମାନେ ନିକଟବର୍ତ୍ତୀ ପ୍ରାଥମିକ ବିଦ୍ୟାଳୟକୁ ଯାଉଥିଲେ । କିନ୍ତୁ ଏ ବ୍ୟବସ୍ଥାର ପରିବର୍ତ୍ତନ କରାଯାଇ ପ୍ରଥମ ଓ ଦ୍ୱିତୀୟ ଶ୍ରେଣୀର ପିଲାଙ୍କୁ ଗୋଟିଏ ସ୍କୁଲକୁ, ତୃତୀୟ ଓ ଚତୁର୍ଥ ଶ୍ରେଣୀର ପିଲାଙ୍କୁ ଅନ୍ୟ ଗୋଟିଏ ସ୍କୁଲକୁ ଏବଂ ପଞ୍ଚମ ଓ ଷଷ୍ଠ ଶ୍ରେଣୀର ପିଲାଙ୍କୁ ଅନ୍ୟ ଏକ ଏକ ସ୍କୁଲକୁ ପଠା ଯାଉଅଛି । ଏହାକୁ ପ୍ରିନ୍‌ସ୍ଟନ ଯୋଜନା କୁହାଯାଏ । ଏହା ଦ୍ୱାରା ପିଲାମାନଙ୍କୁ ନେବା ଆଣିବା ସମସ୍ୟା ବୃଦ୍ଧି ପାଇଥିଲେହେଁ ସ୍କୁଲମାନଙ୍କରେ ପୃଥକ୍‌କରଣ ମନୋଭାବ ହ୍ରାସ ପାଇଅଛି । ତାହା ଛଡ଼ା ଏ ଯୋଜନାର କେତେକ ଶିକ୍ଷାଗତ ଉପକାର ମଧ୍ୟ ଅଛି ।

ସ୍କୁଲମାନଙ୍କରେ ଯେଉଁ ପୃଥକ୍‌କରଣ ଦେଖାଯାଏ, ଉପର୍ଯ୍ୟୁକ୍ତ ଉପାୟମାନଙ୍କ ଦ୍ୱାରା ତାହାର କିଞ୍ଚିତ ହ୍ରାସ ହୋଇପାରେ ; କାରଣ ଆମେରିକାର ଅନେକ ଅନେକ ସହରରେ ବହୁସଂଖ୍ୟକ କୃଷ୍ଣକାୟ ଉପସମ୍ପ୍ରଦାୟ ଅଛନ୍ତି । ଭବିଷ୍ୟନ

[୧୦] ଓ୍ୱାସିଂଟନର ଗଭର୍ଣ୍ମେଣ୍ଟ ପ୍ରିଣ୍ଟିଂ ପ୍ରେସରୁ ପ୍ରକାଶିତ ରିପୋର୍ଟ ଅଫ୍ ଦ ଇଉନାଇଟେଡ଼ ଷ୍ଟେଟ୍‌ସ୍ କମିଶନ ଅନ୍ ସିଭିଲ୍ ରାଇଟସ୍, ୧୯୬୧, ଭଲ, ୨ର ୧୪୭ପୃଷ୍ଠା ଦେଖ ।

ଶିକ୍ଷା ପଦ୍ଧତି, ସହରଉନ୍ନୟନ ଯୋଜନା ଗୃହ'ନିର୍ମାଣ ପ୍ରଣାଳୀ ଏବଂ ସଂଖ୍ୟାଲଘୁ ସମ୍ପ୍ରଦାୟର ଆର୍ଥିକ ଅବସ୍ଥା ଉପରେ ସ୍କୁଲର ପ୍ରକାର ନିର୍ଭର କରେ । ଉତ୍ତରାଞ୍ଚଳର ସ୍କୁଲମାନଙ୍କରେ କାର୍ଯ୍ୟତଃ ଯେଉଁ ପୃଥକ୍‌କରଣ ଦେଖାଯାଏ, ତାହା ଗୋଟିଏ ଦ୍ୱିତୀୟ ଶ୍ରେଣୀର ସାମାଜିକ ସମସ୍ୟା । ଅଧିକାଂଶ ଶ୍ୱେତାଙ୍ଗ ପରିବାରର ଲୋକେ ସ୍କୁଲମାନଙ୍କରେ ସମ୍ମିଳିତ ପଦ୍ଧତିକୁ ନୀତି ଦୃଷ୍ଟିରୁ ଗ୍ରହଣ କରନ୍ତି । ଥରେ ପରୀକ୍ଷା ସ୍ୱରୂପ ମତ ନିଆଯାଇଥିଲା [୧୧] । ଉତ୍ତରାଞ୍ଚଳର ଶତକଡ଼ା ୭୦ ଜଣ ଶ୍ୱେତାଙ୍ଗ ପିତାମାତା ମତ ଦେଇଥିଲେ ଯେ ଯେଉଁ ସ୍କୁଲରେ ଖୁବ୍ ଅଳ୍ପ କୃଷ୍ଣକାୟ ପିଲା ପଢ଼ନ୍ତି ସେ ସ୍କୁଲକୁ ନିଜ ପିଲାଙ୍କୁ ପଠାଇବାରେ ସେମାନଙ୍କର ଆପତ୍ତି ନାହିଁ । (ଦକ୍ଷିଣାଞ୍ଚଳରେ କୃଷ୍ଣକାୟ ପିଲାଙ୍କ ଅନୁପାତ ହେଉଛି ଶତକଡ଼ା ୩୮) । ଅର୍ଥାତ୍ ଯଦି ଅଧେପିଲା କୃଷ୍ଣକାୟ ହୋଇଥାନ୍ତି ତେବେ ଶତକଡ଼ା ୫୭ ଜଣ ନିଜନିଜ ପିଲାଙ୍କୁ ସେପରି ସ୍କୁଲକୁ ପଠାଇବାକୁ ପ୍ରସ୍ତୁତ । ଶତକଡ଼ା ୩୩ ଜଣଙ୍କର ମତ ହେଲା ଯେ ଏପରି ସ୍କୁଲକୁ ନିଜ ପିଲାଙ୍କୁ ପଠାଇବାରେ ସେମାନଙ୍କର ଆପତ୍ତି ଅଛି । ଅବଶିଷ୍ଟ ଶତକଡ଼ା ୧୧ଜଣ କୌଣସି ମତ ଦେଇ ନଥିଲେ । ମୁହଁରେ ମତ ପ୍ରକାଶ କରିବା ଏକ କଥା; ମାତ୍ର କାର୍ଯ୍ୟତଃ ତାହା କରିବା ଭିନ୍ନ । ତଥାପି ମତଠାରୁ କାର୍ଯ୍ୟ ସମ୍ପୂର୍ଣ୍ଣ ପୃଥକ ହୋଇ ନ ପାରେ । ପ୍ରକୃତ ପକ୍ଷରେ ଦକ୍ଷିଣାଞ୍ଚଳର ଶ୍ୱେତାଙ୍ଗ ପିତାମାତାମାନେ ପୃଥକ କରଣର ବିଲୋପକୁ ଶାନ୍ତିପୂର୍ଣ୍ଣ ଭାବରେ ଗ୍ରହଣ କରିନେବା ଓ ଉତ୍ତରାଞ୍ଚଳରେ କୃଷ୍ଣକାୟ ପିଲାଙ୍କ ସଂଖ୍ୟା ବୃଦ୍ଧିରୁ ଜଣାଯାଏ ଯେ ଯେଉଁଠାରେ ସ୍ପଷ୍ଟ ଓ ଦୃଢ଼ ନିଷ୍ପତ୍ତି ନିଆଯାଉଅଛି, ସେଠାରେ ମତ ଓ କାର୍ଯ୍ୟ ମଧ୍ୟରେ ପ୍ରଭେଦ ଅଳ୍ପ ହେବାର ସମ୍ଭାବନା । କେତେକ ପିତାମାତା ସ୍କୁଲରେ 'ସମ୍ମିଳିତ' ଅଧ୍ୟୟନ ନୀତିକୁ ଗ୍ରହଣ କରନ୍ତି; ମାତ୍ର ଏହାର ଉପାୟଗୁଡ଼ିକ ବିଷୟରେ ଆପତ୍ତି କରନ୍ତି । ଉଦାହରଣ ସ୍ୱରୂପ ପିଲାମାନଙ୍କୁ ବସ୍ ଦ୍ୱାରା ବିଭିନ୍ନ ଅଞ୍ଚଳକୁ ନେବା ଆଣିବା ନୀତିର ବିରୋଧ ଦେଖାଯାଏ ।

ଅନ୍ୟ ପକ୍ଷରେ କାର୍ଯ୍ୟତଃ ଯେଉଁ ପୃଥକ୍‌କରଣ ରହିଅଛି, ତାହାକୁ ନିଗ୍ରୋ ପିତାମାତାମାନେ ଗ୍ରହଣ କରିନେବାକୁ ସେତେ ପ୍ରସ୍ତୁତ ନୁହନ୍ତି । କେତେକ ନିର୍ଦ୍ଦିଷ୍ଟ ଅଞ୍ଚଳର ସ୍କୁଲମାନଙ୍କରେ ନିଗ୍ରୋପିଲାଙ୍କୁ ସୀମାବଦ୍ଧ କରି ରଖିବା ନୀତିର ପ୍ରତିବାଦ କରି ନିଉୟର୍କ, ଚିକାଗୋ ଓ କ୍ଳିଭଲାଣ୍ଡର ନିଗ୍ରୋମାନେ ସ୍କୁଲ ବର୍ଜନ କରିଥିଲେ । ଏଭଳି ସ୍କୁଲଗୁଡ଼ିକ ସାଧାରଣତଃ ନୀଚସ୍ତରର । ସଂଖ୍ୟାଗୁରୁ-ସଂଖ୍ୟାଲଘୁ-ସମ୍ବନ୍ଧ ଦୃଷ୍ଟିରୁ ଦେଖିବାକୁ ଗଲେ ୧୯୫୫ ଠାରୁ ୧୯୬୦ ମସିହା ମଧ୍ୟରେ ଗୋଟିଏ ପ୍ରଧାନ କଥା ହେଉଛି ଯେ କାର୍ଯ୍ୟତଃ ବିଦ୍ୟମାନ ଥିବା ପୃଥକ୍‌କରଣର ବିଲୋପ ନିମନ୍ତେ

[୧୧] କ୍ଳୀଭଲାଣ୍ଡ ପ୍ରେସ ପତ୍ରିକାର ୧୯୬୩ ମସିହା ଜୁନ ୩୦ ତାରିଖ ସଂଖ୍ୟାର ୮ ପୃଷ୍ଠା ଦେଖ ।

ଦାବୀ ବୃଦ୍ଧି ପାଉଅଛୁ ଓ ଏହି ଦାବୀ ଅଧିକରୁ ଅଧିକ ପୂରଣ ହୋଇଅଛୁ । ସ୍କୁଲ-ମାନଙ୍କରେ ମୋଟ ଛାତ୍ରଛାତ୍ରୀ ସଂଖ୍ୟା ବୃଦ୍ଧି ପାଉଥିବାରୁ ପ୍ରଶ୍ନଟି ଜଟିଳ ହେଉଅଛୁ ସତ୍ୟ; କିନ୍ତୁ ଏହା ଫଳରେ ସ୍କୁଲ ଅଞ୍ଚଳର ସୀମାରେ ପରିବର୍ତ୍ତନ ଓ ସ୍କୁଲ ନୀତିରେ ପରିବର୍ତ୍ତନ ଘଟିବ ।

## ୫.ଛ

ଗୋଟାଏ କଥା ଅଛୁ—ରବିବାର ସକାଳ ୧୧ଟା ବେଳ ହେଉଛୁ ପୃଥକ୍-କରଣର ପ୍ରଧାନ ସମୟ । ଏହା ବହୁ ପରିମାଣରେ ସତ୍ୟ ହେଲେହେଁ ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ଏଥିରେ ପରିବର୍ତ୍ତନ ଦେଖା ଯାଇଅଛୁ । ମାର୍କିନ ଯୁକ୍ତରାଷ୍ଟ୍ରରେ ବହୁ ସଂଖ୍ୟକ ଚର୍ଚ୍ଚ ଅଛୁ । ସେମାନଙ୍କର ଆଗ୍ରହ ପ୍ରଣାଳୀରେ ଯଥେଷ୍ଟ ପାର୍ଥକ୍ୟ ଅଛୁ । ତେଣୁ ସମସ୍ତଙ୍କ ବିଷୟରେ କୌଣସି ସଂକ୍ଷିପ୍ତ ସାଧାରଣ ମତ ଦେବା ଭ୍ରମ ଜନକ ହୋଇପାରେ । ତଥାପି ଗୋଟାଏ ଭ୍ରମଶୂନ୍ୟ ଧାରଣା ଦେବା ପାଇଁ କେତୋଟି ବିଷୟର ଉଲ୍ଲେଖ କରୁଅଛି ।

ଦକ୍ଷିଣାଞ୍ଚଳରେ ଖ୍ରୀଷ୍ଟୀୟ ଧର୍ମ ସମ୍ପ୍ରଦାୟମାନଙ୍କରେ ପୃଥକ୍‌କରଣ ପୂର୍ଣ୍ଣ ମାତ୍ରାରେ ଦେଖାଯାଏ । କେତେକ ଚର୍ଚ୍ଚ ଓ ଧର୍ମଯାଜକ ସମ୍ମିଳିତ ଧର୍ମସଭାର ବିରୋଧ କରନ୍ତି । ବିଶେଷତଃ ପେଣ୍ଟେକଷ୍ଟାଲ ଫଣ୍ଡାମେଣ୍ଟାଲିଷ୍ଟମାନେ ଏହାର ଘୋର ବିରୋଧୀ । ଉଚ୍ଚ ଓ ମଧ୍ୟବିତ୍ତ ଶ୍ରେଣୀର ଚର୍ଚ୍ଚମାନଙ୍କ ମଧ୍ୟରୁ ଅନେକ ଧର୍ମ ଯାଜକ ପୃଥକ୍‌କରଣ ପ୍ରଶ୍ନ ଉଠାନ୍ତି ନାହିଁ କିମ୍ବା ଖ୍ରୀଷ୍ଟିଆନ ଧର୍ମର ଉଦାର ମନୋଭାବ ପ୍ରକାଶ କରିବାକୁ କହନ୍ତି ଅଥଚ ଉପସ୍ଥିତ କ୍ଷେତ୍ରରେ କି ପ୍ରକାର ଉପାୟ ଗ୍ରହଣ କରିବାକୁ ହେବ, ସେ ବିଷୟରେ ନୀରବ ରହନ୍ତି । ଧର୍ମ ସମ୍ପ୍ରଦାୟମାନଙ୍କରେ ଦୁଇ ମତର ଲୋକ ଥାଆନ୍ତି । କେତେକେ ପୃଥକ୍‌କରଣର ପକ୍ଷପାତୀ, ଆଉ କେତେକ ଭିନ୍ନ ମତବାଦୀ । ତେଣୁ ସେମାନେ ବିବାଦମୂଳକ ବିଷୟର ଉତ୍‌ଥାପନ କରିବାକୁ ଉଦ୍ୟମ କରନ୍ତି ନାହିଁ । [୧୨]

[୧୨] ଓ୍ୟାଶିଙ୍ଗଟନର ପବ୍ଲିକ ଆଫେୟାର୍ସ ପ୍ରେସରୁ ୧୯୫୯ ମସିହାରେ ପ୍ରକାଶିତ ଓ ଅର୍ଣ୍ଣେଷ୍ଟ କାମ୍ବେଲ ଓ ଟମାସ ପିଟିଗ୍ରୁଙ୍କ ଲିଖିତ 'ଖ୍ରୀଷ୍ଟିୟାନିଟି ଇନ୍ ରେସିଆଲ କ୍ରାଇସିସ୍—ଏ ଷ୍ଟଡି ଅଫ୍ ଲିଟିଲ୍ ରକ୍‌ସ ମିନିଷ୍ଟ୍ରି' ପୁସ୍ତକ ଦେଖ ।

ଥରେ ପଲ୍‌ପିଟ ଡାଇଜେଷ୍ଟ ପତ୍ରିକା ମତାମତ ସଂଗ୍ରହ କରୁଥିଲେ । ଶତକଡ଼ା ଅଶୀଜଣ ପ୍ରୋଟେଷ୍ଟାଣ୍ଟ ଧର୍ମଯାଜକ ନିଜର ମତ ଦେଇ ସୁପ୍ରିମ କୋର୍ଟ ଦ୍ୱାରା ସ୍କୁଲମାନଙ୍କରେ ପୃଥକକରଣକୁ ବେଆଇନ୍ କରିଥିବା ସିଦ୍ଧାନ୍ତକୁ ଅନୁମୋଦନ କରିଥିଲେ । ରିଚମଣ୍ଡ, ନେସଭିଲ୍, ଆଟଲାଣ୍ଟା ଓ ଅନ୍ୟାନ୍ୟ ନଗରର ଧର୍ମଯାଜକ ମଣ୍ଡଳୀ ନିବେଦନ କରିଥିଲେ ଯେ ସେମାନଙ୍କ ଚର୍ଚ୍ଚରୁ ପୃଥକ୍‌କରଣ ଦୂର ନ ହେଉ ପଛକେ ସ୍କୁଲମାନଙ୍କରୁ ଶାନ୍ତିପୂର୍ଣ୍ଣ ଭାବରେ ଏହା ଦୂର କରାଯାଉ । କେବଳ ଫଣ୍ଡାମେଣ୍ଟାଲିଷ୍ଟ ଶାଖାକୁ ଛାଡ଼ି ଦକ୍ଷିଣାଞ୍ଚଳର ସବୁ ବଡ ଧର୍ମ ସମ୍ପ୍ରଦାୟ ସୁପ୍ରିମ-କୋର୍ଟର ସିଦ୍ଧାନ୍ତକୁ ସମର୍ଥନ ଜଣାଇ ଅଛନ୍ତି । ଦକ୍ଷିଣାଞ୍ଚଳରେ ଶ୍ୱେତାଙ୍ଗ ଧର୍ମଯାଜକମାନେ ବ୍ୟକ୍ତିଗତ ଭାବରେ ସମ୍ମିଳନ ଦିଗରେ ଉଲ୍ଲେଖଯୋଗ୍ୟ ସାହସିକ କାର୍ଯ୍ୟ କରିଅଛନ୍ତି । ୧୯୬୩ ମସିହାରେ ମେଥଡ଼ିଷ୍ଟ ଚର୍ଚ୍ଚର ୨୮ ଜଣ ଯୁବକ ଧର୍ମ-ଯାଜକ ଚର୍ଚ୍ଚର ସ୍ୱାଧୀନତାରେ ବିଶ୍ୱାସ ପ୍ରକାଶ କରି ଓ ମାନ୍ତିଭୂମ ମିସିସିପିର ଗୋଷ୍ଠୀଗତ ଭେଦଭାବର ବିରୋଧ କରି ଏକ ଘୋଷଣା ପତ୍ର ପ୍ରକାଶ କରିଥିଲେ । ଏହା ଫଳରେ ସେମାନେ ନିଜ ଧର୍ମ ସମାଜରୁ ବିତାଡ଼ିତ ହୋଇଥିଲେ ବା ଅନ୍ୟ ପ୍ରକାର କଷ୍ଟ ଭୋଗ କରିଥିଲେ । [୧୩]

ଉତ୍ତରାଞ୍ଚଳର ଅଧିକାଂଶ ଧର୍ମସଭାରେ ପୃଥକ୍‌କରଣ ଅନୁସୃତ ହୁଏ । ଦକ୍ଷିଣାଞ୍ଚଳ ପରି ଏଠାରେ ମଧ୍ୟ ନିମ୍ନଶ୍ରେଣୀର ଲୋକମାନେ, ଗ୍ରାମାଞ୍ଚଳରୁ ଅଳ୍ପକାଳ ପୂର୍ବରୁ ସହରକୁ ଆସିଥିବା ଲୋକମାନେ ଏବଂ ଅନ୍ୟ ଫଣ୍ଡାମେଣ୍ଟାଲିଷ୍ଟମାନେ ଚର୍ଚ୍ଚ ବିଷୟରେ ପୃଥକ୍‌କରଣର ବିରୋଧ ଅଟନ୍ତି । ପ୍ରତିଷ୍ଠିତ ଧର୍ମସମ୍ପ୍ରଦାୟମାନଙ୍କ ଧର୍ମସଭା ମଧ୍ୟରୁ ଅଧିକାଂଶ ପୃଥକ୍‌କରଣ ନୀତି ଅନୁସରଣ କରନ୍ତି । ଏଠାରେ ଗୋଟିଏ କଥା ସ୍ମରଣ ରଖିବାକୁ ହେବ । ସେମାନେ ଯେ କୃଷ୍ଣକାୟ ଲୋକଙ୍କୁ ଧର୍ମସଭାରେ ଗ୍ରହଣ କରିବାକୁ ଅନିଚ୍ଛୁକ, ତାହା ନୁହେଁ । ହୁଏତ ଆଖପାଖରେ ନିଗ୍ରୋ ବା ଅନ୍ୟ କୃଷ୍ଣକାୟ ଲୋକ ନ ଥାଇପାରନ୍ତି, କିମ୍ବା ଥିଲେ ମଧ୍ୟ ସେମାନେ ଶ୍ୱେତାଙ୍ଗମାନଙ୍କ ଚର୍ଚ୍ଚ ସଙ୍ଗେ ସମ୍ବନ୍ଧ ରଖିବାକୁ ଚାହାନ୍ତି ନାହିଁ । ପୁଣି ଆଜକାଲି ଉତ୍ତରାଞ୍ଚଳର ସୁପ୍ରତିଷ୍ଠିତ ପ୍ରୋଟେଷ୍ଟାଣ୍ଟ ଓ କାଥଲିକ ଚର୍ଚ୍ଚ ଅନ୍ତର୍ଗତ ସଂଖ୍ୟାଲଘୁ ସମ୍ପ୍ରଦାୟରେ ବିଭିନ୍ନ ଗୋଷ୍ଠୀ ମିଳିଥିବାର ଦେଖାଯାଏ । ସମ୍ଭବତଃ ଏମାନଙ୍କର ସଂଖ୍ୟା ଶତକଡ଼ା ୧୦ ହେବ । ଏହି ପରିବର୍ତ୍ତନ ଅଳ୍ପଦିନ ହେଲା ଘଟିଅଛି । ଅଧିକାଂଶ କ୍ଷେତ୍ରରେ ପୃଥକ୍‌କରଣର ବିଲୋପ ବିଗତ ଦଶବର୍ଷ ଭିତରେ ହୋଇଅଛି । ସାଧାରଣଭାବରେ ଦେଖିବାକୁ ଗଲେ ବହୁଳ ପରିମାଣରେ ସମ୍ମିଳନ ଘଟିଛି ବୋଲି

[୧୩] ନିଉୟର୍କ ଟାଇମସ ପତ୍ରିକାର ୧୯୬୩ ମସିହା ଜୁନ ୩୦ ତାରିଖ ସଂଖ୍ୟାର ୮ ପୃଷ୍ଠା ଦ୍ରଷ୍ଟବ୍ୟ ।

କୁହା ଯାଇ ପାରିବ ନାହିଁ । ମାତ୍ର ପ୍ରାଚ୍ୟ ଦେଶାଗତ କେତେକ ପରିବାର ଓ କେତେକ ନିଗ୍ରୋ ପରିବାର ଏବେ ଶ୍ୱେତାଙ୍ଗମାନଙ୍କ ଚର୍ଚ୍ଚରେ ସ୍ଥାନ ପାଇଅଛନ୍ତି । ସାଧାରଣତଃ ଏମାନେ ହେଉଛନ୍ତି କର୍ମଶ୍ରେଣୀ ଓ ବ୍ୟବସାୟୀ ଲୋକ । ଏମାନଙ୍କ ଶିକ୍ଷାଦୀକ୍ଷା ଓ ଆୟ ଶ୍ୱେତାଙ୍ଗମାନଙ୍କ ସହିତ ସମାନ । ଅଳ୍ପ କେତେକ ସ୍ଥଳରେ ଯେଉଁଠାରେ କୃଷ୍ଣକାୟମାନଙ୍କ ସଂଖ୍ୟା ଯଥେଷ୍ଟ ବୃଦ୍ଧି ପାଇଅଛି, ସେଠାରେ ଧର୍ମସଭାମାନଙ୍କରେ ଅଧିକ ସମ୍ମିଳନ ଦେଖାଯାଇଅଛି । ଅଳ୍ପ କେତେକ କ୍ଷେତ୍ରରେ ଶ୍ୱେତାଙ୍ଗ ଓ କୃଷ୍ଣକାୟ ଉଭୟ ଶ୍ରେଣୀର ଧର୍ମଯାଜକ ଅଛନ୍ତି ।

ମୋଟ ଉପରେ ଚର୍ଚ୍ଚମାନଙ୍କରେ ଏହିସବୁ ଯେଉଁ ବିଭିନ୍ନ ମନୋଭାବ ଦେଖାଯାଉଅଛି, ସେଥିରୁ ଜଣାଯାଏ ଯେ ପୃଥକ୍‌କରଣର ବିଲୋପ ଦିଗରେ ଗୋଟାଏ ସ୍ରୋତର ସୃଷ୍ଟି ହୋଇଅଛି [୧୪] ।

## ସର୍ବସାଧାରଣ ସ୍ଥାନ

ସର୍ବସାଧାରଣ ସ୍ଥାନମାନଙ୍କରେ ସଂଖ୍ୟାଲଘୁ ସମ୍ପ୍ରଦାୟର ଲୋକଙ୍କ ସ୍ଥାନ-ବିଷୟରେ କୌଣସି ସାଧାରଣ ମତ ପ୍ରକାଶ କରିବା କଠିନ ଓ ବିପଜ୍ଜନକ ମଧ୍ୟ । ସର୍ବସାଧାରଣଙ୍କ ପାଇଁ ପ୍ରତିଷ୍ଠିତ ଓ ସର୍ବସାଧାରଣଙ୍କ ଦ୍ୱାରା ଓ ଘରୋଇ ଭାବରେ ପରିଚାଳିତ ସୁବିଧାମାନଙ୍କର ସଂଖ୍ୟା ହଜାର ହଜାର ହେବ । ସେମାନଙ୍କର ନୀତି ମଧ୍ୟ ଭିନ୍ନ ଭିନ୍ନ । କେଉଁଠାରେ ପୂର୍ଣ୍ଣରୂପେ ସମ୍ମିଳନ ଚାଲୁଅଛି ତ ଆଉ କେଉଁଠାରେ ପୂର୍ଣ୍ଣରୂପେ ପୃଥକ୍‌କରଣ ନୀତି ଅନୁସୃତ ହେଉଅଛି । ଏହି ବିଭିନ୍ନତା ସତ୍ତ୍ୱେ ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ସର୍ବସାଧାରଣ ସ୍ଥାନମାନଙ୍କରେ ବିପୁଳ ପରିମାଣରେ ପୃଥକ୍‌କରଣର ବିଲୋପ ଦେଖାଯାଇଅଛି ବୋଲି କହିଲେ କିଛି ମାତ୍ର ଭୁଲ ହେବ ନାହିଁ । ଏପରି କହିବାର କାରଣ କଅଣ ?

ଯୁଦ୍ଧ ପୂର୍ବରୁ ହୋଟେଲମାନଙ୍କରେ ପୃଥକ୍‌କରଣ ପ୍ରଚଳିତ ଥିଲା ; ଏପରିକି ଉତ୍ତରାଞ୍ଚଳର ବଡ଼ ବଡ଼ ସହର ମାନଙ୍କରେ ଏହା ଥିଲା । ବିଭିନ୍ନ ଗୋଷ୍ଠୀର

---

[୧୪] ମାଥିଉ ଅହମ୍ମନ୍‌ଙ୍କ ଦ୍ୱାରା ସମ୍ପାଦିତ ଓ ହେନରି ରେଗନେରି କମ୍ପାନୀ (ଚିକାଗୋ)ଙ୍କ ଦ୍ୱାରା ୧୯୬୩ ମସିହାରେ ପ୍ରକାଶିତ ରେସ୍ : ଚ୍ୟାଲେଞ୍ଜ ଟୁ ରିଲିଜିଅନ୍ ଓ ହାପର ଏଣ୍ଡ ବ୍ରୋଁଙ୍କ ଦ୍ୱାରା ୧୯୫୯ ମସିହାରେ ପ୍ରକାଶିତ ଓ କାଇଲ୍ ହେସେଲଡନ୍‌ଙ୍କ ଲିଖିତ 'ଦ ରେସିୟାଲ ପ୍ରୋବ୍ଲେମ ଇନ୍ କ୍ରିଶ୍ଚିୟାନ ପାରସ୍ପେକ୍ଟିଭ୍' ପୁସ୍ତକଦ୍ୱୟ ଦେଖ ।

ଲୋକଙ୍କ ଦ୍ୱାରା ଗଠିତ ସମାଜର ସଭ୍ୟମାନେ ଏଭଳି ହୋଟେଲରେ ସ୍ଥାନ ପାଇ-ପାରୁଥିଲେ କିନ୍ତୁ ବ୍ୟକ୍ତିଗତ ଭାବରେ କୌଣସି କୃଷ୍ଣକାୟ ଲୋକ କଦାପି ସ୍ଥାନ ପାଇ ପାରୁ ନଥିଲା । ଉତ୍ତରାଞ୍ଚଳର ପ୍ରାୟ ସବୁ ରାଜ୍ୟରେ ନାଗରିକ ଅଧିକାର ସମ୍ପର୍କିତ ଆଇନ ପ୍ରଚଳିତ ଥିଲା । ଏହି ଆଇନ ଅନୁସାରେ ପ୍ରତ୍ୟେକ ହୋଟେଲ ସର୍ବ-ସାଧାରଣର ଯେକୌଣସି ଲୋକକୁ ଗୋଷ୍ଠୀ, ଧର୍ମ ବା ଜାତୀୟ ଉତ୍ପତ୍ତି ନିର୍ବିଶେଷରେ ସ୍ଥାନ ଦେବାର କଥା । ବର୍ତ୍ତମାନ ୨୧ଟି ରାଜ୍ୟରେ ଏ ପ୍ରକାର ଆଇନ ଅଛି । କିନ୍ତୁ ବାରମ୍ବାର ଆଇନର ଲଙ୍ଘନ ହୋଇଥିଲେ ହେଁ ଦୋଷୀକୁ କୌଣସି ଦଣ୍ଡ-ବିଧାନ କରାଯାଇ ନାହିଁ । ଯୁଦ୍ଧ ପରେ ଅନେକ କାରଣରୁ ଏହି ଅବସ୍ଥାର ପରି-ବର୍ତ୍ତନ ଘଟିଲା । କୃଷ୍ଣକାୟ ଆମେରିକା ବାସୀଙ୍କର ଆର୍ଥିକ ଉନ୍ନତି ହେଲା । ତେଣୁ କୃଷ୍ଣକାୟ ଗ୍ରାହକମାନଙ୍କୁ ଅବହେଳା କଲେ ହୋଟେଲର କ୍ଷତି ହେଲା । ସେମାନେ ଏଣିକି ରାଜନୀତିରେ ଅଧିକ ଅଂଶ ଗ୍ରହଣ କଲେ । ସର୍ବସାଧାରଣଙ୍କ ଅଧିକାର ବିଷୟକ ଆଇନକୁ ଅମାନ୍ୟ କଲେ କ୍ଷତିର ସମ୍ଭାବନା ବୃଦ୍ଧି ପାଇଲା । ରାଜ୍ୟସ୍ତରରେ ଓ ସ୍ଥାନୀୟ ଭାବରେ ଭେଦଭାବ ବିରୋଧୀ କମିଶନମାନ ପ୍ରତିଷ୍ଠିତ ହୋଇଅଛି । ନାଗରିକ ଅଧିକାର ବିଷୟରେ ସେମାନଙ୍କୁ କେତେକ ଦାୟିତ୍ୱ ଦିଆଯାଇଅଛି । ସମସ୍ତଙ୍କୁ ଯେପରି ସମ୍ପ୍ରତି ସୁଯୋଗ ମିଳେ, ସେଥିପାଇଁ ଲୋକମତ ଅନୁକୂଳ ହୋଇ-ଅଛି । ଏହା ଫଳରେ ଉତ୍ତର ଓ ପଶ୍ଚିମାଞ୍ଚଳର ବଡ ବଡ ସହରମାନଙ୍କରେ ସବୁ ବଡ ହୋଟେଲ ଓ ଥିଏଟରମାନଙ୍କରେ ପୃଥକ୍‌କରଣର ବିଲୋପ ହୋଇଅଛି । କେତେକ ଛୋଟ ବ୍ୟବସାୟ ଅନୁଷ୍ଠାନରେ ଓ କେତେକ ଛୋଟ ସହରରେ ଏହା ସେତେଦୂର ଦେଖାଯାଏ ନାହିଁ ।

ସୀମାନ୍ତବର୍ତ୍ତୀ ସହରମାନଙ୍କରେ ମଧ୍ୟ ପୃଥକକରଣର ବିଲୋପ ଘଟିଅଛି; ବିଶେଷତଃ ଓ୍ୱାଶିଂଟନରେ । ଦେଶର ରାଜଧାନୀରେ ପୃଥକକରଣ ହେତୁ ଅନେକ ଅସୁବିଧାର ସୃଷ୍ଟି ହେଉଥିଲେହେଁ ଅଧିକାଂଶ ସର୍ବସାଧାରଣ ସୁବିଧାରେ ପୃଥକକରଣ ୧୯୫୦ ମସିହା ପର୍ଯ୍ୟନ୍ତ ଅନୁସୃତ ହେଉଥିଲା । ପରିବର୍ତ୍ତନର ବିଶଦ ବିବରଣୀ ଦେବାର ପ୍ରୟୋଜନ ନାହିଁ । ଏତିକି କହିଲେ ଯଥେଷ୍ଟ ହେବ ଯେ ଶାସନଗତ କାର୍ଯ୍ୟାନୁଷ୍ଠାନ, ଅଦାଲତମାନଙ୍କର ନିଷ୍ପତ୍ତି, ଆନ୍ତର୍ଜାତିକ ଘଟଣାବଳୀ ଓ ଲୋକମତର ପରିବର୍ତ୍ତନ ଫଳରେ ବଡ ବଡ ହୋଟେଲ, ଥିଏଟର, ସନ୍ତରଣ ପୁଷ୍କରିଣୀ ପ୍ରଭୃତିରେ ଏବଂ ଅନ୍ୟ ଏକ ପ୍ରସଙ୍ଗରେ ବିଦ୍ୟାଳୟମାନଙ୍କରେ ପୃଥକକରଣର ବିଲୋପ ହୋଇ-ଅଛି । ଯେଉଁମାନେ ଓ୍ୱାଶିଂଟନର ୧୯୫୦ ମସିହାର ପୂର୍ବବର୍ତ୍ତୀ ଅବସ୍ଥା ଓ ପରବର୍ତ୍ତୀ ଅବସ୍ଥା ଦେଖିଅଛନ୍ତି, ସେମାନେ ବୁଝି ପାରିବେ ଯେ କିପରି ଦ୍ରୁତ ଓ ବିରାଟ ପରିବର୍ତ୍ତନ ଘଟି ଯାଇଅଛି । ସେଣ୍ଟଲୁଇସ, ସିନସିନାଟି, ଲୁଇସଭିଲ ଓ

ଅନ୍ୟାନ୍ୟ ସୀମାନ୍ତବର୍ତ୍ତୀ ସହରମାନଙ୍କରେ ମଧ୍ୟ ତଦ୍ରୂପ ପରିବର୍ତ୍ତନ ଲକ୍ଷ୍ୟ କରାଯାଇ ପାରେ ; କିନ୍ତୁ ଏହି ପରିବର୍ତ୍ତନ ସେତେ ବ୍ୟାପକ ନୁହେଁ ।

ବୋଧହୁଏ ଦକ୍ଷିଣାଞ୍ଚଳରେ ଯେଉଁ ପରିବର୍ତ୍ତନ ଘଟିଅଛି, ତାହା ସର୍ବାପେକ୍ଷା କମ ବ୍ୟାପକ ହେଲେହେଁ ସବୁଠାରୁ ଅଧିକ ଗୁରୁତ୍ୱପୂର୍ଣ୍ଣ । ଯେଉଁ ଅଞ୍ଚଳମାନଙ୍କରେ ରାଜ୍ୟ ସ୍ତରରେ ନାଗରିକ ଅଧିକାର ଆଇନ ପ୍ରବର୍ତ୍ତିତ ହୋଇନାହିଁ ଓ ପୃଥକ୍‌କରଣ ବିଲୋପର ବିରୋଧରେ ଜନମତ ପ୍ରବଳ, ସେହି ଅଞ୍ଚଳମାନଙ୍କରେ ମଧ୍ୟ ସର୍ବସାଧାରଣ ସୁବିଧା ସମ୍ମିଳିତ ଭାବରେ ସମସ୍ତଙ୍କୁ ଦେବାପାଇଁ କେତେକ ଉପାୟ ଗ୍ରହଣ କରାଯାଇଅଛି । ପାଞ୍ଚବର୍ଷ ପୂର୍ବରୁ ଏ ପ୍ରକାର ଉପାୟ କଳ୍ପନାର ଅତୀତ ଥିଲା । ୧୯୪୬ ମସିହାରେ ସୁପ୍ରିମ କୋର୍ଟ ଆଦେଶ ଦେଲେ ଯେ ରାଜ୍ୟ ରାଜ୍ୟ ମଧ୍ୟରେ ଭ୍ରମଣ ଓ ପ୍ରାନ୍ତୀୟ ସ୍ଥାନମାନଙ୍କରେ ପୃଥକ୍‌କରଣ ରହି ପାରିବ ନାହିଁ । ଅଳ୍ପ କେତେ ବର୍ଷ ଭିତରେ ରାଜ୍ୟ ରାଜ୍ୟ ମଧ୍ୟରେ ଭ୍ରମଣ କରିବା ପାଇଁ ଯେ କେହି—ସେ ଶ୍ୱେତାଙ୍ଗ ହେଉ ବା କୃଷ୍ଣକାୟ ହେଉ—ବସ୍, ଟ୍ରେନ ବା ଏରୋପ୍ଳେନରେ ଟିକଟ କିଣି ପାରିବା ନିୟମ ଚଳିଲା । କିନ୍ତୁ ପ୍ରାନ୍ତୀୟ ସ୍ଥାନରେ ରହିବାରେ ଥିବା ପ୍ରତିବନ୍ଧକର ପରିବର୍ତ୍ତନ ମନ୍ଥର ହୋଇଥିଲା । ୧୯୫୫ ଠାରୁ ୧୯୫୭ ମସିହା ମଧ୍ୟରେ ସୁପ୍ରିମ କୋର୍ଟ ଓ ଅନ୍ୟାନ୍ୟ ଫେଡେରାଲ କୋର୍ଟ କେତେଗୁଡ଼ିଏ ନିଷ୍ପତ୍ତି ଦେଲେ । ଏହା ଫଳରେ ରାଜ୍ୟ ସ୍ତରରେ ବା ସ୍ଥାନୀୟ ଭାବରେ ଯେଉଁସବୁ ନିୟମ ଅନୁସାରେ ସର୍ବସାଧାରଣ ଯାନବାହନରେ ଶ୍ୱେତାଙ୍ଗ ଓ କୃଷ୍ଣକାୟଙ୍କ ବସିବା ପାଇଁ ସ୍ୱତନ୍ତ୍ର ସ୍ଥାନର ବ୍ୟବସ୍ଥା ଥିଲା, ସେସବୁ ନିୟମକୁ ଅସିଦ୍ଧ କରି ଦିଆଗଲା ଏବଂ ସର୍ବସାଧାରଣ ଆମୋଦ-ପ୍ରମୋଦରେ ସମ୍ମିଳିତ ସ୍ଥାନର ବ୍ୟବସ୍ଥା ରହିଲା । ଏହି ସବୁ ନିଷ୍ପତ୍ତି ବହୁ କ୍ଷେତ୍ରରେ ପ୍ରତିପାଳିତ ହେଉ ନଥିବାର ପ୍ରମାଣ ମିଳେ । ଫ୍ରିଡମ୍ ରାଇଡର୍ସ ଆନ୍ଦୋଳନ ଏହାର ଏକ ନିଦର୍ଶନ । ଅନେକେ ନୂତନ ବ୍ୟବସ୍ଥାର ପ୍ରତିବାଦ କରିଥିଲେ । ସେମାନଙ୍କ ପ୍ରତିବାଦ ଓ ସେମାନଙ୍କ ଉପରେ ସଂଘଟିତ ଅତ୍ୟାଚାର ହେତୁ ଇଣ୍ଟରଷ୍ଟେଟ କମର୍ସ କମିଶନ ବସିଲା । ୧୯୬୧ ମସିହାର ସେପ୍ଟେମ୍ବର ମାସରେ ଉକ୍ତ କମିଶନଙ୍କ ନିର୍ଦ୍ଦେଶ ଅନୁସାରେ ଆନ୍ତଃରାଜ୍ୟ ଭ୍ରମଣର ସୁବିଧାରେ ପୃଥକ୍‌କରଣ ନିଷିଦ୍ଧ କରାଗଲା । ଏହି ନିର୍ଦ୍ଦେଶ ସର୍ବତ୍ର ପାଳିତ ହେଉଅଛି ।

ଏହିସବୁ ପରିବର୍ତ୍ତନ ଅଦାଲତ ଓ ଅନ୍ୟାନ୍ୟ ସାଧାରଣ ଅନୁଷ୍ଠାନର ନିଷ୍ପତ୍ତି-କ୍ରମେ ହୋଇଥିଲା । ଏମାନଙ୍କ ଠାରୁ ଆହୁରି ଗୁରୁତ୍ୱପୂର୍ଣ୍ଣ ଗୋଟିଏ ପରିବର୍ତ୍ତନ ହେଉଛି ଯେ ଦକ୍ଷିଣାଞ୍ଚଳର ମଧ୍ୟ ଓ ଉତ୍ତରାଂଶ, ଏବଂ କେତେକ ପରିମାଣରେ ସୁଦୂର ଦକ୍ଷିଣାଂଶର ବାଣିଜ୍ୟ କେନ୍ଦ୍ରମାନଙ୍କରେ ପୃଥକ୍‌କରଣର ବିଲୋପ ହୋଇଅଛି । ପୃଥକ୍‌କରଣ ଦୂର କରିବାପାଇଁ ଯେଉଁ ବସିରହିବା ଆନ୍ଦୋଳନ ହୋଇଥିଲା, ତାହା

ବିରୋଧ ସୃଷ୍ଟି କରିଥିଲା ଓ କେତେକ ଗଣ୍ଡଗୋଳ ହୋଇଥିଲା ମାତ୍ର ଶାନ୍ତିପୂର୍ଣ୍ଣ ଶୋଭାଯାତ୍ରା ଓ ଆପୋଷ ବୁଝାମଣା ଫଳରେ ଅନେକ ସ୍ଥଳରେ ଖାଦ୍ୟଦ୍ରବ୍ୟ ବିକ୍ରୟ, ହୋଟେଲ, ପ୍ରମୋଦ ଉଦ୍ୟାନ, ପୁସ୍ତକାଗାର, ଚିଡ଼ିଆଖାନା ଓ ଅନ୍ୟାନ୍ୟ ସର୍ବ-ସାଧାରଣ ସୁବିଧା ସବୁ ଗୋଷ୍ଠୀର ପ୍ରତ୍ୟେକ ଲୋକପାଇଁ ଉନ୍ମୁକ୍ତ ହୋଇଥିଲା । ନିଗ୍ରୋ କଲେଜ ଛାତ୍ରମାନେ, ଶ୍ୱେତାଙ୍ଗ ବ୍ୟବସାୟୀମାନେ ଓ ଅନେକ ଧର୍ମୀୟ ଅନୁଷ୍ଠାନ ଏହି ପରିବର୍ତ୍ତନ ଆଣିବାରେ ସାହାଯ୍ୟ କରିଅଛନ୍ତି । ଏହାର ଫଳସ୍ୱରୂପ ୧୯୬୦ ମସିହା ଠାରୁ ଦକ୍ଷିଣାଞ୍ଚଳର ପ୍ରାୟ ପ୍ରତ୍ୟେକ ରାଜ୍ୟରେ ଶତଶତ ସର୍ବ-ସାଧାରଣଙ୍କ ବ୍ୟବହାର୍ଯ୍ୟ ସ୍ଥାନରେ ପୃଥକ୍‌କରଣ ବିଲୋପ ପାଇଅଛି ।

ଦକ୍ଷିଣାଞ୍ଚଳରେ ପୃଥକ୍‌କରଣ ବିଲୋପ ବହୁଦୂର ଅଗ୍ରସର ହୋଇ ପାରିନାହିଁ । ଗ୍ରାମାଞ୍ଚଳ ମାନଙ୍କରେ ଆଦୌ ପ୍ରବେଶ କରିନାହିଁ ବୋଲି କୁହାଯାଇ ପାରେ । ମାତ୍ର ସହରମାନଙ୍କରେ ଏହାର ଆରମ୍ଭ ଯେ ଗୁରୁତ୍ୱପୂର୍ଣ୍ଣ, ସ୍ୱୀକାର କରିବାକୁ ହେବ ।

## ସ୍ୱରୁଚିକଳା ଓ ଆମୋଦ ପ୍ରମୋଦର ମାଧ୍ୟମ

ନିଗ୍ରୋମାନେ ସଙ୍ଗୀତ ବିଦ୍ୟାରେ ଓ ଅଭିନୟ୍ରାଧିରେ କୃତିତ୍ୱ ପ୍ରଦର୍ଶନ କରିଥିବାରୁ ଯେ କେହି ଅନୁମାନ କରିବାର କଥା ଯେ ଆମେରିକା ବାସୀଙ୍କ ପକ୍ଷରେ ଏ କ୍ଷେତ୍ରରେ ସମ୍ମିଳନ ଘଟିଥିବ । କିନ୍ତୁ ସମ୍ମିଳିତ ସଙ୍ଗୀତଦଳ ବା ଅଭିନେତା ଦଳ କ୍ୱଚିତ୍ ଦେଖାଯାନ୍ତି । କେତେକ ଜାଜ ନୃତ୍ୟଦଳରେ ବିଭିନ୍ନ ଗୋଷ୍ଠୀର ଲୋକ ଥିବାର ଦେଖାଯାଏ । ଅଳ୍ପ କେତେବର୍ଷ ହେଲା ମେଟ୍ରୋପଲିଟାନ ଅପେରା ଆସୋସିଏସନ ନିଗ୍ରୋ କଳାକାରମାନଙ୍କୁ ନିଯୁକ୍ତ କରିଅଛନ୍ତି । କେତେକ ଅର୍କେଷ୍ଟ୍ରା ଓ କୋରସଗାୟକ ଦଳରୁ ପୃଥକ୍‌କରଣ ଲୋପ ପାଇଅଛି । କେତେକ ନିଗ୍ରୋ କଳାକାର ଉଚ୍ଚ ଦରର, ନୂତନ ଧରଣର ଭୂମିକା ନେଇ ରଙ୍ଗମଞ୍ଚରେ, ଟେଲିଭିଜନ ଅଭିନୟରେ ଏବଂ ସିନେମାରେ ଅବତୀର୍ଣ୍ଣ ହୋଇଅଛନ୍ତି । ୧୯୬୩ ମସିହାରେ ଯେଉଁ ପ୍ରତିବାଦ ଆନ୍ଦୋଳନ ହେଲା, ତାହା ଫଳରେ ଟେଲିଭିଜନର ବିଜ୍ଞାପନରେ ଓ ପ୍ରଚଳିତ କାର୍ଯ୍ୟକ୍ରମରେ ନିଗ୍ରୋମାନଙ୍କ ସ୍ଥାନ ଯଥେଷ୍ଟ ବୃଦ୍ଧି ପାଇଅଛି ।

ଏଗୁଡ଼ିକ ଆରମ୍ଭ ମାତ୍ର ହେଲେହେଁ ଗୁରୁତ୍ୱପୂର୍ଣ୍ଣ । ଆଉ ଗୋଟିଏ କଥା ଲକ୍ଷ୍ୟ କରାଯାଇପାରେ । ଏଥିପୂର୍ବରୁ ସଂଖ୍ୟାଲଘୁ ସମ୍ପ୍ରଦାୟର ଲୋକଙ୍କୁ ଚିରାଚରିତ ପ୍ରଥା ଅନୁସାରେ କେବଳ ବିଦ୍ରୂପପୂର୍ଣ୍ଣ ଭୂମିକା ଦିଆଯାଉଥିଲା । ଏବେ ସେ ପ୍ରକାର ମନୋଭାବ ଯଥେଷ୍ଟ କମ୍ ହୋଇଯାଇଅଛି । ସମାଜରେ କୌଣସି କାର୍ଯ୍ୟାନ୍ୱିତ

ସମ୍ପ୍ରଦାୟର ବାସ୍ତବ ଜୀବନ ଓ ତାର ଉଦ୍ୟମକୁ କଳାରୂପେ ଚିତ୍ରଣ କରିବା ଏକ କଥା, ତାର ଜୀବନକୁ ବିକୃତଭାବରେ ଚିତ୍ରଣ କରି ଅବମାନନା କରିବା ବା ବିଦ୍ରୂପ କରିବା ତାହାଠାରୁ ସମ୍ପୂର୍ଣ୍ଣ ଭିନ୍ନ ।

ବର୍ଣ୍ଣନାତ୍ମକ ବିବରଣୀରୁ କ୍ଷାନ୍ତ ହୋଇ ମୁଁ ବର୍ତ୍ତମାନ ଗୋଟିଏ ନୀତିଗତ ମତ ଦେବାକୁ ଯାଉଅଛି । କଳାକାର ସଂଖ୍ୟାଲଘୁ ସମ୍ପ୍ରଦାୟର ଲୋକଙ୍କଠାରେ କ୍ରୂରତା ଓ କଦାଚାର ଚିତ୍ରଣ କରିବା ସଙ୍ଗେ ତାହାଠାରେ କୋମଳତା ଓ ସାହସ ମଧ୍ୟ ଅଛି ବୋଲି ଚିତ୍ରଣ କରିବାକୁ ବାଧ୍ୟ । କିନ୍ତୁ ଅନେକ ଚିତ୍ରାଙ୍କନୀ ଲୋକ ନିଜର ନିଜର କଳ୍ପନା ଅନୁସାରେ ସେମାନଙ୍କୁ ହାସ୍ୟାସ୍ପଦ ବିକୃତରୂପେ ଚିତ୍ରଣ କରିଥାନ୍ତି । ଏହା ପ୍ରକୃତ କଳା ନୁହେଁ । ସମୟେ ସମୟେ ଏପରି ବିଦ୍ରୂପକାରୀଙ୍କୁ ଆମେରିକାନା ବା ମାର୍କିନ କଳା ବୋଲି କହି କେତେକେ ସମର୍ଥନ କରିଥାନ୍ତି ଏବଂ ଯେଉଁମାନେ ଏହି ବିଦ୍ରୂପର ପାତ୍ର ସେମାନେ ଏହାକୁ ପରିହାସରୂପେ ଗ୍ରହଣ କରିବା ଉଚିତ ବୋଲି କହିଥାନ୍ତି । ଏହି ମତ ସମ୍ବନ୍ଧରେ ଦୁଇଟି କଥା କୁହାଯାଇପାରେ । କେତେକ ତଥାକଥିତ ମାର୍କିନକଳାର ଅଙ୍ଗ, (ଯଥା—ମୁହଁରେ କଳା ବୋଳି ନିଗ୍ରୋ ଗୀତ ଗାଇବା) କଳା ଦୃଷ୍ଟିରୁ ତଥା ଇତିହାସ ଦୃଷ୍ଟିରୁ ମଧ୍ୟମ ଧରଣର । ଯାହାହେଉ ଏ ଗୁଡ଼ିକୁ ଏକେବାରେ ଲୁପ୍ତ କରିଦେଲେ କ୍ଷତି କଅଣ ? କୌଣସି ପରିହାସର ପ୍ରକୃତ ପରୀକ୍ଷା ହେଉଛି, ତାହାକୁ ନିଜଠାରେ ପ୍ରୟୋଗକରି ଦେଖିବା । ବୋଧହୁଏ ପୂର୍ବକାଳରେ 'ଭଦ୍ରବ୍ୟକ୍ତିର ଲକ୍ଷଣ' କହିଲେ ଯାହା ବୁଝାଯାଉଥିଲା, ତାହା ଆମର ପଥଦର୍ଶକ ହୋଇ ପାରିବ । ମୋ ମତରେ ଭଦ୍ରବ୍ୟକ୍ତିର ପ୍ରଧାନ ଲକ୍ଷଣ ଏହି ଯେ ଯେଉଁ କାର୍ଯ୍ୟ ଦ୍ୱାରା ଅନ୍ୟ କୌଣସି ଲୋକର ସମ୍ମାନରେ ଆଘାତ ଲାଗେ ସେପରି କାର୍ଯ୍ୟକୁ ସେ ଘୃଣାକରେ । ଲଳିତ୍ୟ ବା ସୌଜନ୍ୟ ଓ ଭଦ୍ରତା ଉଭୟ ଦିଗରୁ ପ୍ରୟୋଗ କରାଯିବା ଉଚିତ । ଦୁଃଖର ବିଷୟ ଏହି ଯେ ଯେଉଁମାନଙ୍କୁ ବିଦ୍ରୂପ କରାଯାଏ, ସେମାନେ ଧୀର ଓ ଭଦ୍ର ଭାବରେ ଭର୍ତ୍ସନା ନକରି ପ୍ରତିହିଂସା ନେବାକୁ ଚେଷ୍ଟା କରନ୍ତି । କଳାର ଉଚ୍ଚ ଆଦର୍ଶ ଓ ମାନବିକତା ବୋଧର ଉଦ୍‌ବୋଧନ ନକରି ଅନୈକତାନିରୋଧ ଆଇନର ଆଶ୍ରୟ ନିଅନ୍ତି । କିନ୍ତୁ ଏ କ୍ଷେତ୍ରରେ ଯେଉଁମାନେ ସମାଜରେ ଅଧିକ ନିରାପଦ ଓ ଅଧିକ ଶକ୍ତିଶାଳୀ, ସେହି ମାନଙ୍କର କର୍ତ୍ତବ୍ୟ ହେଉଛି ସବୁଠାରୁ ବେଶୀ ।

## କ୍ରୀଡା କୌତୁକ

କ୍ରୀଡ଼ା କୌତୁକରେ ମାନବିକ କାର୍ଯ୍ୟକଳାପର ମହତ୍ତ୍ୱର ନିଦର୍ଶନ ଯେପରି ମିଳେ ଅନ୍ୟ କାହିଁରେ ସେପରି ମିଳେନାହିଁ । ଯଦି ପ୍ରସ୍ତୁତିର ଅଭାବ ବା ଯୋଗ୍ୟତାର

ଅଭବ ବୋଲି ଯୁକ୍ତି ଦର୍ଶାଇ କୌଣସି ସମ୍ପ୍ରଦାୟକୁ ସାଧାରଣ କ୍ରୀଡ଼ାକୌତୁକରୁ ପୃଥକ୍ ରଖାଯାଏ, ତେବେ ତାହା ଭେଦଭାବର ଛଦ୍ମରୂପ ଛଡ଼ା ଆଉ କିଛି ନୁହେଁ । ବାସ୍ତବ ଘଟନା ଦ୍ୱାରା ଏହା ସ୍ପଷ୍ଟ ପ୍ରମାଣିତ ହୋଇପାରେ । ତଦ୍ଦେଶର ଅନେକ ଅଂଶରେ ସ୍କୁଲ କଲେଜର ଖେଳାଳିଦଳ ମଧ୍ୟରେ 'ସମ୍ମିଳନ' ଗତ ବହୁବର୍ଷ ହେଲା ଚାଲି ଆସୁଅଛି । ଆମେରିକାନ ଅଲିମ୍ପିକ ଦଳର ଓ ଅନ୍ୟାନ୍ୟ ଖେଳର ବିବରଣୀ ପୁସ୍ତକ ଦେଖିଲେ ଏହାର ପ୍ରକୃଷ୍ଟ ପ୍ରମାଣ ମିଳିବ । ପ୍ରଥମେ ଯେତେବେଳେ 'ବ୍ୟବସାୟୀ' ଫୁଟବଲଦଳର ସୃଷ୍ଟି ହେଲା ; ସେତେବେଳେ ଏହାର ଅଧିକାଂଶ ଖେଳାଳି କଲେଜ ଖେଳାଳିଦଳରୁ ନିଆ ଯାଉଥିଲେ । କେତେକ ଦଳରେ ଗୋଷ୍ଠୀ ବା ସମ୍ପ୍ରଦାୟ ବିଚାର ନ କରି ଖେଳାଳି ନିଆ ଯିବା ନୀତିର ପ୍ରତିରୋଧ ଦେଖା ଯାଉଥିଲା । ଏହିପ୍ରତିରୋଧ କେତେକ ଦଳରେ ୧୯୬୦ ମସିହା ପର୍ଯ୍ୟନ୍ତ ରହିଥିଲା । ମୁଷ୍ଟି ଯୁଦ୍ଧଭଳି ଯେଉଁ କ୍ରୀଡ଼ାରେ ଜଣେ ମାତ୍ର ଲୋକର ପ୍ରୟୋଜନ, ସେଥିରେ ସାଧାରଣତଃ ନିମ୍ନ ସମ୍ପ୍ରଦାୟର ବାଳକମାନେ ଯୋଗଦେଇ ନିଜର ଆସନ ଓ ଆୟର ଉନ୍ନତି କରିବାକୁ ଚେଷ୍ଟିତ ହେଉଥିଲେ ।

୧୯୪୬ ମସିହାରେ ଯେତେବେଳେ ବ୍ରାଞ୍ଚରିଙ୍କ ସିଦ୍ଧାନ୍ତ ଗ୍ରହଣ କଲେ ଯେ, ବ୍ରୁକଲିନ ଡଜର୍ସଦଳରେ ଜଣେ ନିଗ୍ରୋ ଖେଳାଳିଙ୍କୁ ନିଆ ଯିବ, ସେତେବେଳେ ସମ୍ମିଳନ ଦିଗରେ ଏକ ଅପୂର୍ବ ନାଟକୀୟ ଘଟନା ଘଟିଲା ବୋଲି କୁହା ଯାଇପାରେ । ସେ ଦେଖିଲେ ଯେ ଏହି ନିଗ୍ରୋ ଖେଳାଳି ଜାକି ରବିନସନ ଦଳର ନେତୃତ୍ୱ ନେବାକୁ ସର୍ବାପେକ୍ଷା ଅଧିକ ଉପଯୁକ୍ତ । ଏହି ଜାକିଙ୍କର କ୍ରୀଡ଼ାନୈପୁଣ୍ୟ ଅସାଧାରଣ ଥିଲା । ତାଙ୍କ ପ୍ରତି କୁବାକ୍ୟ ପ୍ରୟୋଗ କଲେ ବା ଅସଦ୍ ବ୍ୟବହାର କଲେ ସେ ପ୍ରତିଶୋଧ ନେବାରେ ଚେଷ୍ଟା ନକରି ସହି ଯାଉଥିଲେ ଏବଂ ଏହାଦ୍ୱାରା ତାଙ୍କର ଖେଳାରେ କିଛି ପ୍ରତିବନ୍ଧକ ଘଟୁନଥିଲା । ଏହା ସତ୍ତ୍ୱେ ଯେଉଁମାନେ ତାଙ୍କୁ ଅପମାନିତ କରୁଥିଲେ ସେମାନଙ୍କର ଧାରଣା ହେଉଥିଲା ଯେ ଜାକି ସେମାନଙ୍କର ଅପମାନକୁ ଗ୍ରାହ୍ୟ କରୁନଥିଲେ କିମ୍ବା ସେମାନଙ୍କ ନିକଟରେ ନିଜକୁ ଲଜ୍ଜିତ ମନେ କରୁ ନଥିଲେ । ଆଜିକାଲି ଆମେରିକାର ବେସବଲ୍ ଖେଳରେ ଯେତେବେଳେ ଆମେ ପ୍ରସିଦ୍ଧ ନିଗ୍ରୋ, ପିଉର୍ଟୋରିକାନ ଓ ମେକ୍ସିକାନ ଖେଳାଳିମାନଙ୍କୁ ଦେଖୁଁ ସେତେବେଳେ ଆମେ କଳ୍ପନା କରି ପାରିବା ନାହିଁ ଯେ ଅଳ୍ପ କେତେ ବର୍ଷ ତଳେ ଖେଳାଳିଦଳମାନଙ୍କ ମଧ୍ୟରେ ଏପରି ଉଗ୍ର ପୃଥକ୍‌କରଣ ରହିଥିଲା । ଏହି ପରିବର୍ତ୍ତନର ପରିଣତି ଖେଳ ପଡ଼ିଆର ସୀମାକୁ ଅତିକ୍ରମ କରି ବହୁଦୂର ପର୍ଯ୍ୟନ୍ତ ବିସ୍ତୃତ ହୋଇଅଛି । ବର୍ତ୍ତମାନ ସଂଖ୍ୟାଲଘୁ ସମ୍ପ୍ରଦାୟର ବହୁସଂଖ୍ୟକ ଯୁବକ ପ୍ରସିଦ୍ଧ ଖେଳବାଡ଼ ରୂପେ ପରିଚିତ ହୋଇପାରି ଅଛନ୍ତି । ସେମାନଙ୍କ ମନରେ ଗର୍ବକରିବାର କାରଣ ଆସିଛି । ଶ୍ୱେତାଙ୍ଗମାନଙ୍କ ସହିତ ସେମାନଙ୍କର ସମ୍ପର୍କ ବୃଦ୍ଧି ପାଇଅଛି ।

ଗତ କେତେକ ବର୍ଷ ଭିତରେ ଗଲ୍ଫ ଓ ଟେନିସ୍ ଖେଳରେ ପୃଥକ୍‌କରଣ ଦୂର କରିବା ଦିଗରେ ପଦକ୍ଷେପ ନିଆ ଯାଇଅଛି । ଆଲ୍‌ଥିଆ ଗିବସନଙ୍କ ଭଳି କୃଷ୍ଣକାୟ ଖେଳାଳୀମାନେ ଉଇମ୍ବିଲଡନ ଓ ଫରେଷ୍ଟହିଲ୍‌ସ ଖେଳପଡ଼ିଆରେ ଯେଉଁ କୃତିତ୍ୱ ଦେଖାଇ ଅଛନ୍ତି, ତାହା ଏ ଦିଗରେ ବିଶେଷ ସହାୟକ ହୋଇଅଛି । ଉତ୍ତରାଞ୍ଚଳର ଅଧିକାଂଶ ସ୍ଥଳରେ ସର୍ବସାଧାରଣ ଗଲ୍ଫ କୋର୍ଟ ଓ ଟେନିସ୍‌କୋର୍ଟ ସମସ୍ତଙ୍କ ପାଇଁ ଉନ୍ମୁକ୍ତ ; ତଥାପି ସମଗ୍ର ଦେଶ ଦୃଷ୍ଟିରୁ ଅନେକ ସ୍ଥଳରେ ପୃଥକ୍-କରଣ ମୂଲ୍ୟ ରହିଅଛି ।

## ଉପସଂହାର

ଆମ୍ଭେମାନେ ଏଠାରେ ଆମେରିକାର ଗୋଷ୍ଠୀଗତ ସମ୍ପର୍କ ବିଷୟରେ ଗତ ଏକ ପୁରୁଷ ମଧ୍ୟରେ ଘଟିଥିବା ପରିବର୍ତ୍ତନମାନଙ୍କର ଯେଉଁ ତାଲିକା ଦେଲୁ ସେଥିରୁ ପୃଥକ୍‌କରଣ ବିଲୋପର ଗତି କିପରି ହେଉଅଛି, ତାହାର ସୂଚନା ମିଳି ପାରିବ । ଏଥିରେ ପ୍ରଧାନତଃ ସର୍ବସାଧାରଣ ଆଇନଗତ ଓ ଅନୁଷ୍ଠାନଗତ ପରିବର୍ତ୍ତନର ଉଲ୍ଲେଖ କରି ଯାଇଅଛି ; କିନ୍ତୁ ବ୍ୟକ୍ତିଗତ ଭାବରେ ଲୋକେ ଏସବୁ ପରିବର୍ତ୍ତନକୁ କିପରି ଗ୍ରହଣ କରିଅଛନ୍ତି ଓ ଏହି ପରିବର୍ତ୍ତନରେ କିପରି ଅଂଶଗ୍ରହଣ କରିଅଛନ୍ତି ତାହାର ଉଲ୍ଲେଖ ପ୍ରାୟ କରାଯାଇନାହିଁ । ବ୍ୟକ୍ତିଗତ ପ୍ରତିକ୍ରିୟା ବଡ଼ ମୂଲ୍ୟବାନ୍ ଏଥିରେ ସନ୍ଦେହ ନାହିଁ । ଯଦି ଆଇନର ଭୟରୁ ପରିବର୍ତ୍ତନକୁ ଅନିଚ୍ଛାସତ୍ତ୍ୱେ ଗ୍ରହଣ କରି ନିଆଯାଏ, ତାହାହେଲେ ଘଟଣାର ଗତି ଯାହା ହେବ, ଆଗ୍ରହ ସହକାରେ ସ୍ୱେଚ୍ଛାରେ ଗ୍ରହଣ କରାଗଲେ ତାହାଠାରୁ ଭିନ୍ନ ହେବ । ତଥାପି ଏହି ପ୍ରଭେଦକୁ ଅତିରଞ୍ଜିତ କରି ଯାଇପାରେ; ବିଶେଷତଃ ସୁଦୂର ପ୍ରସାରୀ ପରିବର୍ତ୍ତନ ଉଦ୍ଦେଶ୍ୟରେ ଏପରି କରାଯାଇପାରେ । ଆନୁଷ୍ଠାନିକ ସଂଗଠନ ମଧ୍ୟରେ ସାମ୍ପ୍ରଦାୟିକ କ୍ରିୟା ଓ ପ୍ରତିକ୍ରିୟା ଘଟିଥାଏ । ଲୋକସାଧାରଣ ଘଟଣା ବିଷୟରେ ଯେଉଁ ମତ ଦିଅନ୍ତି ତାହା ଆନୁଷ୍ଠାନିକ ସଂଗଠନ ଉପରେ ପ୍ରତିଫଳିତ ହୁଏ । ତେଣୁ ଆଧୁନିକ ସମାଜବିଜ୍ଞାନ ଲୋକମତ ଉପରେ ଗୁରୁତ୍ୱ ଦେଇଥାଏ । ପୂର୍ବରୁ ଦେଖାଇ ଦିଆଯାଇଅଛି ଯେ ବିଗତ ୨୫ ବର୍ଷ ମଧ୍ୟରେ ଗୋଷ୍ଠୀଗତ ସମ୍ପର୍କ ବିଷୟରେ ଆମେରିକାରେ ଲୋକମତ ସମ୍ପୂର୍ଣ୍ଣରୂପେ ପରିବର୍ତ୍ତିତ ହୋଇ ଯାଇଅଛି । ଏହି ପରିବର୍ତ୍ତନର ମାତ୍ରା ଏତେ ଅଧିକ ଯେ ବ୍ୟକ୍ତିଗତ ମନୋଭାବରେ ମଧ୍ୟ ପରିବର୍ତ୍ତନ ଆସିଅଛି । ଏହା ଫଳରେ ଆହୁରି ପରିବର୍ତ୍ତନ ଘଟିବାର ଉଜ୍ଜ୍ୱଳ ସମ୍ଭାବନା ରହିଅଛି ।

ବର୍ତ୍ତମାନ ବିଭିନ୍ନ ଶକ୍ତିର ଯେଉଁ ଭାରସାମ୍ୟ ଅଛି ତାହା ପୃଥକକରଣ ବିଲୋପ ଦିଗରେ ସହାୟକ ହୋଇଅଛି । ଏହାର ଅର୍ଥ ନୁହେଁ ଯେ ଏପରି ଅବସ୍ଥାରେ

ପୃଥକୀକରଣର ବିଲୋପ ସୁନିଶ୍ଚିତ ବା ଅନିବାର୍ଯ୍ୟ । ଆମ୍ଭେମାନେ ଦୃଢ଼ତା ସହକାରେ କହିପାରୁଁ ଯେ ଯଦି ବର୍ତ୍ତମାନର ମନୋଭାବ ଏପରି ରହେ ତେବେ ପୃଥକ୍କରଣର ବିଲୋପ ସମ୍ଭବପର । କିନ୍ତୁ ବର୍ତ୍ତମାନର ମନୋଭାବ ହୁଏତ ବୈପ୍ଳବିକ ରହି ନ ପାରେ । ଆର୍ଥିକ ସ୍ୱଚ୍ଛଳତା ଓ ଆର୍ଥିକ ଉନ୍ନତି ସମ୍ମିଳନ ଦିଗରେ ସାହାଯ୍ୟ କରି ଆସିଅଛି । ସହରାଞ୍ଚଳର ଶୀଘ୍ର ଶୀଘ୍ର ଉନ୍ନତି ହୋଇଅଛି ଓ ତାହା ସଙ୍ଗେ ଅନେକ ସଂଖ୍ୟାଲଘୁ ସଂପ୍ରଦାୟର ଲୋକ ସହରମାନଙ୍କରେ ପ୍ରବେଶ କରିଅଛନ୍ତି । ସେମାନଙ୍କର ଆଗମନ କେତେକ ପରିମାଣରେ ବିରୋଧ ସୃଷ୍ଟି କରିଥିଲେହେଁ, ପରିଣାମରେ ପୃଥକୀକରଣର ବିଲୋପ ଦିଗରେ ସାହାଯ୍ୟ କରିଅଛି । ଯେଉଁସବୁ ଅନିର୍ଦ୍ଦିଷ୍ଟ ପରିବର୍ତ୍ତନଶୀଳ ଅବସ୍ଥା ଦ୍ୱାରା ପରିବର୍ତ୍ତନର ଦିଗ ଓ ଗତି ନିୟନ୍ତ୍ରିତ ହୁଏ ସେ ସବୁର ତାଲିକା ଦେବାର ଚେଷ୍ଟା ନକରି ମୁଁ ନିମ୍ନରେ ଆଉ କେତୋଟି ଅବଶିଷ୍ଟ ଉପାଦାନର ଉଲ୍ଲେଖ କରୁଅଛି ।

ଆର୍ଥିକ ପରିସ୍ଥିତି; ସଂଗଠିତ ସଂଖ୍ୟାଲଘୁ ସଂପ୍ରଦାୟର ଅବସ୍ଥିତି; ଚତୁର ଓ କୌଶଳୀ ନେତାମାନଙ୍କର ଆବିର୍ଭାବ; ଶିକ୍ଷାର ବିସ୍ତାର ଓ ଉନ୍ନତି ନିମନ୍ତେ ଆନ୍ଦୋଳନ—ଏହିଗୁଡ଼ିକର ପ୍ରଭାବ ପୃଥକ୍କରଣର ବିଲୋପକୁ ସମର୍ଥନ କରୁଅଛି ଓ ଭବିଷ୍ୟତରେ ମଧ୍ୟ କରିବ ବୋଲି ଆଶା କରାଯାଏ ।

ଏହାର ବିରୋଧରେ କେତେକ ଶକ୍ତି କାର୍ଯ୍ୟ କରୁଅଛି ଓ ହୁଏତ ଭବିଷ୍ୟତରେ ମଧ୍ୟ କରିବ । ପୂର୍ବେ ଦକ୍ଷିଣାଞ୍ଚଳର ନିଗ୍ରୋମାନେ ଯେପରି ଗୋଟିଏ ଗ୍ରାମବହୁଳ ଜିଲ୍ଲା ମଧ୍ୟରେ ଏକତ୍ର ବାସ କରୁଥିଲେ, ଏବେ ସେପରି କରୁନାହାନ୍ତି; କିନ୍ତୁ ବଡ଼ ବଡ଼ ଶିଳ୍ପପ୍ରଧାନ ସହରର କେନ୍ଦ୍ରସ୍ଥାନମାନଙ୍କରେ ବହୁ ସଂଖ୍ୟକ ନିଗ୍ରୋ ଏକତ୍ର ବାସ କରିବାର ପ୍ରବୃତ୍ତି ଦେଖା ଯାଉଅଛି । ଆମେରିକାର ଜାତୀୟ ଇତିହାସର ପ୍ରଥମ ଦେଢ଼ଶହ ବର୍ଷ ମଧ୍ୟରେ କୃଷ୍ଣକାୟ ଲୋକଙ୍କ ସଂଖ୍ୟାର ଅନୁପାତରେ ହ୍ରାସ ଦେଖାଦେଇ ଆସିଥିଲା । କିନ୍ତୁ ୧୯୪୦ ମସିହା ଠାରୁ ଏହାର ବିପରୀତ ଲକ୍ଷଣ ପ୍ରକାଶ ପାଇ ଆସୁଅଛି ଏବଂ କୃଷ୍ଣକାୟ ଲୋକସଂଖ୍ୟାର ଅନୁପାତରେ ଆମେ ସାମାନ୍ୟ ବୃଦ୍ଧି ଆଶା କରିପାରୁଁ । ହୁଏତ ୧୯୭୦ ମସିହାରେ ଏମାନଙ୍କ ସଂଖ୍ୟା ଶତକଡ଼ା ୧୧.୩ ଥିବା ସ୍ଥଳେ ୨୦୦୦ ମସିହା ବେଳକୁ ଏହା ଶତକଡ଼ା ୧୪ ହୋଇଯାଇ ପାରେ । ଯେଉଁସବୁ ଅନିର୍ଦ୍ଦିଷ୍ଟ ପରିବର୍ତ୍ତନଶୀଳ ଅବସ୍ଥା ପୃଥକ୍କରଣର ବିଲୋପ ଉପରେ ପ୍ରଭାବ ପକାଏ, ସେଥିମଧ୍ୟରେ ଏହି ସାମାନ୍ୟ ବୃଦ୍ଧି ଗୋଟିଏ ଗୁରୁତ୍ୱପୂର୍ଣ୍ଣ ବିଷୟ ବୋଲି ମୋର ସନ୍ଦେହ ନାହିଁ । କିନ୍ତୁ ଯଦି ଅନ୍ୟାନ୍ୟ କାରଣରୁ ସମ୍ମିଳନର ପଥରୋଧ ହୋଇଥାଏ, ତେବେ ଲୋକ ସଂଖ୍ୟା ବୃଦ୍ଧି ମଧ୍ୟ ଆଉ ଗୋଟିଏ କାରଣ ହେବ । ପରିଶେଷରେ ପୃଥକୀକରଣର ଆନ୍ଦୋଳନ, ସଂଖ୍ୟାଲଘୁ ସଂପ୍ରଦାୟ-

ମାନଙ୍କର ଅନ୍ଦୋଳନ (କୃଷ୍ଣକାୟ ମୁସଲମାନମାନଙ୍କ ଆନ୍ଦୋଳନ ଏହାର ଏକ ପ୍ରକୃଷ୍ଟ ଉଦାହରଣ), ପ୍ରକୃତିକୁ ବଦ୍ଧିର କରିବାକୁ ହେବ । କାର୍ଯ୍ୟତଃ ସଂଖ୍ୟାଲଘୁ ସଂପ୍ରଦାୟମାନଙ୍କଙ୍କ ସମସ୍ତ ଅନୁଷ୍ଠାନ ସମ୍ମିଳନର ସମର୍ଥନ କରି ଆସୁଅଛନ୍ତି । ଯଦି ସମ୍ମିଳନର ଗତି ବନ୍ଦ ହୋଇଯାଏ ବା ବିଶେଷଭାବରେ ମନ୍ଥର ହୋଇଯାଏ, ତେବେ ଏ ପ୍ରକାର ପରିସ୍ଥିତି ଆଉ ରହି ପାରିବ ନାହିଁ ।

ତେବେ ପୃଥକ୍କରଣ ବିଲୋପ ସମ୍ବନ୍ଧରେ ଆମ୍ଭମାନଙ୍କର ଭବିଷ୍ୟତ ଆଶା କଅଣ ? ଭବିଷ୍ୟତରେ ଆହୁରି ବ୍ୟାପକ ଭାବରେ ପୃଥକକରଣର ବିଲୋପ ଘଟିବ ବୋଲି ଯଥେଷ୍ଟ ସମ୍ଭାବନା ଅଛି । ପଶ୍ଚିମ ଗୋଲାର୍ଦ୍ଧର ଅଧିକାଂଶ ଭାଗରେ ବ୍ୟକ୍ତି-ବିଶେଷର ଜୀବନରେ ଉନ୍ନତି ବା ଅବନତି କରିବାର ସମ୍ଭାବନା ଓ ତାର ଗୋଷ୍ଠୀଗତ ସମ୍ପର୍କ ଗତ ତିନିଶହ ବର୍ଷ ଧରି ତାର ଜନ୍ମଗୋଷ୍ଠୀ ଉପରେ ନିର୍ଭର କରି ଆସୁଥିଲା; ଏବେ ଏହା ଲୋପ ପାଇବାକୁ ବସିଛି । ଏହାର ମୂଳ ଥିଲା ଦାସତ୍ୱ ପ୍ରଥାରେ, ଦେଶ ଜୟରେ, ଉପନିବେଶ ସ୍ଥାପନରେ, ରାଜତନ୍ତ୍ରରେ, ସାଂସ୍କୃତିକ ପ୍ରଭେଦରେ କୃଷିମୂଳକ ଅର୍ଥନୀତିରେ ଓ ଗୃହଯୁଦ୍ଧରେ । ଏବେ ସେ ମୂଳ ଭୁଷୁଡ଼ି ପଡ଼ୁଅଛି । ଅନ୍ୟ ଗୋଟାଏ ପ୍ରକାରର ପରସ୍ପର ଆପେକ୍ଷିକ ଗୋଷ୍ଠୀଭାବ ମୁଣ୍ଡ ଟେକୁଅଛି । କୃଷ୍ଣକାୟ ଲୋକେ ସାମରିକ, ଅର୍ଥନୈତିକ ଓ ରାଜନୈତିକ କ୍ଷମତା ଲାଭ କରିବା ସଙ୍ଗେ ଏହି ଗୋଷ୍ଠୀଭାବ ବୃଦ୍ଧି ପାଇବା ଅସମ୍ଭବ ନୁହେଁ । ଇଉରୋପୀୟ ଓ ଇଉରୋପରୁ ଆଗତ ଲୋକଙ୍କ ମଧ୍ୟରୁ ଗୋଷ୍ଠୀଭାବ ଲୋପ ପାଉଥିବା ସ୍ଥଳେ ଯଦି ଏପରି କେବେ ଘଟେ ତାହାହେଲେ ଏହାକୁ ଇତିହାସର ଏକ କ୍ରୂର ପରିହାସ କହି-ବାକୁ ହେବ । ମାନବ ଜାତିର ଇତିହାସରୁ ଲୋକେ ଯଥାସମୟରେ ଶିକ୍ଷାଲାଭ ନ କରିବାର ଦୃଷ୍ଟାନ୍ତ ନିତାନ୍ତ ବିରଳ ନୁହେଁ ।

ମାର୍କିନ ଯୁକ୍ତରାଷ୍ଟ୍ରରେ ଗୋଷ୍ଠୀଗତ ସୀମାରେଖା ଉଭେଇ ଯାଉଅଛି । ଏଥିରୁ ବୁଝିବାକୁ ହେବନାହିଁ ଯେ କାଲି ଜଣେ ନିଗ୍ରୋ ନିଉୟର୍କର ବା ବର୍ମିଂହାମର ମେୟର ରୂପେ ନିର୍ବାଚିତ ହେବ । ହୁଏତ ଆଉ କେତେବର୍ଷ ପରେ ଏହା ଘଟି-ପାରେ ହୁଏତ ଗୋଷ୍ଠୀଗତ ସ୍ୱତନ୍ତ୍ର ଅସୁବିଧା ବିଂଶ ଶତାବ୍ଦୀର ଶେଷଯାଏ ରହିବ; କିନ୍ତୁ ଏହାର ବ୍ୟାପକତା କମୁଥିବ । ଯଦି ମାର୍କିନ ଯୁକ୍ତରାଷ୍ଟ୍ର ସମ୍ପୂର୍ଣ୍ଣ ସମ୍ମିଳନ ଦିଗରେ ଗତ ୨୫ ବର୍ଷ ମଧ୍ୟରେ ଯେପରି ପଦକ୍ଷେପ ଗ୍ରହଣ କରିଅଛି, ଆଗାମୀ ୨୫ବର୍ଷ ପର୍ଯ୍ୟନ୍ତ ସେହିପରି ପଦକ୍ଷେପ ନିଏ (ଏପରି ନେବାର ପୂର୍ଣ୍ଣ ସମ୍ଭାବନା ମଧ୍ୟ ଅଛି) ତେବେ ଆମ ଦେଶ ଗୋଟିଏ ପ୍ରସିଦ୍ଧ ସାମାଜିକ ପରିବର୍ତ୍ତନ ସାଧନ କରିଅଛି ବୋଲି କହିବାକୁ ହେବ । ପଚିଶ ବର୍ଷ ମଧ୍ୟରେ ଏହାର ଫଳ ଦେଶର ସାମୂହିକ ଉନ୍ନତିରେ ଅନୁଭୂତ ହେବ । ଏ ପ୍ରକାରର ବୃହତ ପୁନର୍ଗଠନ ଏତେ ଶୀଘ୍ର ସାର୍ଥକ ହୋଇଥିବା କ୍ୱଚିତ୍ ଦେଖା ଯାଇଥାଏ ।

ଏହି ଉକ୍ତି ଯଦି ସତ୍ୟର ନିକଟବର୍ତ୍ତୀ ହୁଏ ତେବେ ଆମେ ଆଉ ଦୁଇଟି ପ୍ରଶ୍ନର ସମ୍ମୁଖୀନ ହେବା । ଏତେବେଳ ପର୍ଯ୍ୟନ୍ତ ଆମେ କେବଳ ବିବରଣମୂଳକ ଓ ବିଶ୍ଳେଷଣାତ୍ମକ ଦୃଷ୍ଟିକୋଣରୁ ବିଚାର କରୁଥିଲୁ । କିନ୍ତୁ ଏହି ପ୍ରଶ୍ନ ଦୁଇଟି ଆମ୍ଭମାନଙ୍କୁ ଏହାଠାରୁ ଦୂରକୁ ନେଇଯିବ । ଉକ୍ତ ପ୍ରଶ୍ନଦ୍ୱୟ ହେଉଛି, (୧) ଆମର ଲକ୍ଷ୍ୟ କଅଣ ? (୨) ସେହି ଲକ୍ଷ୍ୟରେ ପହଞ୍ଚିବାର ଶ୍ରେଷ୍ଠ ଉପାୟ କଅଣ ? ଏ ପ୍ରଶ୍ନ ଦୁଇଟି ମଧ୍ୟରୁ ଗୋଟିକର ନୈତିକତା ସହିତ ଓ ଅନ୍ୟଟିର କୌଶଳ ସହିତ ସମ୍ବନ୍ଧ । ଏ ଦୁଇଟି ବିଷୟର ଆଲୋଚନା ବ୍ୟତୀତ ଯେ କୌଣସି ସାମାଜିକ ସମସ୍ୟାର ଅଧ୍ୟୟନ କରିବା ନିରର୍ଥକ । ବିଶେଷତଃ ଗୋଟିଏ ଜଟିଳ ସମାଜରେ ସଂଖ୍ୟାଲଘୁ ସଂପ୍ରଦାୟମାନଙ୍କର ସ୍ଥାନ ଭଳି ଗୋଟିଏ ଗୁରୁତର ବିଷୟର ସମାଧାନ ଖୋଜିବାକୁ ହେଲେ ବିଶ୍ଳେଷଣ ସଙ୍ଗେ ନୀତି ଓ ଉପାୟ ବିଷୟ ବିଚାର କରିବାକୁ ହେବ । ତେଣୁ ଆମ୍ଭେମାନେ ବର୍ତ୍ତମାନ ସମସ୍ୟାଟିର ଏହି ଦୁଇ ଦିଗ ବିଷୟରେ ଆଲୋଚନା କରିବା ।

---

# ଷଷ୍ଠ ଅଧ୍ୟାୟ

## ଆନ୍ତଃସାମ୍ପ୍ରଦାୟିକ ସମ୍ପର୍କର ଲକ୍ଷ୍ୟ

ସଂଖ୍ୟାଗୁରୁ-ସଂଖ୍ୟାଲଘୁ ସଂପ୍ରଦାୟ ମଧ୍ୟରେ ସମ୍ପର୍କ ସମ୍ବନ୍ଧରେ କେଉଁ ଲକ୍ଷ୍ୟ ରଖି ସମାଜ ଗଠନ କରିବା ଉଚିତ ? ପ୍ରଶ୍ନଟି ଆପାତତଃ ସହଜ ବୋଧ ହୋଇପାରେ । କିନ୍ତୁ ପ୍ରକୃତରେ ଏହା ଗୋଟିଏ ଜଟିଳ ନୈତିକ ପ୍ରଶ୍ନ । ଆମ୍ଭ-ମାନଙ୍କ ମଧ୍ୟରୁ ପ୍ରତ୍ୟେକେ ପରସ୍ପର ବିରୋଧୀ ମୂଲ୍ୟବୋଧରେ ବିଶ୍ୱାସ କରି ପାରନ୍ତି; କିନ୍ତୁ ଏ ସଂପର୍କରେ ନୂତନ କାର୍ଯ୍ୟ ଆରମ୍ଭ ନ କରିବା ପର୍ଯ୍ୟନ୍ତ ଆମ୍ଭେମାନେ ହୁଏତ ଏହି ପରସ୍ପର ବିରୋଧ ଲକ୍ଷ୍ୟ କରିପାରିବା ନାହିଁ । ସେତେବେଳେ ଆମ୍ଭେମାନେ ଜାଣିପାରିବା ଯେ ଗୋଟିଏ ମୂଲ୍ୟବୋଧକୁ ସମର୍ଥନ କଲେ ଅନ୍ୟଟିକୁ ତ୍ୟାଗ କରିବାକୁ ପଡ଼ିବ । ବ୍ୟକ୍ତିବିଶେଷ ମଧ୍ୟରେ ତଥା ସଂପ୍ରଦାୟ ମଧ୍ୟରେ ଲକ୍ଷ୍ୟ ବିଷୟରେ ସେତେ ମତ ଭେଦ ନଥାଏ, ଉପାୟ ନେଇ ତହିଁରୁ ଅଧିକ ମତଭେଦ ଥାଏ । ପୁଣି ଏହା ଏକ ଟିକ ବିଭେଦ ; କାରଣ ଆଜି ଆମେ ଯାହାକୁ ଲକ୍ଷ୍ୟ ବୋଲି ଅନୁସରଣ କରୁଅଛୁ, ତାହା କାଲିର ଲକ୍ଷ୍ୟ ସିଦ୍ଧି ପାଇଁ ଗୋଟିଏ ଉପାୟ ହୋଇପାରେ । ଆମମାନଙ୍କର ଉପାୟ ପ୍ରବଳ ଭାବରେ ଲକ୍ଷ୍ୟକୁ ପ୍ରଭାବିତ କରେ । ପୁଣି ଆମେ ଯେଉଁଠାରେ ମନେକରୁଁ ଯେ ଉପାୟ ବା ପ୍ରଣାଳୀ ସମ୍ବନ୍ଧରେ ମତଭେଦ ସତ୍ତ୍ୱେ ଲକ୍ଷ୍ୟ ସମ୍ବନ୍ଧରେ ମତୈକ୍ୟ ଅଛି, ସେଠାରେ ପ୍ରକୃତପକ୍ଷରେ ଆମର ଅଜ୍ଞାତସାରରେ ମୂଲ୍ୟ ବୋଧର ବିରୋଧ ଲୁକ୍କାୟିତ ଭାବରେ ରହିଥାଏ । "ଯେତେବେଳେ ଲୋକେ ଲକ୍ଷ୍ୟ ବିଷୟରେ ଏକମତ ହୋଇ ଉପାୟ ବିଷୟରେ ଭିନ୍ନମତ ହୁଅନ୍ତି, କେହି ଜଣେ ଲକ୍ଷ୍ୟ ସାଧନ ନିମିତ୍ତ କି ଉପାୟ ଆବଶ୍ୟକ, ତାହା ଜାଣି ନଥାଏ ; ଅଥବା ଲକ୍ଷ୍ୟ ସମ୍ବନ୍ଧରେ ମତୈକ୍ୟର ପରିମାଣ ବିଷୟରେ ଭ୍ରମ କରିଥାଏ [୧] ।

---

[୧] ୧୯୬୨ ମସିହାରେ ଜନ୍ ଉଇଲି ଏଣ୍ଡ ସନ୍ସଙ୍କ ଦ୍ୱାରା ପ୍ରକାଶିତ ଓ ଜୋସେଫ ଗିଠଲରଙ୍କ ଦ୍ୱାରା ସମ୍ପାଦିତ ଓଏନ ଏ. ଆର୍. ଲିଜ୍‌ଙ୍କର 'ଅଣ୍ଡାରଷ୍ଟ୍ୟାଣ୍ଡିଂ ମାଇନରିଟି ଗ୍ରୁପ୍‌ସ୍' ପ୍ରବନ୍ଧର ୬ପୃଷ୍ଠା । ଏହି ପୁସ୍ତକର ପ୍ରଥମ ଅଧ୍ୟାୟରେଥିବା ଲିଜ୍‌ଙ୍କର ସମସ୍ତ ଲେଖାଟି ପଢ଼ିବା ଉଚିତ ।

ସମସ୍ୟାଟିକୁ ବର୍ଣ୍ଣନା ମୂଳକ ଭାବରେ ଦେଖାଯାଉ । ମୁଁ କହିପାରେ — ଅନ୍ୟାନ୍ୟ ଲୋକେ କହନ୍ତି ଯେ ସେମାନେ ଏହା ଚାହାନ୍ତି ଓ ସେମାନେ ଏହି ସବୁ ଉପାୟ ବା ପ୍ରଣାଳୀର ସମର୍ଥନ କରୁଅଛନ୍ତି । ତାହା ହେଲେ କିଏ କେଉଁ ଲକ୍ଷ୍ୟ ବା କେଉଁ ଉପାୟର ସମର୍ଥନ କରନ୍ତି, ତନ୍ମଧ୍ୟରୁ ସମର୍ଥକମାନଙ୍କର ଶ୍ରେଣୀ, ଶିକ୍ଷାର ସ୍ତର, ବାସସ୍ଥାନ, ଧର୍ମ ଓ ଅନ୍ୟାନ୍ୟ ଅନିର୍ଦ୍ଦିଷ୍ଟ ପରିବର୍ତ୍ତନଶୀଳ ବିଷୟର ଉଲ୍ଲେଖ କରି ପରସ୍ପର ସମ୍ପର୍କିତ ସମାଜ ବିଜ୍ଞାନ ସମ୍ମତ ଓ ମନସ୍ତତ୍ତ୍ୱଗତ ବିଷୟମାନ ବାହାର କରିପାରିବା ।

ଏପରି କରିବା ପରିବର୍ତ୍ତେ ମୁଁ ଏହି ଅଧ୍ୟାୟରେ ଅନ୍ୟ ଏକ ପନ୍ଥା ଅନୁସରଣ କରିବି । କୌଣସି ସାମାଜିକ ସମସ୍ୟାର ସମାଧାନ ନିମନ୍ତେ ଉଦ୍ୟମ କରିବାକୁ ହେଲେ ଏଥି ପୂର୍ବରୁ ଓ ଏହାପରେ ଏହାର ନୈତିକ ଦିଗ ଆଲୋଚନା କରିବା ଆବଶ୍ୟକ । ମୋର ବିଶ୍ୱାସ, ବ୍ୟକ୍ତି ବିଶେଷର ଦୃଷ୍ଟିକୋଣ ସ୍ପଷ୍ଟଭାବରେ ପ୍ରକାଶ କରିବା ଦ୍ୱାରା ଏହି ଆଲୋଚନାର ପଥ ସୁଗମ ହେବ ।

ଲକ୍ ଉଲ୍ଲେଖ କରିଅଛନ୍ତି ଯେ ଯେଉଁ ଆନ୍ତଃସାମ୍ପ୍ରଦାୟିକ ସମ୍ପର୍କ ବିଷୟରେ ମାର୍କିନ ଯୁକ୍ତରାଷ୍ଟ୍ରରେ ମତୈକ୍ୟ ଦେଖାଯାଏ, ତାହା ଗଠନ ମୂଳକ ନୁହେଁ; ଧ୍ୱଂସମୂଳକ । ଯୁଦ୍ଧପ୍ରିୟ, ଅପ୍ରତିଦ୍ୱନ୍ଦ୍ୱୀ ଶାସକମାନଙ୍କୁ ଓ ତୀବ୍ର ଭେଦଭାବକୁ ବିରୋଧ କରିବା ବିଷୟରେ ଯେତେ ମତୈକ୍ୟ ଦେଖାଯାଏ ନାହିଁ । ସମ୍ପ୍ରଦାୟମାନଙ୍କ ମଧ୍ୟରେ ଯେତେ ପ୍ରକାରର ପାର୍ଥକ୍ୟ ଦେଖାଯାଏ, ସେ ସବୁ ଗଣତାନ୍ତ୍ରିକ ସମାଜର ଦୁର୍ବଳତାର ମୂଳ କି ? କେତେକ ପାର୍ଥକ୍ୟ ଗ୍ରହଣ କରି ଯାଇପାରେ କି ? ଏପରି କି ସେ ପ୍ରକାରର ପାର୍ଥକ୍ୟ ବାଞ୍ଛନୀୟ କି ? ଯଦି ଆମେ ଧରିନେଉ ଯେ କେତେକ ପାର୍ଥକ୍ୟ ରହିବା ଉଚିତ, ତେବେ କେଉଁ ଧରଣର ପୃଥକ୍‌କରଣ ଓ ସାମ୍ପ୍ରଦାୟିକ ଭେଦ ରହିବା ଉଚିତ, ତାହା ସ୍ଥିର କରିବାର ପନ୍ଥା କଅଣ ? କି ପ୍ରକାରର ଓ କେତେ ପରିମାଣରେ ବହୁଳବାଦ ଆମେ ଚାହୁଁ ? ଏହି ପ୍ରଶ୍ନଟି ଅନ୍ୟ ପ୍ରକାରେ ପଚରି ଯାଇପାରେ । ସର୍ବସାଧାରଣ କଅଣ, ଘରୋଇ ବା ବ୍ୟକ୍ତିଗତ କଅଣ ? ପ୍ରାୟ ସମସ୍ତଙ୍କର ମତ ହେଉଛି ଯେ ଧର୍ମମତ ଓ ରାଜ୍ୟଶାସନ ସ୍ୱତନ୍ତ୍ର । ପ୍ରତ୍ୟେକେ ବିଶ୍ୱାସ କରନ୍ତି ଯେ ଧର୍ମ ବିଷୟରେ ନିଜର ସହରରେ ବାଛିବାରେ ଓ ନିଜର ଧର୍ମମତ ସ୍ଥିର କରିବାରେ ପ୍ରତ୍ୟେକ ଲୋକର ସ୍ୱାଧୀନତା ରହିବା ଉଚିତ । ତେବେ ବର୍ତ୍ତିଭିତ୍ତିରେ ଏକ ଧର୍ମ ଯାଜକଙ୍କ ଅଧୀନସ୍ଥ ଅଞ୍ଚଳରେ ସ୍ୱତନ୍ତ୍ର ସ୍କୁଲ ରହିବା ବାଞ୍ଛନୀୟ କି ? ଏପରି ସ୍କୁଲ ରହିବା ଯାହା ନିଜର ପ୍ରତିବେଶୀ ନିର୍ବାଚନ କରିବାର ବ୍ୟକ୍ତିଗତ ଅଧିକାର ଉପରେ ପ୍ରତିଷ୍ଠିତ ପୃଥକ୍‌କୃତ (ପ୍ରତିବେଶୀ) ବାସ-

ଗୃହ ସମଷ୍ଟି ତାହା ନୁହେ କି ? ବହୁଳବାଦ ମଧ୍ୟରେ ଏହି ପ୍ରଶ୍ନର ଭିନ୍ନ ଦୃଷ୍ଟିରୁ ଏହାର ଆଲୋଚନା କରାଯାଉ ।

ଉପାୟ ବା ପ୍ରଣାଳୀ ସହିତ ମଧ୍ୟ ଅନେକ ମୂଲ୍ୟବୋଧ ପ୍ରଶ୍ନର ସମ୍ବନ୍ଧ ଅଛି । ନିକ୍ ଦର୍ଶାଇ ଅଛନ୍ତି ଯେ ଶିଳ୍ପ ଓ ଅନ୍ୟ କ୍ଷେତ୍ରରେ କ୍ଷମତା ପ୍ରୟୋଗପୂର୍ବକ ବାଧ୍ୟତା-ମୂଳକ ପରିବର୍ତ୍ତନର ଲକ୍ଷଣ ପ୍ରତିରୋଧ ହୋଇଅଛି । ପରସ୍ପର ଆଲୋଚନାର ମୂଲ୍ୟ ଓ ପ୍ରବେଚନାକୁ ଆଦର୍ଶ ରୂପେ ଗ୍ରହଣ କରିବା ଉପରେ ସେ ଗୁରୁତ୍ୱ ଆରୋପ କରି ଅଛନ୍ତି । ସେ କହି ଅଛନ୍ତି, "ସହଯୋଗ ବିରୋଧୀ ଜନସାଧାରଣଙ୍କୁ ଟିକିଏ ଅଧିକ ସମୟ ଦେଲେ ଓ ପ୍ରକୃତ ଅବସ୍ଥା ବୁଝିବାକୁ ଆଉ ଟିକିଏ ସୁବିଧା ଦେଲେ ସେମାନେ ସ୍ୱତଃ ପ୍ରବୃତ୍ତ ହୋଇ ସହଯୋଗ କରିବାକୁ ବାହାରିବେ " [୨] ।

କିନ୍ତୁ ଧରିନିଆଯାଉ ଯେ ଏପରି କଲେ ଅନ୍ୟାୟ ବୋଲି ବିବେଚିତ ଗୋଟାଏ କାର୍ଯ୍ୟ ଅନିର୍ଦ୍ଦିଷ୍ଟ କାଳ ପାଇଁ ଚାପିଯିବ । ତେବେ କିଅଣ ସରକାରଙ୍କ ହାତରେ ଥିବା ଦମନଶକ୍ତିର ପ୍ରୟୋଗ କରାଯିବ ? ଟିକସ୍ ଅସୁଲ କରିବାରେ, ଅପରାଧୀକୁ ଦଣ୍ଡଦେବାରେ ଓ ଅନ୍ୟାନ୍ୟ ଅନେକ ସ୍ଥଳରେ ଆମେ ବିନାଦ୍ୱିଧାରେ ଏହି ଶକ୍ତି ପ୍ରୟୋଗ କରିଥାଉଁ । ଭେଦଭାବର ହ୍ରାସନିମନ୍ତେ ଦମନଶକ୍ତିର ପ୍ରୟୋଗ କରିବା କିଅଣ ଠିକ୍ ସେହିପରି ଉଚିତ ହେବ ? (ଲକ୍ଷ୍ୟ କରିବାକୁ ହେବ ଯେ ପ୍ରକୃତରେ ଏହା ଦୁଇଟିପ୍ରଶ୍ନ । ଆଇନ ଓ ସରକାରୀ କ୍ଷମତା ପ୍ରୟୋଗ କରାଯିବ କି ? ଏବଂ ଯଦି କରାଯାଏ ତେବେ କି ଅବସ୍ଥାରେ କରାଯିବ ଓ କେତେ ପରିମାଣରେ ଏହା ଫଳପ୍ରଦ ହେବ ?) କେତେକଙ୍କ ମତରେ ନ୍ୟାୟର ମୂଲ୍ୟ ଅପେକ୍ଷା ଶାନ୍ତିର ମୂଲ୍ୟ ବେଶୀ ; କାରଣ କେତେକ କହି ପାରନ୍ତି—ଶାନ୍ତି ବ୍ୟତିରେକେ ନ୍ୟାୟ ଅସମ୍ଭବ ; ତେଣୁ କ୍ଷମତାର ପ୍ରୟୋଗଦ୍ୱାରା ଭେଦଭାବର ହ୍ରାସ କରିବା ଉଚିତ ନୁହେଁ । ଅନ୍ୟ କେତେକଙ୍କ ମତରେ ଶାନ୍ତିଠାରୁ ନ୍ୟାୟର ମୂଲ୍ୟ ବେଶୀ କାରଣ ସେମାନେ ମନେକରି ପାରନ୍ତି ଯେ ନ୍ୟାୟ ବିନା ଶାନ୍ତି ସୁରକ୍ଷିତ ହୋଇ ନପାରେ ; ଅତଏବ ଭେଦଭାବର ହ୍ରାସ ପାଇଁ ଆବଶ୍ୟକ ପରିମାଣରେ ବଳାତ୍କାର କରିବା ପ୍ରୟୋଜନ । କେବଳ ଅନୁମାନିକ ବିଷୟ ଉପରେ ନିର୍ଭର କରି ଏ ପ୍ରକାର ମତ ପ୍ରକାଶ କରାଗଲେ ଦୁଇଟିଯାକ ମତ ଭ୍ରମାତ୍ମକ ବୋଲି ମୁଁ କହିପାରେ । ତଥାପି ଦ୍ୱିତୀୟ ମତଟି ଗ୍ରହଣ କରିନେବାକୁ ମୁଁ କେତେକ ପରିମାଣରେ ପ୍ରସ୍ତୁତ । ପ୍ରକୃତରେ ଦେଖିବାକୁ ଗଲେ ବଳାତ୍କାର କରିବା ଓ ବଳାତ୍କାର ନ କରିବା—ଏ ଦୁଇଟି ମଧ୍ୟରୁ

---

[୨] ଓଏନ୍ ଏ. ଆର. ଲିଜଙ୍କର 'ଅଣ୍ଡରଷ୍ଟାଣ୍ଡିଂ ମାଇନରିଟି ଗ୍ରୁପ୍ସ୍' ପ୍ରବନ୍ଧର ୯ପୃଷ୍ଠା ଦେଖ ।

କେଉଁଟି ଗ୍ରହଣୀୟ—ଏହା ପ୍ରଶ୍ନ ନୁହେଁ । ପ୍ରଶ୍ନ ହେଉଛି—ବ୍ୟକ୍ତିବିଶେଷ ଓ ସମ୍ପ୍ରଦାୟ ବିଶେଷ ଉପରେ ବେସରକାରୀ ବଳାତ୍କାର, ଯାହାର ପରିଣାମରେ କେତେକଙ୍କର କ୍ଷତି ହୁଏ, ଓ ସରକାରୀ ବଳାତ୍କାର, ଯାହା ସମାନ ବ୍ୟବହାରର ପ୍ରତିଷ୍ଠାଲାଗି ଚେଷ୍ଟା କରେ, ଏ ଦୁଇଟି ମଧ୍ୟରୁ କେଉଁଟି ଗ୍ରହଣୀୟ ?

ଗୋଟିଏ ତୃତୀୟ ମୂଲ୍ୟବୋଧ ସମସ୍ୟା ଅଛି । ଏହାର ନାନା ଶାଖାପ୍ରଶାଖା ଥିବାରୁ ଏହା ଅତି ଜଟିଳ । ମନେକର, ପ୍ରତ୍ୟେକ ଲୋକର ଅନ୍ୟ ପ୍ରତ୍ୟେକ ବ୍ୟକ୍ତି ସହିତ ସମ୍ପୂର୍ଣ୍ଣ ସମାନ ସୁଯୋଗ ଅଛି । ସଂଖ୍ୟାଲଘୁ ସଂପ୍ରଦାୟର କୌଣସି ଲୋକକୁ ଅଯଥା ପ୍ରତିବନ୍ଧକର ସମ୍ମୁଖୀନ ହେବାକୁ ପଡୁନାହିଁ । ଯିଏ ସମର୍ଥ, ଉଦ୍ୟମୀ ଓ ଭାଗ୍ୟବାନ, ସେ ଯେ କୌଣସି ସଂପ୍ରଦାୟର ହୋଇଥାଉନା କାହିଁକି, ସେ ଅଗ୍ରସର ହୋଇ ପାରିବ । ଏହାର ଫଳ ହେବ ଯେ ଯେଉଁମାନେ ଅଳ୍ପବୁଦ୍ଧି, ବାଧାପ୍ରାପ୍ତ ବା ବିକୃତ, ସମାଜରେ ଅବହେଳିତ ସେମାନେ ଗୋଷ୍ଠୀ, ଜାତି ଓ ମତ ନିର୍ବିଶେଷରେ ଦୁଃଖମୟ ଜୀବନ ଯାପନ କରିବାକୁ ବାଧ୍ୟହେବେ ।" [୩]· ଏଭଳି ସମାଜକୁ ଗୋଟିଏ ଆଦର୍ଶ ସମାଜ ବୋଲି ଯାଇପାରିବ କି ? ଅଥବା 'ବଦାନ୍ୟତା' ଭଳି ସମାନ ସୁଯୋଗ' ଗୋଟିଏ ଗୁଣ କି ? ଯେଉଁମାନେ ଭାଗ୍ୟବଶତଃ କୌଣସି ପ୍ରକାରେ ଉଚ୍ଚଶକ୍ତି ନେଇ ଜନ୍ମିଅଛନ୍ତି, ସେମାନେ କ୍ଷୀଣ ଶକ୍ତିର ଲୋକଙ୍କ ଠାରୁ ଅଧିକ ସୁବିଧାର ଅଧିକାରୀ ହେବେ କି ? ଆମେରିକାର ଲୋକେ ବ୍ୟକ୍ତିତ୍ୱବାଦୀ । ଶେଷ ପ୍ରଶ୍ନର ଉତ୍ତରରେ ସେମାନେ କହିବେ—"ହଁ, ଯାହାର ସାମର୍ଥ୍ୟ ଅଧିକ, ତାର ସ୍ଥାନ ଉଚ୍ଚ ହେବ । କିନ୍ତୁ ଆମ୍ଭେମାନେ ଦେଖିପାରିବା ଯେ ଅନେକ ସମାଜ ଅନ୍ତର୍ଗତ କେତେକ ଲୋକଙ୍କୁ ଉନ୍ନତ ଜୀବନ ଯାପନ କରିବାରେ ସାହାଯ୍ୟ କରି ପାରିଅଛୁ । ଅର୍ଥନୈତିକ ସମୃଦ୍ଧି ଆସିଲେ, ବୋଧହୁଏ, ଆମ୍ଭେମାନେ ଆହୁରି ଉଚ୍ଚତର ଲକ୍ଷ୍ୟ ଆବଶ୍ୟକ କରୁଁ; ଜୀବନର ଉପଭୋଗ ପାଇଁ ଅଧିକ ଅଭିଳାଷ କରୁଁ । ଏପରିକି ଯେଉଁମାନେ ଅସମର୍ଥ ସେମାନଙ୍କ ପାଇଁ ଏ ସବୁର ପ୍ରୟୋଜନ ଅଛି । ସଂଖ୍ୟାଲଘୁ ସଂପ୍ରଦାୟର ଲୋକମାନଙ୍କ ପ୍ରତି ଭେଦଭାବସଂପୃକ୍ତ ନୈତିକ ସମସ୍ୟାକୁ ସମାଧାନ କରି ପାରିଲେ ଆମେ ଆହୁରି ଗୁରୁତ୍ୱପୂର୍ଣ୍ଣ ଓ କଠିନ ସମସ୍ୟାର ସମ୍ମୁଖୀନ ହେବାକୁ ଅସମର୍ଥ ହେବୁ ନାହିଁ । ଏହି ସୂଚନା ଦେବା ଉଦ୍ଦେଶ୍ୟରେ ମୁଁ ଉପର୍ଯ୍ୟୁକ୍ତ ବିଷୟର ଉଲ୍ଲେଖ କରିଅଛି ।

---

[୩] ଓଏନ ଲିଜଙ୍କର 'ଆନ୍ତରଷ୍ଟ୍ୟାଣ୍ଡିଙ୍ଗ ଏ ମାଇନରିଟି ଗ୍ରୁପ' ପ୍ରବନ୍ଧର ୧୬ ପୃଷ୍ଠା ଦେଖ ।

# ସମ୍ମିଳନ ଓ ବହୁଳବାଦ—ଆପାତତଃ ପରସ୍ପର ବିରୋଧୀ

ବୋଧହୁଏ, ଏକ ପକ୍ଷରେ ବହୁଳବାଦ ସଙ୍ଗେ ପୃଥକକରଣ ବିଲୋପର ସମ୍ବନ୍ଧ ଓ ଅନ୍ୟ ପକ୍ଷରେ ଭେଦଭାବ, ଏ ଦୁଇଟିକୁ ପରୀକ୍ଷା କରିବା ଦ୍ୱାରା ଆମ୍ଭେମାନେ ଲକ୍ଷ୍ୟବିଷୟକ ସମସ୍ୟାଟିକୁ ଉତ୍ତମରୂପେ ବିଗ୍ଭର କରି ପାରିବା । କୌଣସି ଗଣତାନ୍ତ୍ରିକ ସମାଜ କେତେକ ସ୍ୱତନ୍ତ୍ର ସଂପ୍ରଦାୟକୁ ଉତ୍ସାହ ଦେବା ଦ୍ୱାରା ଅନ୍ୟ କେତେକ ସମ୍ପ୍ରଦାୟ ଭେଦଭାବ ଓ ଶତ୍ରୁତାର ଶିକାର ହେବାର ଆଶଙ୍କା ନାହିଁ କି ? ବହୁ ଗୋଷ୍ଠୀର ସମନ୍ୱୟରେ ଆମର ସମାଜ ଗଠିତ । ତେବେ ଗୋଷ୍ଠୀଗତ ବିବାଦ ନଥାଇ ଆମେ କେତେଦୂର ବିଭିନ୍ନ ରହି ପାରିବା ?

ଏଡ଼ୱାର୍ଡ଼ ସେପିର ସାମାଜିକ ବିଜ୍ଞାନର ବିଶ୍ୱକୋଷରେ ବଡ଼ ସୁନ୍ଦର ଭାବରେ ଫେଶନର ପରସ୍ପର ବିରୋଧୀ ଭୂମିକା ବର୍ଣ୍ଣନା କରିଅଛନ୍ତି । ଯେଉଁସବୁ ପରିବର୍ତ୍ତନଶୀଳ ଓ ଗତିଶୀଳ ସମାଜରେ ଫେଶନ ଦେଖାଯାଏ, ସେଥିରେ ଲୋକେ ଦୁଇଟି ଅଭିଲାଷ ମଧ୍ୟରେ ଦୋଳାୟମାନ ହେଉଥାନ୍ତି । ଗୋଟିଏ ହେଲା, ଅନ୍ୟଲୋକଙ୍କ ଠାରୁ ନିଜକୁ ଭିନ୍ନକରି ଇତର ଲୋକଙ୍କ ଠାରୁ ଅଲଗା ହୋଇ ରହିବା; ଅନ୍ୟଟି ହେଲା, ସମାଜ ଯାହା ଅନୁମୋଦନ କରେ, ତାହା ମାନିନେଇ ନିଜକୁ ନିରାପଦ ମନେ କରିବା । ପ୍ରଚଳିତ ରୀତି ଠାରୁ ବ୍ୟତିକ୍ରମର ଛଳନାହିଁ ହେଉଛି ଫେଶନ । ପୂର୍ବୋକ୍ତ ଦୁଇଟି ଅଭିଲାଷ ମଧ୍ୟରେ ସଂଯୋଗ ସ୍ଥାପନ କରିବାର ଉଦ୍ୟମ ହେଉଛି, ଫେଶନର କାର୍ଯ୍ୟ । କୌଣସି ନିର୍ଦ୍ଦିଷ୍ଟ କାଳ ଓ ସ୍ଥାନର ଯେଉଁ ପ୍ରକାରର ଟୋପି ପିନ୍ଧିବା ରୁଚିସଙ୍ଗତ ନୁହେଁ, ସେଭଳି ଟୋପି ପିନ୍ଧି ବାହାରିବାକୁ ଜଣେ ମହିଳା ଲଜ୍ଜା ବୋଧ କରିବ । ମନେକର, ସେ ସମୟରେ ସାଧାସିଧା ଟୋପି ପିନ୍ଧିବା ସାଧାରଣ ରୀତି । ତେବେ ସେ ଗୋଟାଏ ଅତି ଓସାରିଆ ଧାର ବିଶିଷ୍ଟ ବା ଅତି ସୂକ୍ଷ୍ମଧାର ବିଶିଷ୍ଟ ଓ ପକ୍ଷଯୁକ୍ତ ଟୋପି ପିନ୍ଧି ବାହାରକୁ ଯିବା ପାଇଁ ସଙ୍କୋଚ ବୋଧ କରିବ । ଏଥିରୁ ଜଣାଯିବ ଯେ ସେ ଅନ୍ୟ ମହିଳାମାନଙ୍କ ମଧ୍ୟରେ ରହି ସେମାନଙ୍କ ପରି ହେବାକୁ ଇଚ୍ଛାକରେ । ତାର ଟୋପି ଅନ୍ୟମାନଙ୍କ ଟୋପିଠାରୁ ଅତିରିକ୍ତ ପରିମାଣରେ ପୃଥକ ହେଲେ ସେ ସଙ୍କୋଚ ବୋଧ କରେ; କିନ୍ତୁ ତାର ଟୋପି ଠିକ୍ ଅନ୍ୟମାନଙ୍କ ଟୋପି ପରି ହେଲେ ସେ ଆହୁରି ଅସ୍ୱସ୍ତି ଅନୁଭବ କରେ । ଏହି ଅଧ୍ୟାୟର ବିଷୟବସ୍ତୁ ଦୃଷ୍ଟିରୁ ଆମେ କହିପାରୁଁ ଯେ ଉକ୍ତ ମହିଳା 'ସମ୍ମିଳନ' ଗ୍ଭହାଁନ୍ତି; ତା ସଙ୍ଗେ ସଙ୍ଗେ 'ବହୁଳବାଦ' ମଧ୍ୟ ଗ୍ଭହାଁନ୍ତି । ସେପିରଙ୍କ ଭାଷାରେ କୁହାଯାଇ ପାରେ ଯେ ଉକ୍ତ ମହିଳା ଗ୍ଭହାନ୍ତି, 'ଅସାଧାରଣ କାର୍ଯ୍ୟରେ ନିରାପତ୍ତା ସଙ୍ଗେ ଉତ୍ତେଜକ ଅଥଚ ଶାନ୍ତିଦାୟକ ମନୋଭାବ' ।

ଲିଓନେଲ ଟ୍ରିଲିଙ୍ଗ କୌଣସି ଏକ ସ୍ଥାନରେ ଅସାଧାରଣ ହେବା ଓ ନିରାପଦ ଭାବରେ ସଂପ୍ରଦାୟ ମଧ୍ୟରେ ରହିବା, ଏ ଦୁଇଟି ଅଭିଳାଷର ସଂଘର୍ଷ ବିଷୟ ଉଲ୍ଲେଖ କରି ଠିକ୍ ଏହି ମନୋଭାବ ବ୍ୟକ୍ତ କରିଅଛନ୍ତି । ଆମେ ନିଜକୁ ଅନ୍ୟମାନଙ୍କଠାରୁ ସଂପୂର୍ଣ୍ଣ ପୃଥକ ରଖି ପ୍ରଶ୍ନଟିର ସମାଧାନ କରି ପାରିବା ।

ଏଥିରୁ ଦେଖାଯିବ ଯେ ଏହି ଅଧ୍ୟାୟର ବିଷୟ-ବସ୍ତୁ ବ୍ୟାପକ ଭାବରେ ପ୍ରୟୋଗ କରାଯାଇପାରେ । କିନ୍ତୁ କେବଳ ସଂଖ୍ୟାଲଘୁ ସମ୍ପ୍ରଦାୟର ଅଧ୍ୟୟନରେ ଏହାର ଉପଯୋଗିତା ଆଲୋଚନା କରିବା ଆମର ଉଦ୍ଦେଶ୍ୟ । ପୂର୍ବରୁ କୁହା ଯାଇଅଛି ଯେ ସମ୍ମିଳନ ହେଉଛି ଗୋଟିଏ ଅବସ୍ଥା, ଯହିଁରେ ସମାଜର ଲୋକେ ଗୋଷ୍ଠୀ, ଧର୍ମ, ଜାତୀୟ ଉତ୍ପତ୍ତି ନିର୍ବିଶେଷରେ ଆପଣା ଆପଣା ମଧ୍ୟରେ ସ୍ୱଚ୍ଛନ୍ଦରେ ଚଳି ସମାନ ସୁବିଧା ଓ ସମାନ ସୁଯୋଗ ସମାନ ପରିମାଣରେ ଉପଭୋଗ କରି ପାରନ୍ତି । ଏହି ଦୃଷ୍ଟିରୁ ସମ୍ମିଳନ କହିଲେ କେତେକ ପରିମାଣରେ ସମୀକରଣ ତାହାର ଅନ୍ତର୍ଗତ; ଏଥିରେ ସମ୍ପ୍ରଦାୟର ସ୍ୱାତନ୍ତ୍ର୍ୟତା ନାହିଁ; କେବଳ ବ୍ୟକ୍ତିଗତ ପାର୍ଥକ୍ୟ ଅଛି ।

ବହୁଳବାଦ ଏହାଠାରୁ ସମ୍ପୂର୍ଣ୍ଣ ପୃଥକ୍ । ଏଥିରେ ବିଭିନ୍ନ ଜାତି, ଧର୍ମ ଓ ସଂସ୍କୃତି ଅନୁସାରେ ବିଭିନ୍ନ ସମ୍ପ୍ରଦାୟକୁ ସ୍ୱୀକାର କରାଯାଏ; ଏପରି କି ପ୍ରଶଂସା କରାଯାଏ । ବହୁଳବାଦୀ ସମାଜର ଅଭିମାନ ଯେ ଏଥିରେ ବିଭିନ୍ନ ସମ୍ପ୍ରଦାୟ ଥାଏ । ଏମାନଙ୍କର କୃଷ୍ଟିଗତ ପରମ୍ପରା ଭିନ୍ନ, ଧର୍ମ ଭିନ୍ନ, ଭାଷା ଭିନ୍ନ ହୋଇପାରେ । ପ୍ରତ୍ୟେକେ ନିଜର ସ୍ୱତନ୍ତ୍ର ସମିତି ଗଠନ କରି ପାରନ୍ତି । ଏସବୁ ଦିଗରେ ପ୍ରତ୍ୟେକର ପୁରା ସ୍ୱାଧୀନତା ଅଛି । ଏହି ସ୍ୱାଧୀନତା ମଧ୍ୟରେ ଏକମାତ୍ର ବନ୍ଧନ ହେଉଛି ଯେ ସବୁ ସମ୍ପ୍ରଦାୟ ପ୍ରଚଳିତ ରାଜନୈତିକ ଓ ଅର୍ଥନୈତିକ ପଦ୍ଧତି ପ୍ରତି ଆନୁଗତ୍ୟ ପ୍ରଦର୍ଶନ କରନ୍ତି । ବହୁଳବାଦ ଆଦର୍ଶରେ ପ୍ରତିଷ୍ଠିତ ଅନେକ ପ୍ରକାରର ସମିତି ଯେ ଗଣତାନ୍ତ୍ରିକ ସମାଜର ଦୃଢ଼ତାକୁ ଦୁର୍ବଳକରି ପକାଇ ନାହିଁ, ବରଂ ସବଳ କରିଛି, ଏ କଥାର ପ୍ରମାଣ ଦେବା ଅନାବଶ୍ୟକ ମନେହୁଏ । ଏ ପ୍ରକାରର ସମିତି ଗୁଡ଼ିକ ବ୍ୟକ୍ତି ବିଶେଷର ସନ୍ନିହିତ ଓ ପ୍ରୟୋଜନୀୟ ସମ୍ପ୍ରଦାୟ ସାହାଯ୍ୟରେ (ମାଧ୍ୟମରେ) ବୃହତ୍ତର ଓ ଜଟିଳ ସମାଜ ସହିତ ତାହାର ସମ୍ପର୍କ ପ୍ରତିଷ୍ଠା କରି ଥାଆନ୍ତି ଓ ତାହା ସଙ୍ଗେ ସଙ୍ଗେ ସମାଜ ଯେପରି ତାହାର ସ୍ୱାଧୀନତା ଉପରେ ଅତିରିକ୍ତ ହସ୍ତକ୍ଷେପ ନକରେ ସେଥି ପ୍ରତି ଦୃଷ୍ଟି ରଖିଥାନ୍ତି । ଏକ ଛତ୍ରବାଦୀ ଶାସନ ପ୍ରଥମରୁ ଯାଇ ସମିତିକୁ ଧ୍ୱଂସ କରିବାକୁ ଚେଷ୍ଟାକରେ । ସ୍ୱାଧୀନ ଟ୍ରେଡ୍ ଇଉନି-ଅନ, ସ୍ୱାଧୀନ ଚର୍ଚ୍ଚ, ସ୍ୱାଧୀନ ସମ୍ବାଦ ସଂଗ୍ରହସଂସ୍ଥା, ସଂଖ୍ୟାଗୁରୁ ମାନଙ୍କଠାରୁ ଭିନ୍ନ

ଭାଷା ବା ଭିନ୍ନ ସଂସ୍କୃତି ଭିତ୍ତିରେ ସମ୍ପ୍ରଦାୟ—ଏ ସବୁର ସ୍ଥାନ ଏକଛତ୍ର ଶାସନରେ ନାହିଁ । ଏ ଗୁଡ଼ିକ ସରକାରଙ୍କ ପ୍ରଭୁତ୍ୱର ବିରୋଧୀ ବୋଲି ପରିଗଣିତ ହୁଅନ୍ତି ।

ଉପର୍ଯ୍ୟୁକ୍ତ ମତ ଗୁଡ଼ିକ ସତ୍ୟ ହେଲେ ମାର୍କିନ ଯୁକ୍ତରାଷ୍ଟ୍ରର ଆଧୁନିକ ମତି-ଗତି ବିଷୟରେ କେତେକ ଗୁରୁତର ପ୍ରଶ୍ନର ଉଦ୍ଭବ ହୁଏ । କୌଣସି ଗଣତାନ୍ତ୍ରିକ ସମାଜ ଏହାର ବିଭିନ୍ନ ଶ୍ରେଣୀର ଲୋକଙ୍କର ସମ୍ମିଳନ ଆବଶ୍ୟକ କରେ କି ? କିମ୍ବା ସଂଖ୍ୟାଲଘୁ ସମ୍ପ୍ରଦାୟ ଗୁଡ଼ିକ ବିଧିବଦ୍ଧ ବହୁଳବାଦର ଏକ ପ୍ରକୃତ ପରିପ୍ରକାଶ କି ? ସମ୍ମିଳନ ଓ ବହୁଳବାଦ ମଧ୍ୟରେ ଯେଉଁ ଭାରସାମ୍ୟ ରହିଅଛି, ପୃଥକ୍‌କରଣର ବିଲୋପ ଦ୍ୱାରା ତାହା ଭାଙ୍ଗି ପଡ଼ିବାର ଆଶଙ୍କା ଅଛି କି ? ବହୁଳବାଦ ବାଞ୍ଛନୀୟ ହେଲେହେଁ, ତାହା ଉପରେ ଆକ୍ରମଣକୁ ସମର୍ଥନ କରିବାପାଇଁ 'ପୃଥକ୍‌କରଣ' ବୋଲି ଗୋଟିଏ ନୂତନ ଶବ୍ଦର ସୃଷ୍ଟି ହୋଇଅଛି କି ? ଏହି ପ୍ରଶ୍ନ ଗୁଡ଼ିକରେ ଗୁରୁତ୍ୱର ସ୍ଥାନ ପରିବର୍ତ୍ତିତ କରି ପଚରି ଯାଇପାରେ—ସଂଖ୍ୟାଲଘୁ ସମ୍ପ୍ରଦାୟ ସୃଷ୍ଟି ନକରି କିମ୍ବା ସଂଖ୍ୟାଲଘୁ ସମ୍ପ୍ରଦାୟର ସୁରକ୍ଷା ନକରି ଆମେ ଜାତି; ଧର୍ମ, ଗୋଷ୍ଠୀ ଭିତ୍ତିରେ ବହୁଳବାଦ ପ୍ରବର୍ତ୍ତିନ କରି ପାରିବା କି ? ଧର୍ମ ବିଷୟରେ ଉଦାରପନ୍ଥୀ ହୋଇ ଆମେ ନିଜ ଚର୍ଚ୍ଚରେ କର୍ମତତ୍ପର (ସକ୍ରିୟ) ହୋଇ ପାରିବା କି ? ଅନ୍ୟ ଦେଶ ପ୍ରତି ଘୃଣା ନ କରି ଦେଶପ୍ରେମୀ ହୋଇ ପାରିବା କି ? ଅନ୍ୟ ସମ୍ପ୍ରଦାୟ ପ୍ରତି ଶତ୍ରୁତା ନରଖି ନିଜ ସମ୍ପ୍ରଦାୟ ମଧ୍ୟରେ ନିଜକୁ ବୁଡ଼ାଇ ରଖି ପାରିବା କି ? ମାନବ ଜାତିର ଦୃଷ୍ଟିକୋଣ ଯେ ଏବେ ମଧ୍ୟ ଗୋଷ୍ଠୀ-ଅଭିମୁଖୀ ତାହାର କେତେକ ପ୍ରମାଣ ମିଳେ । ତେଣୁ ଲୋକମାନଙ୍କ ମଧ୍ୟରେ ଐକ୍ୟ ବା ସାମ୍ୟ ଆଣିବାକୁ ହେଲେ ପୁର୍ବର ସମ୍ପ୍ରଦାୟ-ଗତ ବନ୍ଧନ ଛିନ୍ନ କରିବାକୁ ହେବ । କିନ୍ତୁ ସମ୍ପ୍ରଦାୟ ସମ୍ପ୍ରଦାୟ ମଧ୍ୟରେ ସହ-ଯୋଗର ପ୍ରମାଣ ମଧ୍ୟ ମିଳେ । ଯଦି ବିରୋଧବିନା ବହୁଳବାଦ ରହିପାରେ, ତେବେ କାହା ଉପରେ ଭିତ୍ତି କରି ବହୁଳବାଦର କେନ୍ଦ୍ର ଗଠନ କରିବାକୁ ହେବ ? ଆମ୍ଭେ-ମାନେ ଏପରି କୌଣସି ନିଦର୍ଶନ ବିଷୟରେ ଏକମତ ହୋଇ ପାରିବା କି ଯାହାଦ୍ୱାରା ଅଗଣତାନ୍ତ୍ରିକ ଭେଦଭାବ ଓ ମୂଲ୍ୟବାନ ସାଂସ୍କୃତିକ ଭେଦ ମଧ୍ୟରେ ପାର୍ଥକ୍ୟ ସ୍ଥିର କରି ପାରିବା ?

ଏ ପ୍ରଶ୍ନ ଗୁଡ଼ିକ ନିର୍ଦ୍ଦିଷ୍ଟ ଉତ୍ତର ଦେଇ ପାରିବାର ଆଶା ମୋର ନାହିଁ । କିନ୍ତୁ ମୁଁ ଯେବେ ଏହି ପ୍ରଶ୍ନ ଗୁଡ଼ିକ ଉତ୍ତମରୂପେ ଉପସ୍ଥାପିତ କରିପାରେଁ ତେବେ ତୁମ୍ଭେମାନେ ଯଥାର୍ଥ ରୂପେ ସମସ୍ୟାଗୁଡ଼ିକର ଗଭୀର ଅନୁଧ୍ୟାନ କରି ପାରିବ । ବୋଧହୁଏ ସବାଠାରୁ ଜଟିଳ ସମାଜମାନଙ୍କରେ ସଂଖ୍ୟାଲଘୁ ସମ୍ପ୍ରଦାୟମାନଙ୍କର ସ୍ଥାନ ନିର୍ଣ୍ଣୟ କରିବାକୁ ହେବ ଏବଂ ବହୁଳବାଦୀ ସମ୍ପ୍ରଦାୟଠାରୁ ସେମାନଙ୍କର ପାର୍ଥକ୍ୟ ସ୍ଥିର କରିବାକୁ ହେବ ।

ଆମ୍ଭେମାନେ କେବଳ ମାର୍କିନ ଯୁକ୍ତରାଷ୍ଟ୍ର ବିଷୟ ଆଲୋଚନା କରିବୁ । କିନ୍ତୁ ଉପର୍ଯ୍ୟୁକ୍ତ ପ୍ରଶ୍ନଗୁଡ଼ିକ ଆନ୍ତର୍ଜାତିକ ପ୍ରଶ୍ନ । ବାସ୍ତବରେ କେବଳ ଯୁଦ୍ଧ ଓ ଯୁଦ୍ଧର ଆଶଙ୍କାକୁ ଛାଡ଼ିଦେଲେ ପୃଥିବୀରେ ସଂଖ୍ୟାଲଘୁ ସମ୍ପ୍ରଦାୟ ପ୍ରତି ବ୍ୟବହାର ବିଷୟ ଯେତେ ଆଗ୍ରହ ସୃଷ୍ଟି କରିଅଛି, ଅନ୍ୟ କୌଣସି ବିଷୟ ସେତେ କରି ପାରି- ନାହିଁ । ଦ୍ବିତୀୟ ଅଧ୍ୟାୟରେ ଉଲ୍ଲେଖ କରି ଯାଇଅଛି ଯେ ପୃଥିବୀରେ ଏପରି ସମାଜ ନାହିଁ, ଯହିଁରେ କି ସଂଖ୍ୟାଲଘୁ ସମ୍ପ୍ରଦାୟ ନାହିଁ । ଏମାନଙ୍କ ପ୍ରତି ଶାସକବର୍ଗ ବା ଲୋକ ସାଧାରଣ ବା ଉଭୟେ ଭେଦଭାବ ପ୍ରଦର୍ଶନ କରିଥାନ୍ତି । ମାର୍କିନ ଯୁକ୍ତରାଷ୍ଟ୍ର ସଂଖ୍ୟାଲଘୁ ସମ୍ପ୍ରଦାୟ ବିଶିଷ୍ଟ ରାଜ୍ୟମାନଙ୍କ ମଧ୍ୟରେ ଗୋଟିଏ ପ୍ରଧାନ ସ୍ଥାନ ଅଧିକାର କରିଅଛି । ଏଠାର ଅନେକ ଗୁରୁତ୍ବପୂର୍ଣ୍ଣ ସଂଖ୍ୟାଲଘୁ ସମ୍ପ୍ରଦାୟ ବିଷୟକ ସମସ୍ୟା ରହିଅଛି ଓ ମାର୍କିନ ଯୁକ୍ତରାଷ୍ଟ୍ର ସ୍ୱାଧୀନଜଗତର ନେତୃସ୍ଥାନ ଗ୍ରହଣ କରିଅଛି ।

ମୋର ବିଶ୍ୱାସ, ଆମେରିକା କିପରି ସଂଖ୍ୟାଲଘୁ ସମ୍ପ୍ରଦାୟ ପ୍ରଶ୍ନର ସମ୍ମୁଖୀନ ହେବ, ତାହାହିଁ ତାର ପ୍ରଧାନ ଆଭ୍ୟନ୍ତରୀଣ ସମସ୍ୟା କହିଲେ ଅତ୍ୟୁକ୍ତି ହେବନାହିଁ । କୌଣସି ଗଣତାନ୍ତ୍ରିକ ସମାଜ ଗୋଟିଏ ପୂର୍ଣ୍ଣ ଐକ୍ୟବଦ୍ଧ ଜାତିରେ ପରିଣତ ହେବାକୁ ଉଦ୍ୟମ କରୁଥିବାବେଳେ ଗୋଟାଏ ଗୋଟାଏ ସମସ୍ୟା ନାନାପ୍ରକାର ଭାବରେ ଦେଖା ଦେଇଥାଏ । ଇତିହାସକୁ ଆମେ ଏହି ଦୃଷ୍ଟିରୁ ବିଚାର କରିପାରିବା । ଆମ୍ଭେମାନେ ସ୍ୱାଧୀନତା ସଂଗ୍ରାମ ଅତିକ୍ରମ କରି ସାର୍ବଜନୀନ ଭୋଟ ଅଧିକାର ଓ ପ୍ରତିନିଧି ନିର୍ବାଚନ, ଜାତୀୟ ଐକ୍ୟ ନିମନ୍ତେ ସଂଗ୍ରାମ, ଶିଳ୍ପ ପ୍ରଧାନ ଦେଶରେ ଶ୍ରମିକର ସ୍ଥାନ ନିର୍ଦ୍ଧାରଣ, ସମୃଦ୍ଧ ଅର୍ଥନୀତିରେ ନିମ୍ନତମ ଜୀବନଧାରଣର ମାନ ନିର୍ଣ୍ଣୟ, ହଠାତ୍ କ୍ଷୁଦ୍ର ହୋଇ ପଡ଼ିଥିବା ଗୋଟାଏ ପୃଥିବୀ ସହିତ ନିଜର ମିଳନ—ଏହି ସବୁ ସମସ୍ୟାରେ ଉପନୀତ ହୋଇଅଛୁଁ । ଏହି ସମସ୍ୟାମାନଙ୍କ ମଧ୍ୟରୁ କୌଣସିଟିର, ବିଶେଷତଃ ଶେଷଟିର, ସମାଧାନ ହୋଇ ପାରିନାହିଁ । କିନ୍ତୁ ସେ ଗୁଡ଼ିକର ସମାଧାନ ପାଇଁ ଅନୁଷ୍ଠାନ ମୂଳକ ଯନ୍ତ୍ର ବାହାର କରିଯାଇ ପାରିଅଛି । ଆମର ଜାତୀୟ ଜୀବନ ସହିତ ସଂଖ୍ୟା- ଲଘୁ ସମ୍ପ୍ରଦାୟକୁ କୌଶଳ ସହକାରେ ମିଶାଇଦେବା ଉପରେ ପ୍ରତ୍ୟେକ ପ୍ରଶ୍ନର ସମାଧାନ ବହୁ ପରିମାଣରେ ନିର୍ଭର କରୁଅଛି । ଅବଶ୍ୟ ଏହି ସମସ୍ୟାଟି ନୂତନ ନୁହେଁ ; କାରଣ ଆମ୍ଭେମାନେ ଆଦ୍ୟରୁ ସଂଖ୍ୟାଲଘୁ ସମ୍ପ୍ରଦାୟମାନଙ୍କ ଦ୍ୱାରା ଗଠିତ ଗୋଟିଏ ଜାତି । ଆମର ଅଧିକାଂଶ ସଂଖ୍ୟାଲଘୁ ସମ୍ପ୍ରଦାୟର ଲୋକ ହେଉଛନ୍ତି, ପ୍ରାଚୀନ ଆମେରିକାର ଅଧିବାସୀ ମାତ୍ର ସମାଜରେ ସେମାନଙ୍କ ସ୍ଥାନ ପ୍ରତି ଯେଉଁ ଗଭୀର ମନୋଯୋଗ ଦିଆ ଯାଉଅଛି, ତାହା ପ୍ରାଚୀନ ନୁହେଁ । ମାତ୍ର ପଚାଶବର୍ଷ ପୂର୍ବେ ନିଗ୍ରୋ, ମେକ୍‌ସିକାନ, ଲୋହିତଭାରତୀୟ ବା ପ୍ରାଚ୍ୟଦେଶାଗତ ଲୋକଙ୍କ ପ୍ରତି ଆମ ଜାତି କଅଣ କରିପାରେ, ସେଥିପ୍ରତି ଆଦୌ ଦୃଷ୍ଟି ନଥିଲା ବୋଲି କହିଲେ

ଅତ୍ୟନ୍ତ ହେବନାହିଁ । କିନ୍ତୁ ଆଜି ଆମକୁ ସେହି ପ୍ରଶ୍ନ ବିଚାର କରି ପକାଉଅଛୁ । ଆମର ପୂର୍ବ ଆତ୍ମସନ୍ତୋଷ କ୍ଷୁଣ୍ଣ ହୋଇଅଛି । ବହୁସଂଖ୍ୟକ ଲୋକ ନିଜ ଜନ୍ମଭୂମି ତ୍ୟାଗକରି ଏଠାକୁ ଆସି ଅଛନ୍ତି । ଗୋଟାଏ ବିପ୍ଳବ ଲୋକଙ୍କ ମନରେ ଉଚ୍ଚାକାଙ୍କ୍ଷା ଜାଗ୍ରତ କରିଅଛି । ଏହା କେବଳ କଙ୍ଗୋ, ଚୀନ ବା ଇଜିପ୍ଟ ଉପରେ ପ୍ରଭାବ ପକାଇ ନାହିଁ ; ଆମର ସଂଖ୍ୟାଲଘୁ ସମ୍ପ୍ରଦାୟମାନଙ୍କ ଉପରେ ମଧ୍ୟ ଏହି ପ୍ରଭାବ ପଡ଼ିଅଛି । ଆମର ଗଣତାନ୍ତ୍ରିକ ନେତୃତ୍ୱ ଉପରେ ଯୁଦ୍ଧ ଓ ଶୀତଳ ଯୁଦ୍ଧର ପ୍ରବଳ ପ୍ରଭାବ ପଡ଼ିଅଛି । ଏହିପରି ଅନେକ ପ୍ରଭାବ ଫଳରେ ସଂଖ୍ୟାଲଘୁ ପ୍ରଶ୍ନ ଅପରିହାର୍ଯ୍ୟ ହୋଇ ପଡ଼ିଅଛି । ଧୀର ଗତିରେ ଆମେ ମାନବିକ ସମ୍ପର୍କ ବିଷୟରେ ନୂତନ ଚିନ୍ତା ଓ ନୂତନ ଉଦ୍ଭାବନ କରିଅଛୁ । ଗୋଟାଏ ପୁରାତନ ଅନୁଷ୍ଠାନକୁ ବିତାଡ଼ିତ କରିବା ସହଜ ନୁହେଁ ।

## ହାଉଆଇରେ 'ସମ୍ମିଳନ' ଓ 'ବହୁଳବାଦ'

ଆମେରିକାରେ ବହୁଳବାଦ, ସମ୍ମିଳନ ଓ ଭେଦଭାବର ସମ୍ବନ୍ଧ ବିଷୟକ ସମସ୍ୟାର ବିଚାର କରିବାର ଗୋଟିଏ ପନ୍ଥା ହେଉଛି ହାଉଆଇର ଅବସ୍ଥା ବିଚାର କରିବା ; କାରଣ ଏହା ଆମେରିକାରେ ବହୁଳବାଦର ପ୍ରକୃଷ୍ଟ ଉଦାହରଣ । ହାଉ-ଆଇର ଜାତିଗତ, ଧର୍ମଗତ ଓ ଗୋଷ୍ଠୀଗତ ସମ୍ପ୍ରଦାୟମାନଙ୍କ ମଧ୍ୟରେ ଥିବା ସମ୍ବନ୍ଧ ଗୁଡ଼ିକୁ ଲକ୍ଷ୍ୟ କରିବାଦ୍ୱାରା ଆମ୍ଭେମାନେ ଏକପ୍ରକାର ମାନଦଣ୍ଡ ପାଇପାରିବା ଓ ସେହି ମାନଦଣ୍ଡରେ ଦେଶର ଅନ୍ୟାନ୍ୟ ଅଂଶକୁ ତୁଳନା କରିପାରିବା । ଏହି ରାଜ୍ୟର ଅବସ୍ଥା ପର୍ଯ୍ୟାଲୋଚନା କଲେ ଦଳଗତ ପାର୍ଥକ୍ୟ ହେତୁ ଭେଦଭାବ କେତେଦୂର ହୋଇଥାଏ, ଓ ଭେଦଭାବର ହ୍ରାସ ଫଳରେ ଦଳଗତ ସ୍ୱାତନ୍ତ୍ର୍ୟ କେତେଦୂରେ ରକ୍ଷା ହୋଇଥାଏ, ସେ ବିଷୟରେ ଆମ୍ଭେମାନେ କିଛିଜାଣି ପାରିବା ।

ଆମର କର୍ମମୟ ଜୀବନ ଉପରେ ହାଉଆଇ କେତେକ ସୂକ୍ଷ୍ମ ପ୍ରଭାବ ପକାଇ ଥାଏ । "ନିର୍ମଳ ସରସୀ ତଟେ ପଲ୍ଲି ନେସିଆ ସୁନ୍ଦର" କବିତାଟିରେ ଆମର ପ୍ରେମର କଳ୍ପନା ପ୍ରକାଶ ପାଇଅଛି । ଏହାଦ୍ୱାରା ଆମ ଦେଶର ଅନ୍ୟାନ୍ୟ ଅଂଶରେ ସମ୍ପ୍ରଦାୟଗତ ଅପ୍ରୀତିକର ସମ୍ପର୍କ ବିଷୟରେ ଆମର ଆଶଙ୍କା ଓ ଦୋଷ ଲଘୁ ମନେ ହୋଇଥାଏ । ହାଉଆଇ ଦ୍ୱୀପପୁଞ୍ଜରେ ଏ ପ୍ରକାର ଚିନ୍ତା ସେତେ ପୁଷ୍ଟିକର ବା ସାଧାରଣ ନୁହେଁ । ଏହା କଳ୍ପିତ ପ୍ରେମର ଅବସ୍ଥିତି ତାହିତି ଦ୍ୱୀପରେ (ଏବଂ ବୋଧ-ହୁଏ ତାହିତିର ବୋରିବୋରି ସହରରେ) କଳ୍ପନା କରିବା ଉଚିତ ।

ହାଉଆଇର ସମ୍ପ୍ରଦାୟଗତ ସମ୍ବନ୍ଧ ପ୍ରଥମ ଦୃଷ୍ଟିରେ ଯେପରି ବୋଧହୁଏ, ପ୍ରକୃତ ପକ୍ଷରେ ତାହାଠାରୁ ଅଧିକ ଜଟିଳ । ଏଠାର ଲୋକସଂଖ୍ୟା ବିଷୟରେ

ବିଶେଷ କିଛି କହିବା ଅନାବଶ୍ୟକ । ସଂକ୍ଷେପରେ କୁହାଯାଇପାରେ ଯେ ଏଠାର ଲୋକ ସଂଖ୍ୟାର ଏକତୃତୀୟାଂଶ ହେଉଛନ୍ତି କକେସୀୟ ; (ଏବେ ବହୁସଂଖ୍ୟକ ପର୍ତ୍ତୁଗୀଜ ଓ ପିଉର୍ଟୋରିକାନ୍ ଏହି କକେସୀୟ ସମ୍ପ୍ରଦାୟରେ ମିଶି ଯାଇଅଛନ୍ତି) । ଏକ ତୃତୀୟାଂଶ ହେଉଛନ୍ତି ଜାପାନୀ । ଏକ ଷଷ୍ଠାଂଶ ହେଉଛନ୍ତି ହାଉଆଇଆନ ହାଉଆଇଆନ ହେଉଛନ୍ତି ଗୋଟିଏ ମିଶ୍ରିତ ସମ୍ପ୍ରଦାୟ । ଏହି ଷଷ୍ଠାଂଶ ମଧ୍ୟରୁ ଅତି ଅଳ୍ପ ଲୋକଙ୍କ ଶରୀରରେ ବିଶୁଦ୍ଧ ପଲିନେସିଆନ ରକ୍ତ ପ୍ରବାହିତ । ଶତକଡ଼ା ୧୧ ଜଣ ହେଉଛନ୍ତି ଫିଲିପାଇନୋ ଓ ଶତକଡ଼ା ଛଅ ଜଣ ହେଉଛନ୍ତି ଚାଇନିଜ୍ । ଏଠାରେ ଖୁବ୍ ଅଳ୍ପ ସଂଖ୍ୟକ କୋରିଅନ, ସାମୋଆନ ଓ ନିଗ୍ରୋ ଅଛନ୍ତି । ଯୁକ୍ତରାଷ୍ଟ୍ର ମଧ୍ୟରେ ଏଇଟି ହେଉଛି ଏକମାତ୍ର ରାଜ୍ୟ, ଯହିଁରେ ଅକକେସୀୟ ଲୋକେ ସଂଖ୍ୟାଧିକ ଅଟନ୍ତି ।

ହାଉଆଇର ଏହି ବିଭିନ୍ନ ସମ୍ପ୍ରଦାୟ ଗୁଡ଼ିକ ପରସ୍ପର ମଧ୍ୟରେ ସମ୍ପୂର୍ଣ୍ଣ ସଦ୍‌ଭାବ ରଖି ଚଳନ୍ତି ବୋଲି କହିଲେ ନିଶ୍ଚୟ ଅତିରଞ୍ଜନ ହେବ । ସେମାନଙ୍କ ମଧ୍ୟରେ କେତେକ ଜାତିଗତ ବିଦ୍ୱେଷ ଓ ଭେଦଭାବ ଅଛି । ଏହା ସେମାନଙ୍କ ପୌରହିତ୍ୟ (ଶ୍ରେଣୀ) ପ୍ରଥାରୁ ଜଣାଯାଏ । ଏ ପ୍ରକାରର ଶ୍ରେଣୀବିଭାଗର କାରଣ ପ୍ରଦର୍ଶନ କରିବାକୁ ମୁଁ ଯାଉନାହିଁ । କେବଳ ଏତିକି କହି ରଖିଛି ଯେ ଏଗୁଡ଼ିକ ବହୁପରିମାଣରେ ବିଭିନ୍ନଦଳର ଦ୍ୱୀପକୁ ଆଗମନର ସମୟ ଅନୁସାରେ ଗଠିତ ହୋଇଅଛି । ମହାଦେଶର କକେସୀୟମାନଙ୍କ ଛଡ଼ା ପ୍ରତ୍ୟେକ ଆଗନ୍ତୁକଦଳ ଏଠାକୁ ଆସିବାବେଳେ ସମାଜର ନିମ୍ନତମ ସ୍ତରରେ ପ୍ରବେଶ କରିଥିଲେ । ଯେଉଁମାନେ ଆଗେ ହାଉଆଇକୁ ଆସିଥିଲେ ସେମାନେ ଏବେ ଉଚ୍ଚସ୍ତରକୁ ଉଠି ଯାଇଅଛନ୍ତି । ମାର୍କିନ ଯୁକ୍ତରାଷ୍ଟ୍ରର ଅନ୍ୟାନ୍ୟ ସ୍ଥାନକୁ ଆସିଥିବା ଇଉରୋପୀୟମାନେ ଠିକ୍ ସେହିପରି ସମୟକ୍ରମେ ଉଚ୍ଚତର ସୋପାନକୁ ଉଠିଅଛନ୍ତି । ଅବଶ୍ୟ ଏକଥା ସ୍ୱୀକାର କରିବାକୁ ହେବ ଯେ ଜାତିଗତ ସମ୍ପ୍ରଦାୟ ଓ ଶ୍ରେଣୀମଧ୍ୟରେ ସେମାନଙ୍କ ସ୍ଥାନର ଯେଉଁ ପରସ୍ପର ସମ୍ବନ୍ଧ ଦେଖାଯାଏ, ଦ୍ୱୀପକୁ ଆସିବାର ସମୟକ୍ରମ ତାହାର ଏକମାତ୍ର କାରଣ ନୁହେଁ । ବୈଦେଶିକମାନଙ୍କର ବ୍ୟବସାୟଗତ ଶ୍ରେଣୀଗତ ଉତ୍ପତ୍ତି ଏଥି ସହିତ ସମ୍ପୃକ୍ତ । ପୁଣି ଗୋଟିଏ ସାକ୍ଷର ଓ ଶିଳ୍ପରେ ଉନ୍ନତିଶୀଳ ସମାଜର ଉପଯୋଗୀ ସାଂସ୍କୃତିକ ଜୀବନ ଯାପନ ପାଇଁ ପ୍ରସ୍ତୁତିରେ ଯେଉଁ ପ୍ରଭେଦ ତାହା ମଧ୍ୟ ବିଚାର କରିବାକୁ ହେବ । କେବଳ ଦଳଗତ ବିଦ୍ୱେଷ ଆସନର ବିଭିନ୍ନ ପ୍ରକାର ସ୍ଥିର କରିବାରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିନାହିଁ ।

ଏଗୁଡ଼ିକର ଓ ଅନ୍ୟାନ୍ୟ ପ୍ରଭାବର ଫଳ ଏହାହିଁ ହୋଇଅଛି ଯେ ଅଧିକାଂଶ ଫିଲିପାଇନୋ ଓ ନିଗ୍ରୋ ଏବଂ କେତେକ ପିଉର୍ଟୋରିକାନ ସମାଜର ନିମ୍ନତମ

ସ୍ତରରେ ରହି ଅଛନ୍ତି । ଅଧିକାଂଶ ବର୍ଣ୍ଣଛ ହାଉଆଇଆନ ମଧ୍ୟ ସେହିପରି ଅସୁବିଧା ଭୋଗ କରୁ ଅଛନ୍ତି । ଆମେରିକାର ନିଗ୍ରୋଭାରତୀୟମାନେ ଯେପରି ସେମାନଙ୍କ ସମସ୍ୟାର ସମାଧାନ ପାଇଁ ଚେଷ୍ଟା କରୁଅଛନ୍ତି, ଏମାନେ ପ୍ରାୟ ସେହିପରି ଚେଷ୍ଟା କରୁଅଛନ୍ତି । ସେମାନେ ବର୍ତ୍ତମାନ ନିଜର ପ୍ରାଚୀନ ସ୍ଥିତିର ଜୀବନ-ଯାପନ କରି ପାରୁନାହାନ୍ତି । ତାହା ସଙ୍ଗେ ନିଜର ସ୍ୱତନ୍ତ୍ର ମୂଲ୍ୟବୋଧ ଥିବାରୁ ଓ ସେମାନଙ୍କ ପ୍ରତି ବିଦ୍ୱେଷ ହେତୁ ବୃହତ୍ତର ସମାଜରେ ମିଶିବାର ପଥ ସେମାନଙ୍କ ପାଇଁ ରୁଦ୍ଧ । ସେମାନେ ଆକ୍ରୋଶ ରଖୁଅଛନ୍ତି ; ବିଶେଷତଃ ଜାପାନୀମାନଙ୍କ ପ୍ରତି ସେମାନଙ୍କ ଆକ୍ରୋଶ ଅଧିକ ; କାରଣ ସେମାନେ ହାଉଆଇଆନ୍‌ମାନଙ୍କଠାରୁ ଅଧିକ ଅଗ୍ରଗତି କରି ପାରିଅଛନ୍ତି ।

ବର୍ଣ୍ଣଛ ହାଉଆଇଆନ୍‌ମାନଙ୍କ ଉପର ସ୍ତରରେ ଅଛନ୍ତି ଆଂଶିକ ହାଉଆଇଆନ୍ ଓ ଜାପାନୀ । ଏମାନଙ୍କ ମଧ୍ୟରୁ ଅନେକେ ଅଳ୍ପକାଳ ମଧ୍ୟରେ ଶିକ୍ଷା, ବ୍ୟବସାୟ ଓ ଆୟର ସୋପାନରେ ଉପରକୁ ଉଠି ଅଛନ୍ତି । ଜାପାନୀମାନଙ୍କ ପୂର୍ବରୁ ଆସିଥିବା ଚୀନ୍‌ମାନେ ବୋଧହୁଏ ଆହୁରି ଉଚ୍ଚତର ସୋପାନରେ ଅବସ୍ଥିତ । ସେମାନଙ୍କର ଆସନ ଉଚ୍ଚ ହେଲେହେଁ ସେମାନଙ୍କର ସେମିଟିକ ବିଦ୍ୱେଷଭାବ ଦେଖାଯାଏ । ହାଉଆଇ ଓ ପଶ୍ଚିମ ପାସିଫିକ ଦ୍ୱୀପମାନଙ୍କରେ ଚୀନାମାନେ ବ୍ୟବସାୟରେ ଉନ୍ନତିକରିଥିବାରୁ ସେମାନଙ୍କୁ ଅନେକେ 'ପ୍ରାଚ୍ୟଦେଶର ଇହୁଦୀ' ବୋଲି କହିଥାନ୍ତି । ଚୀନାମାନେ ଚତୁର ବୁଦ୍ଧିମାନ, ଉଚ୍ଚାଭିଳାଷୀ ଓ ବିଷୟାଶକ୍ତ—ଏଥିରୁ ସମ୍ପ୍ରଦାୟଗତ ସମ୍ପର୍କ ବିଷୟରେ ଯେତେ ଜଣାଯାଏ, ସେମାନଙ୍କର ବ୍ୟକ୍ତିଗତ ବିଶେଷତ୍ୱରୁ ସେତେ ଜଣାଯିବ ନାହିଁ । (ଆଶ୍ଚର୍ଯ୍ୟର ବିଷୟ ଏହି ଯେ ବିଭିନ୍ନ ସମୟରେ ଓ ବିଭିନ୍ନ ସ୍ଥାନରେ ଏହିପରି ଏକ ଶ୍ରେଣୀର ଉଚ୍ଚ ଆସନକୁ ଉନ୍ନୀତ ସଂଖ୍ୟାଲଘୁ ସମ୍ପ୍ରଦାୟ ଦେଖା ଯାଇଥାନ୍ତି ।) କେତେକ ପରିସ୍ଥିତିରେ ଚୀନା ଓ ଇହୁଦୀମାନଙ୍କୁ ଯେଉଁ ଦୃଷ୍ଟିରେ ଦେଖାଯାଏ, ସ୍କଟ (ସ୍କଟଲଣ୍ଡର ଲୋକ), ୟାଙ୍କି (ଆମେରିକାର ନିଉଇଂଲଣ୍ଡର ଲୋକ), ଗ୍ରୀକ୍ ଓ ଅନ୍ୟ କେତେକ ସମ୍ପ୍ରଦାୟର ଲୋକଙ୍କୁ ଠିକ୍ ସେହି ଦୃଷ୍ଟିରେ ଦେଖାଯାଏ ।

କକେସୀୟମାନଙ୍କୁ ଘୃଣାରେ ହାଓଲ ବୋଲି କୁହାଯାଏ । ଏବେ ସେମାନେ ଗୋଟିଏ ପ୍ରଧାନ କ୍ଷମତାଶାଳୀ ସମ୍ପ୍ରଦାୟ ହୋଇ ନାହାନ୍ତି । ତଥାପି କେତେକ ବଡ଼ ବ୍ୟବସାୟ ସେମାନଙ୍କ ହାତରେ ରହିଅଛି । କିନ୍ତୁ ଯେଉଁ ପାଞ୍ଚୋଟି ବ୍ୟବସାୟ ହାଉଆଇ ଦ୍ୱୀପର ଅର୍ଥନୀତିରେ ପ୍ରଧାନ ସ୍ଥାନ ଅଧିକାର କରିଥିଲା, ଅର୍ଥାତ୍ ଜାହାଜ, ସପୁରି, ଚିନି କାରଖାନା ପ୍ରଭୃତି ବ୍ୟବସାୟ ଯୁଦ୍ଧପରେ ବିଭିନ୍ନ ଜାତିର ଲୋକଙ୍କ ହାତକୁ ଚାଲି ଯାଇଅଛି । ଜଣେ ଚୀନାର ହାରାହାରି ଆୟ ଜଣେ ହାଓଲର

ହାବହାଣ ଆୟଠାରୁ ସାମାନ୍ୟ ବେଶୀ । ଅଙ୍କେଷୀୟମାନଙ୍କୁ ନାଗରିକ ଅଧିକାର ଦିଆଯିବାରୁ ସେମାନଙ୍କର ରାଜନୈତିକ କ୍ରିୟାକଳାପର ଗୁରୁତ୍ୱ ବୃଦ୍ଧି ପାଇଅଛି ଓ ସେମାନଙ୍କର ଆସ୍ଥାନ ଦୃଢ଼ୀଭୂତ ହୋଇଅଛି ।

ଏହି ସମ୍ପ୍ରଦାୟମାନଙ୍କ ମଧ୍ୟରୁ କେତେକଙ୍କର ପୂର୍ବ ପୁରୁଷମାନେ, ବିଶେଷତଃ ଘୃଇନିଜ, ଜାପାନୀ ଓ ହାଓଲିଙ୍କ ପୂର୍ବ ପୁରୁଷମାନେ ନିଜର ସନ୍ତାନ-ସନ୍ତତିମାନଙ୍କୁ ଅନ୍ୟ ସମ୍ପ୍ରଦାୟମାନଙ୍କଠାରୁ ଦୂରରେ ରହିବାକୁ ଓ ସେମାନଙ୍କ ପ୍ରତି ବିଦ୍ୱେଷଭାବ ପୋଷଣ କରିବାକୁ ଶିକ୍ଷା ଦେଉଥିଲେ । ନିଜର ସ୍ୱତନ୍ତ୍ର ସାଂସ୍କୃତିକ ପରମ୍ପରା ରକ୍ଷା କରିବାର ଅଭିଳାଷ ହେତୁ ଏପରି ଘଟିଥିଲା । ଆହୁରି ମଧ୍ୟ ଯେଉଁମାନେ ସହଜରେ ସଭ୍ୟତାରେ ନିଜର ଆସନ ଉନ୍ନତ କରି ପାରିନଥିଲେ, ସେମାନଙ୍କ ପ୍ରତି ଘୃଣା ଏହାଦ୍ୱାରା କେତେକ ପରିମାଣରେ ପ୍ରକାଶ ପାଉଥିଲା । ହାଉଆଇ ବିଶ୍ୱବିଦ୍ୟାଳୟରେ ମୁଁ ଗୋଟିଏ ଦୀର୍ଘ ପ୍ରଶ୍ନାବଳୀ ଦେଇ ପାଞ୍ଚଶହ ଜଣଙ୍କଠାରୁ ଉତ୍ତର ପାଇଥିଲି । ସେଥିରୁ ଜଣାଯାଏ ଯେ ଅଧିକାଂଶ ଛାତ୍ର କୌଣସି ଗୋଷ୍ଠୀଏ ସୁସ୍ପଷ୍ଟ ମତ ଦେବାରେ ନିଜକୁ ଦୋଷୀ ମନେ କରୁଅଛନ୍ତି । ସେମାନେ ନିଜର ଚରିତ୍ରଗତ ଆଦର୍ଶ ବିଷୟରେ ସଚେତନ ହୋଇ ଅଛନ୍ତି । ସେମାନଙ୍କ ମଧ୍ୟରୁ ଅନେକେ ଦଳଗତ ଓ ଦେଶଗତ ସୀମା ଅତିକ୍ରମ କରି ନିଜ ନିଜର ବନ୍ଧୁ ନିର୍ବାଚନ କରୁଅଛନ୍ତି । ତଥାପି ସେମାନଙ୍କ ଶିକ୍ଷାର ଦେଶକେନ୍ଦ୍ରିକ ଦୃଷ୍ଟିକୋଣର ପ୍ରଭାବ ଏବେ ସୁଦ୍ଧା ଜଣା ପଡ଼ୁଥାଏ । ଉଦାହରଣ ସ୍ୱରୂପ, ଫିଲିପାଇନୋମାନଙ୍କ ପ୍ରତି ସେମାନଙ୍କର ଦୃଷ୍ଟିଭଙ୍ଗୀ । ହାଉଆଇ ବିଶ୍ୱବିଦ୍ୟାଳୟରେ ଅତି ଅଳ୍ପସଂଖ୍ୟକ ଫିଲିପାଇନୋ ଅଛନ୍ତି । (ଆସନସୋପାନରେ ଅଗ୍ରଗତି କରୁଥିଲେହେଁ ସେମାନେ ଅପେକ୍ଷାକୃତ ପଶ୍ଚାଦାଗତ । ଫିଲିପାଇନୋମାନଙ୍କ ମଧ୍ୟରୁ ଅଧିକାଂଶ ଏବେ ସୁଦ୍ଧା କୃଷିକ୍ଷେତ୍ରରେ ନୀଚ କାର୍ଯ୍ୟରେ ନିଯୁକ୍ତ ଅଛନ୍ତି) । ବିଶ୍ୱବିଦ୍ୟାଳୟର ଅନେକ ଛାତ୍ର ହାନୋଲୁଲୁରୁ ଆସିଅଛନ୍ତି । ସେମାନଙ୍କର ଫିଲିପାଇନୋମାନଙ୍କ ସହିତ ପ୍ରତ୍ୟକ୍ଷ ସମ୍ପର୍କ ପ୍ରାୟ ନଥାଏ । ତଥାପି ସେମାନଙ୍କ ମଧ୍ୟରୁ ଅନେକ ମନେ କରନ୍ତି ଯେ ଫିଲିପାଇନୋମାନେ କ୍ଷଣକୋପୀ, ପ୍ରତିହିଂସାପରାୟଣ, ଭାବପ୍ରବଣ, ସଙ୍ଗୀତପ୍ରିୟ ଓ କଳହପ୍ରିୟ । ଫିଲିପାଇନୋମାନଙ୍କ ଚରିତ୍ରଗତ ବିଶେଷତ୍ୱ ସମ୍ବନ୍ଧରେ ଏହି ବିଶେଷଣ ଗୁଡ଼ିକ ବିଶେଷଭାବରେ ବ୍ୟବହୃତ ହୋଇଥିଲା । ଯଦୃଚ୍ଛାକ୍ରମେ ବିଶେଷଣ ଗୁଡ଼ିକ ନିର୍ବାଚନ କରାଯାଇଥିଲେ ଯେଉଁ ତାଲିକା ହୋଇଥାନ୍ତା, ତାହା ଏହି ତାଲିକାର ପ୍ରାୟ ଚତୁର୍ଗୁଣ ହୋଇଥାନ୍ତା । ସେଥିମଧ୍ୟରୁ ଏଇ କେତୋଟି ନିର୍ବାଚିତ ହୋଇଥିଲା । ତଥାପି କୁହାଯାଇପାରେ ଯେ ଅର୍ଦ୍ଧାଧିକ ଛାତ୍ରଜଣେ ଫିଲିପାଇନୋକୁ ଅନ୍ତରଙ୍ଗ ବନ୍ଧୁରୂପେ ଗ୍ରହଣ କରିବାକୁ ପ୍ରସ୍ତୁତ । କେବଳ ଶତକଡ଼ା ୧୦ ଜଣରୁ କମ୍ ଛାତ୍ର ଫିଲିପାଇନୋମାନଙ୍କ ପ୍ରତି ଘୋର ବୈରଭାବ ପୋଷଣ କରୁଥିବାର ପ୍ରକାଶ କରିଥିଲେ ।

ହାଉଆଇ ରାଜ୍ୟରେ ଆନ୍ତଃସାମ୍ପ୍ରଦାୟିକ ବିଦ୍ୱେଷ ପ୍ରାୟ ନାହିଁ । ଏହି ମତ ସହିତ ଉପରଲିଖିତ ଘଟଣାଗୁଡ଼ିକର ସାମଞ୍ଜସ୍ୟ ଦେଖାଯାଏ ନାହିଁ । ତଥାପି ବୁଝିହୁଏ ଯାଇପାରେ, ଶତ୍ରୁଚରିତ ଶ୍ରେଣୀବିଭାଗ ଓ ଭେଦଭାବ ହାଉଆଇରେ ଅପେକ୍ଷାକୃତ ଅତି ଅଳ୍ପ । ଯେଉଁ ସାମାନ୍ୟ ଶତ୍ରୁତା ଦେଖାଯାଏ, ତାହା ଯେତେ ଗୋଷ୍ଠୀଗତ ବା ଦେଶଗତ ନୁହେଁ ; ବରଂ ଶ୍ରେଣୀଗତ ପ୍ରଭେଦ ଉପରେ ପ୍ରତିଷ୍ଠିତ । ପୁଣି ଏହି ଶତ୍ରୁତା ସାଧାରଣତଃ ସମ୍ପ୍ରଦାୟର ନିମ୍ନଶ୍ରେଣୀର ଲୋକଙ୍କ ପ୍ରତି ଉଦ୍ଦିଷ୍ଟ । କକେସୀୟମାନେ ଯେ ସର୍ବଦା ପ୍ରଶଂସିତ ତାହା ନୁହେଁ । ସେମାନଙ୍କ ପ୍ରତି କେତେଦୂର ବିଦ୍ୱେଷ ରହିପାରେ ସେ ବିଷୟରେ ଗୋଟିଏ ଗଳ୍ପ ଅଛି ।

ଥରେ ଗୋଟିଏ ଆଗ୍ନେୟଗିରିରୁ ତରଳ ଆଗ୍ନେୟ ସ୍ରୋତ ଗୋଟିଏ ଗ୍ରାମ ଆଡ଼କୁ ମାଡ଼ି ଆସୁଥିଲା । କେତେଜଣ ଜାପାନୀ ଶ୍ରମିକ ଗ୍ରାମକୁ ରକ୍ଷା କରିବା ପାଇଁ ସେହି ଉତ୍ତପ୍ତ ଧାତୁ ସ୍ରୋତକୁ କୋଡ଼ରେ କାଢ଼ି ଦୂରକୁ ଫିଙ୍ଗି ଦେଉଥିଲେ । ଜଣେ ହାଓଲ କିଛି ଦୂରରେ ଛିଡ଼ା ହୋଇ ଏହି ଦୃଶ୍ୟ ଦେଖୁଥିଲା । ସେ ଜଣେ ବନ୍ଧୁକୁ ଡାକି କହିଲା, "ଏହା ତରଳ ଧାତୁସ୍ରୋତ ନୁହେଁ ଯେ ନରକ କୁଣ୍ଡର ଅଗ୍ନି ।" ଜାପାନୀ ଶ୍ରମିକମାନଙ୍କ ଭିତରୁ ଆଉ ଜଣେ କହିଲା, "ଆଃ, ଏ ହାଓଲଗୁଡ଼ାକ ସବୁଆଡ଼େ ମାଡ଼ିଗଲେଣି । ନରକ କୁଣ୍ଡକୁ ମଧ୍ୟ ଛାଡ଼ି ନାହାନ୍ତି ।"

ହାଉଆଇର ଅନେକ କକେସୀୟଙ୍କ ପକ୍ଷରେ ଗୋଷ୍ଠୀଗତ ଓ ଦେଶଗତ ପ୍ରଭେଦ ଆଦୌ ଗୁରୁତ୍ୱପୂର୍ଣ୍ଣ ନୁହେଁ । ତଥାପି ଗୋଟାଏ ଗୋଟାଏ କ୍ଷେତ୍ରରେ ସେମାନଙ୍କର ସ୍ୱାତନ୍ତ୍ର୍ୟ ଓ ସେମାନଙ୍କର ପୂର୍ବକାଳର ବିଦ୍ୱେଷ ରହିଅଛି । ଅନେକ ବ୍ୟବସାୟରେ ପ୍ରାଚ୍ୟ ଦେଶର ଲୋକେ ଆସ୍ଥାନ ଜମେଇଥିଲେହେଁ କେତେକ ବ୍ୟବସାୟରଉଚ୍ଚ ଚାକିରିଗୁଡ଼ିକ ଅକକେସୀୟମାନଙ୍କ ପାଇଁ ପୂର୍ଣ୍ଣ ମାତ୍ରାରେ ଉନ୍ମୁକ୍ତ ନୁହେଁ । କେତେଗୁଡ଼ିଏ ଷ୍ଟ୍ରୀଟ୍, ଗଲ୍‌ଫ କ୍ଲବ, ନୌକା-କ୍ଲବ ଓ ବ୍ୟବସାୟ କ୍ଲବରେ ପୃଥକକରଣ ରହିଅଛି । ଯେତେବେଳେ ରାଜ୍ୟଟି କୃଷି କ୍ଷେତ୍ରରେ ପୂର୍ଣ୍ଣଥିଲା, ଶ୍ୱେତାଙ୍ଗମାନେ ସେଥିରେ ଅଧିକାରୀ ଥିଲେ, ପ୍ରାଚ୍ୟଦେଶାଗତ ଲୋକେ ଓ ପିଲିପେନିଆନମାନେ କୃଷି କ୍ଷେତ୍ରର ଶ୍ରମିକ ଥିଲେ, ସେହି ପ୍ରାଚୀନ ଯୁଗର ଅତୀତର ସଙ୍କେତରୂପେ ଏଗୁଡ଼ି ରହି ଆସିଅଛି । ସେ ଅତୀତ ଚାଲିଗଲାଣି କିନ୍ତୁ ସେ ଯୁଗର ସବୁ ଚିନ୍ତାଧାରା ବଦଳି ଯାଇପାରିନାହିଁ । କେତେକ ଆଧୁନିକ କକେସୀୟ ଯୁବକ ଏହି ପୃଥକ୍‌ଭୂତ ଅଂଶଗୁଡ଼ିକର ସମର୍ଥନ କରି କହିଥାନ୍ତି, "ଏଇ ଯେଉଁମାନେ ହଠାତ୍ ବଡ଼ଲୋକ ହୋଇ ଯାଇଅଛନ୍ତି, ସେମାନେ ସବୁ ନେଇ ସାରିଲେଣି । ଆମର ଅନ୍ତତଃ ଏତିକି ରହିଥାଉ ।"

ଏ ସବୁର ଉଲ୍ଲେଖ କର ନଥିଲେ ବାସ୍ତବ ଚିତ୍ର ମିଳ ପାରନ୍ତା ନାହିଁ । ତଥାପି ଏ ସବୁ ଦେବାକୁ ପଡ଼ିଥିଲା ପର ମନେହୁଏ । ଗୋଟାଏ ବଡ଼କଥା ହେଉଛି, ଯେଉଁ ହାଉଆଇ ରାଜ୍ୟରେ ପ୍ରାୟ ସାମନ୍ତବାଦୀ ପ୍ରଥା ଚଳୁଥିଲା ଏବେ ତାହା ବାସ-ଗୃହ, ଅର୍ଥନୀତି ଓ ଶିକ୍ଷାଦୃଷ୍ଟିରୁ 'ସମ୍ମିଳିତ' ହୋଇ ପାରିଅଛି । ଏହାର ଅର୍ଥ ଏପରି ନୁହେଁ ଯେ ହାଉଆଇରେ ଆଉ ଶ୍ରେଣୀ ବିଭେଦ ନାହିଁ । ପ୍ରକୃତ ପକ୍ଷରେ ଅନ୍ୟାନ୍ୟ ସ୍ଥାନପରି ହାଉଆଇରେ ମଧ୍ୟ ବିରାଟ ଶ୍ରେଣୀ ବିଭେଦ ଅଛି । ଏଥିରୁ ମଧ୍ୟ ବୁଝିବାକୁ ହେବନାହିଁ ଯେ ଦେଶଭେଦ ସହିତ ଶ୍ରେଣୀଭେଦର କେତେକ ପରିମାଣରେ ସମ୍ପର୍କ ନାହିଁ । ଏହାର ଅର୍ଥ ହେଉଛି, ବ୍ୟକ୍ତିବିଶେଷଙ୍କ ପ୍ରତି ସମ୍ପ୍ରଦାୟ ଦୃଷ୍ଟିରୁ ଯେଉଁ ପ୍ରତି-ବନ୍ଧକ ଥିଲା, ତାହା ଏବେ ଦେଖିବାକୁ ବିରଳ । ଏପରିକି ବିଭିନ୍ନ ସମ୍ପ୍ରଦାୟ ମଧ୍ୟରେ ବିବାହ ଅତି ସାଧାରଣ କଥା ହୋଇଅଛି । ୧୯୫୭ ଠାରୁ ୧୯୫୯ ମସିହା ମଧ୍ୟରେ ହାଉଆଇରେ ଯେତେ ବିବାହ ହୋଇଥିଲା, ସେଥି ମଧ୍ୟରୁ ପ୍ରାୟ ଏକ ତୃତୀୟାଂଶ ଭିନ୍ନ ଭିନ୍ନ ଗୋଷ୍ଠୀ ବା ଭିନ୍ନ ଭିନ୍ନ ଦେଶାଗତ ସଂପ୍ରଦାୟ ମଧ୍ୟରେ ହୋଇଥିଲା । ଏହି ସମୟ ମଧ୍ୟରେ ଯେତେ ଶିଶୁ ଜନ୍ମି ଥିଲେ, ସେମାନଙ୍କ ଭିତରୁ ଶତକଡ଼ା ୩୫ ଜଣ ଏହିଭଳି ବିଭିନ୍ନ ଗୋଷ୍ଠୀ ବିଭିନ୍ନ ଦେଶାଗତ ଦମ୍ପତିଙ୍କର ସନ୍ତାନ[୪] ।

## ପୃଥକ୍‌କରଣ ଓ ବହୁଳବାଦ

ସମ୍ମିଳନର ନିଦର୍ଶନରୁ ପ୍ରମାଣିତ ହୁଏନାହିଁ ଯେ ହାଉଆଇରେ ସମ୍ପ୍ରଦାୟ ପ୍ରତି ଆନୁଗତ୍ୟ ଲୋପ ପାଇଯାଇଅଛି । ବୋଧହୁଏ କେହି ହାଉଆଇକୁ ଗଲେ ତାର ପ୍ରଧାନ ଧାରଣା ହେବ ଯେ ଏଠାରେ ସମ୍ମିଳନ ଓ ବହୁଳବାଦର ମଧୁର ମିଳନ ହୋଇଅଛି । ଅନେକ ବୌଦ୍ଧ ମନ୍ଦିର ସହିତ ରବିବାସରୀୟ ସ୍କୁଲ ସ୍ଥାପିତ ହୋଇଅଛି । ସେଥିରେ ପିଲାମାନେ ଗାଆନ୍ତି, "ଏତିକି ଜାଣେ ମୁଁ ବୁଦ୍ଧ, ତୁମ୍ଭେ ସ୍ନେହ କରିଥାଅ ମୋତେ ।" କିନ୍ତୁ କେତେକ ବୌଦ୍ଧ ଧର୍ମଯାଜକ ନିଜ ଧର୍ମ ସମ୍ପ୍ରଦାୟର ପ୍ରାଚୀନ ରୀତିନୀତି ଶିକ୍ଷା କରିବାକୁ ଜାପାନକୁ ଯାଇଥାଆନ୍ତି । ଏହା ଦ୍ୱାରା ସେମାନେ ସେହିସବୁ ରୀତିନୀତିକୁ ସେମାନଙ୍କ ନୂତନ ବାସସ୍ଥାନ ହାଉଆଇରେ ଅବିକୃତ ରଖିପାରିବେ ବୋଲି ଆଶା କରିଥାନ୍ତି । ବିଶ୍ୱବିଦ୍ୟାଳୟରେ ବିଭିନ୍ନ ଦେଶଗତ ଓ ଶ୍ରେଣୀଗତ ସଂପ୍ରଦାୟର ପ୍ରତିନିଧି ନଥିଲେହେଁ ରାଜ୍ୟର ସବୁ ପ୍ରକାର ଲୋକଙ୍କର ମିଳନ ଏଠାରେ ଦେଖାଯାଏ । ଏପରିକି ଏଠାରେ ଗ୍ରୀକ୍‌ଇଜନିକ, ଜାପାନୀ ଓ ଚିନେସୀୟ ଧର୍ମଭଗିନୀମଣ୍ଡଳୀ ଦେଖିବାକୁ ମିଳେ । ଏ ପ୍ରକାର ଭଗିନୀମଣ୍ଡଳୀ ଆମେରିକାର ନିଷିଦ୍ଧ ହୋଇଥାଆନ୍ତି । ଯେତେବେଳେ ସୁନ୍ଦରୀ ପ୍ରତିଯୋଗିତା ହୁଏ,

[୪] ପ୍ଲାନିଂ ଓ ରିସର୍ଚ୍ଚ ବିଭାଗ ପକ୍ଷରୁ ପ୍ରଫେସର ଡଗଲାସ ୟାମାମୁରା ଅନୁଗ୍ରହ କରି 'ଡେଟ ଫ୍ରମ ଦ ଷ୍ଟେଟ ଅଫ୍ ହାଉଆଇ'ରୁ ମୋତେ ଏହି ସମ୍ବାଦ ଦେଇଅଛନ୍ତି ।

ସେତେବେଳେ ବହୁଳବାଦର ସୁନ୍ଦର ନିଦର୍ଶନ ଦେଖିବାକୁ ମିଳେ । ପ୍ରତ୍ୟେକ ଗୋଷ୍ଠୀରୁ ରମଣୀମାନେ ପ୍ରତିଯୋଗିତା କରିବାକୁ ଆସନ୍ତି ; ତାହାଛଡ଼ା ଜଣେ ବିଦେଶୀ ଭାବରେ ପ୍ରତିଯୋଗିତା କରିପାରେ । ଏଥିରୁ ସମ୍ମିଳନର ମୂଲ୍ୟ ଜଣା ପଡ଼ିବ । ତେବେ ପ୍ରତିଯୋଗିତାରେ ଜଣଙ୍କୁ ନିର୍ବାଚନ କରି ନଯାଇ ସଂପ୍ରଦାୟ ଭିତ୍ତିରେ ସାତଜଣଙ୍କୁ ନିର୍ବାଚନ କରାଯାଏ ।

ଏହାହିଁ ହେଉଛି ହାଉଆଇର ପ୍ରଧାନ ପରିସ୍ଥିତି । କୃତ୍ରିମ ଭେଦଭାବ ଥିଲେହେଁ ହାଉଆଇରେ ବିଭିନ୍ନତା ମଧ୍ୟରେ ଏକତା ରହିଅଛି । ରାଜ୍ୟରେ ଯେ କୌଣସିମତେ ବିଭିନ୍ନ ସଂସ୍କୃତିବିଶିଷ୍ଟ ସ୍ୱତନ୍ତ୍ର ସମ୍ପ୍ରଦାୟମାନ ରହିଅଛି । ତାହାସଙ୍ଗେ ସେମାନଙ୍କ ମଧ୍ୟରେ ସମ୍ମିଳନ ରହିଅଛି । ଏପରି ଘଟିବା କେବଳ ଗୋଟାଏ ଅସ୍ଥାୟୀ ଅବସ୍ଥା (ଯହିଁରେ ଦେବାର୍ଥ କୌଣସି ସମୟରେ ଶକ୍ତିସାମ୍ୟ ରହି ପାରିଅଛି), କି ଗୋଟାଏ ବାହ୍ୟ ଦୃଶ୍ୟମାନ ଘଟଣା (ଯାହାତଳେ ଭୀଷଣ ଭେଦଭାବ ଲୁକାୟିତ ରହିଅଛି), କି ସାମ୍ୟଭାବ ସ୍ଥାପନ ଦିଗରେ ଏହା ଗୋଟିଏ ପ୍ରବଳ ଶକ୍ତି ତାହା ଜାଣି-ବାର ସମୟ ଉପସ୍ଥିତ ହୋଇନାହିଁ । ସେ ଯାହାହେଉ ନା କାହିଁକି, ହାଉଆଇର ବର୍ତ୍ତମାନ ପରିସ୍ଥିତି ସମଗ୍ର ଦେଶ ପକ୍ଷରେ ବଡ଼ ମୂଲ୍ୟବାନ । ଏହାଦ୍ୱାରା ଯେ ଆମେରିକା ମହାଦେଶରେ ପରିବର୍ତ୍ତନ ଆସିଯିବ, ତାହାନୁହେଁ; କିନ୍ତୁ କିଭଳି ପରିବର୍ତ୍ତନ ଘଟିପାରେ ତାହାର ଏକ ନିଦର୍ଶନ ହାଉଆଇରୁ ମିଳେ । ଏହାର କାରଣଗତ ଗୁରୁତ୍ୱ ଅଧିକ ନହେଲେ ମଧ୍ୟ, ଯେତେବେଳେ ଆମେରିକା ଭୀଷଣଭାବରେ 'ସମ୍ମିଳନ ବା ବହୁଳବାଦ' ସମସ୍ୟାର ସମ୍ମୁଖୀନ ହୋଇଅଛି, ସେତେବେଳେ ହାଉଆଇ ଗୋଟିଏ ମୂଲ୍ୟବାନ ସଙ୍କେତ ବୋଲି କୁହାଯାଇ ପାରେ । କୌଣସି ଗଣତାନ୍ତ୍ରିକ ସମାଜ କିପରି ବିଭିନ୍ନତାକୁ ପ୍ରଶ୍ରୟ ଦେବା, ଏପରିକି ଉତ୍ସାହିତ କରିବା ସଙ୍ଗେ ସଙ୍ଗେ ଏକତା ରକ୍ଷା କରିପାରେ ? ବହୁଳବାଦର ଧାରଣା କେତେକ ପ୍ରକାରର ପୃଥକକରଣକୁ ସମର୍ଥନ କରିପାରେ ? ଯଦି କରି ନପାରେ, ତେବେ ଜାତିକୁ ସମୃଦ୍ଧ କରିବା ପାଇଁ ଓ ଜନସାଧାରଣଙ୍କ ମତାମତକୁ ଉଦାର କରିବା ପାଇଁ ସ୍ୱତନ୍ତ୍ର ସଂସ୍କୃତି ଓ ସ୍ୱତନ୍ତ୍ର ଦୃଷ୍ଟିକୋଣକୁ ରକ୍ଷା କରାଯାଇପାରେ କି ? ପୁଣି ଯଦି ତାହା କରାଯାଇ ପାରେ ତେବେ ଯେଉଁ ପ୍ରକାରର ପୃଥକ୍‌କରଣ ଅଗଣତାନ୍ତ୍ରିକ ଭେଦଭାବର ସମର୍ଥନ କରେ ତାହାକୁ ନିରୋଧ କରାଯାଇ ପାରିବ କି ? [*]

[*] ଏସବୁ ପ୍ରଶ୍ନର ବିଶଦ ଆଲୋଚନା ନିମନ୍ତେ ନିମ୍ନଲିଖିତ ପୁସ୍ତକଗୁଡ଼ିକ ଦେଖ । ଡେଲସ ପତ୍ରିକାର ୧୯୬୧ ମସିହା ବସନ୍ତ ସଂଖ୍ୟାରେ ପ୍ରକାଶିତ 'ଏଥନିକ୍ ଗ୍ରୁପ୍‌ସ ଇନ ଆମେରିକାନ ଲାଇଫ ?; ୧୯୬୪ ମସିହାରେ ଅକ୍ସଫୋର୍ଡ଼ ୟୁନିଭରସିଟି ପ୍ରେସ ଦ୍ୱାରା ପ୍ରକାଶିତ ମିଲ୍‌ଟନ ଗର୍ଡନ୍‌ଙ୍କର ଏସିମିଲେସନ ଇନ ଆମେରିକାନ ଲାଇଫ' ।

ବାସ୍ତବରେ ଏହା ଗୋଟିଏ କଠିନ ଓ ଆପାତ ବିରୋଧୀ ପ୍ରଶ୍ନ । ଯଥେଚ୍ଛା ପୃଥକ୍‌କରଣ, ଭେଦମୂଳକ ପୃଥକ୍‌କରଣ, ଓ ନ୍ୟାୟସଙ୍ଗତ ବହୁଳବାଦ ମଧ୍ୟରେ ପ୍ରଭେଦ ସ୍ଥିର କରିବା ସବୁ ସମୟରେ ସହଜ ହୋଇ ନପାରେ । ଆମେ ଚାହୁଁ ପ୍ରତ୍ୟେକ ବ୍ୟକ୍ତି ନିଜର ସମ୍ପ୍ରଦାୟ ଯେପରି ଗଢ଼ନ୍ତୁ ; ଜାତୀୟ ଜୀବନ ପାଇଁ ସେହି ସମ୍ପ୍ରଦାୟର ଯାହାଦାନ, ତାହାର ସୁରକ୍ଷା ହେଉ ; ନିଜର ପିତାମାତାଙ୍କ ସହିତ ତାହାର ବନ୍ଧନ ଦୃଢ଼ ହେଉ । ମାତ୍ର ଏ ସବୁର ବିଭେଦ କରଣ ସହିତ ସମ୍ବନ୍ଧ ରହିପାରେ, ଯାହାକି ସମାଜକୁ ଗଭୀରଭାବରେ ଖଣ୍ଡବିଖଣ୍ଡ କରିପାରେ । ନ୍ୟାୟସଙ୍ଗତ ବହୁଳବାଦ ସହିତ ତୁଳନାରେ କେତେବେଳେ ବିଭେଦକ ସୀମାରେଖାକୁ ଅବାଞ୍ଛନୀୟ ପୃଥକ୍‌କରଣ କୁହାଯିବ ? ଏହି ପ୍ରଶ୍ନଟିର ଉତ୍ତର ପାଇବାରେ ସାହାଯ୍ୟ କରିବା ନିମନ୍ତେ ମୁଁ କେତୋଟି ମୌଳିକ ମାନର ବର୍ଣ୍ଣନା କରିବାକୁ ଯାଉଅଛି ।

ପ୍ରଥମତଃ ଯେତେବେଳେ ବିଭାଜକରେଖା ଲିଙ୍କ୍‌କାହିତ ଭାବରେ ଅନ୍ୟାନ୍ୟ ବିଭାଜକ ରେଖା ସହିତ ସମ୍ପୃକ୍ତ ହୋଇଥାଏ, ସେତେବେଳେ ଏହା ଅବାଞ୍ଛନୀୟ ପୃଥକ୍‌କରଣ ଏବଂ ଏହା ନ୍ୟାୟସଙ୍ଗତ ବହୁଳବାଦଠାରୁ ଭିନ୍ନ । ପୁରୁଷମାନଙ୍କ ନିମନ୍ତେ ଗୋଟିଏ କ୍ଳବର ଉଦାହରଣ ନିଆଯାଉ । ପ୍ରତ୍ୟେକ ଲୋକର ନିଜର ବନ୍ଧୁ ନିର୍ବାଚନ କରିବାର ଅଧିକାର ଅଛି ; ଏହି ଯୁକ୍ତିରେ କିଛି ଆପତ୍ତି ହୋଇ ନପାରେ । କିନ୍ତୁ ଅନେକ ସମୟରେ ପରୋକ୍ଷରେ ଓ ସମୟେ ସମୟେ ପ୍ରତ୍ୟକ୍ଷରେ ମଧ୍ୟ ରାଜନୀତିରେ ବା ଉଚ୍ଚସ୍ତରୀୟ କ୍ଷେତ୍ରରେ ଏହାର ଗୁରୁତ୍ୱ ଦେଖାଯାଏ । କ୍ଳବରୁ ବାହାରେ ରହିବାର ଅର୍ଥ କେବଳ ଗୋଟିଏ ବନ୍ଧୁ ଗୋଷ୍ଠୀର ବାହାରେ ରହିବା ନୁହେଁ ; ଗୁରୁତ୍ୱପୂର୍ଣ୍ଣ ଅର୍ଥନୈତିକ ଓ ରାଜନୈତିକ କାର୍ଯ୍ୟରେ ଭାଗ ନେବାରୁ ବଞ୍ଚିତ ହେବା ମଧ୍ୟ ଏହାର ଅନ୍ତର୍ଗତ । ବାସଗୃହର ପୃଥକ୍‌କରଣ ମଧ୍ୟ ସେହିପରି ଯୁକ୍ତିଦ୍ୱାରା ସମର୍ଥନ କରି ଯାଇପାରେ । କିନ୍ତୁ ସାଧାରଣତଃ, (ପ୍ରାୟ ସର୍ବତ୍ର କହିଲେ ଚଳେ) ବାସଗୃହର ପୃଥକ୍‌କରଣ ସହିତ ସ୍କୁଲରେ, ପାର୍କରେ ଓ ଚାକିରିରେ ପୃଥକ୍‌କରଣର ସମ୍ବନ୍ଧ ଅଛି । ସର୍ବୋପରି ବାସଗୃହର ପୃଥକ୍‌କରଣ ହେତୁ ଶିଶୁ ବାହାରର ସଂସ୍କୃତିଠାରୁ ଦୂରରେ ରହେ । ଏହି ସଂସ୍କୃତିର ଜଟିଳତାକୁ ଆୟତ୍ତ ନକଲେ ଶିଶୁ ତାର ଅବସ୍ଥାର ଉନ୍ନତି କରି ପାରିବ ନାହିଁ । ଆହୁରି ଲକ୍ଷ୍ୟ କରିବାକୁ ହେବ ଯେ ଅନେକ ସାମାଜିକ କ୍ଳବ ଓ ପ୍ରତିବେଶ ବିଭିନ୍ନ ସମ୍ପ୍ରଦାୟର ଲୋକଙ୍କୁ ଘେନି ଗଠିତ ହୋଇଥାଏ ; ସେମାନଙ୍କ ମଧ୍ୟରୁ କେତେକ ପରସ୍ପରକୁ ଜାଣି ନଥାନ୍ତି । କେବଳ ସମସ୍ୱଭାବ ଦୃଷ୍ଟିରୁ ବନ୍ଧୁ ନିର୍ବାଚନ କରାଯାଏ ନାହିଁ । ଉପଯୁକ୍ତ ଶ୍ରେଣୀର ଲୋକ ହୋଇଥିବାରୁ ନିର୍ବାଚନ କରି ଯାଇଥାଏ । ଛୋଟ ସହରରେ ମଧ୍ୟ ଜଣେ ଲୋକ ଗୋଟିଏ ପଡ଼ାରେ ବହୁବର୍ଷ ଧରି ରହିପାରେ ଅଥଚ ପଡ଼ାର ଅଧିକାଂଶ ଲୋକଙ୍କ

ସଙ୍ଗେ ତାର କ୍ୱଚିତ୍ ସମ୍ପର୍କ ଘଟିଥାଏ । ନିଜର ପ୍ରତି ବେଶୀମାନଙ୍କୁ ନିର୍ବାଚନ କରିବାର ସୁଯୋଗପ୍ରାପ୍ତି କାହାର ଭାଗ୍ୟରେ ଘଟିନଥାଏ ।

ମୁଁ ସେହି ପ୍ରଶ୍ନଟିକୁ ପୁଣି ଅନ୍ୟ ପ୍ରକାରେ ପ୍ରକାଶ କରୁଅଛି । କେତେବେଳେ ବିଭାଜକ ସୀମାରେଖା ଅବାଞ୍ଛନୀୟ ପୃଥକ୍‌କରଣରେ ପରିଣତ ହୁଏ ? କେତେବେଳେ ଏହାକୁ ନ୍ୟାୟସଙ୍ଗତ ବହୁଳବାଦ କୁହାଯାଇ ପାରିବ ?

ଯେତେବେଳେ ବିଭାଜନ ପ୍ରଣାଳୀବଦ୍ଧ (ବାଧ୍ୟବଦ୍ଧ) ବା ସମ୍ପୂର୍ଣ୍ଣ ସେତେବେଳେ ଏହା ଅବାଞ୍ଛନୀୟ ପୃଥକ୍-କରଣ । ଉଦାହରଣ ସ୍ୱରୂପ କୌଣସି ସହରର ଗୋଟିଏ ପଡ଼ାରେ କେତେଗୁଡ଼ିଏ ଚକଚକିଆ କୋଠାଘର ରହିପାରେ । କିନ୍ତୁ କୌଣସି ନିର୍ଦ୍ଦିଷ୍ଟ ପଡ଼ାରେ ପ୍ରକାଣ୍ଡ କୋଠାଘର କେତେ ଜଣ ସୀମାବଦ୍ଧ ହୋଇ ରହିବା ଭିନ୍ନକଥା । ହଟେଲ୍‌ଲ୍ୟୁର ମାଲିକହାଇଟସର କେତେକ ଅଂଶରେ ଜଣେ ଅଲକେ-ସୀୟ ପକ୍ଷରେ ଖଣ୍ଡିଏ ଘର କିଣିବା ଅତି କଠିନ ବା ଅସମ୍ଭବ ଏହାଦ୍ୱାରା ଏକ ନୀଚତା ପ୍ରକାଶ ପାଏ । କିନ୍ତୁ ଏହାର ଗୁରୁତ୍ୱ କୌଣସି ସହରରେ ସମ୍ପୂର୍ଣ୍ଣ ବିଚ୍ଛିନ୍ନତାଠାରୁ ପୃଥକ୍ । ଗଣତନ୍ତ୍ର ପଦ୍ଧତିରେ ବ୍ୟକ୍ତିଗତ ସ୍ୱାଧୀନତା ନାମରେ (ଏପରିକି ନୀଚ ହେବାର ସ୍ୱାଧୀନତା, ଯାହାଦ୍ୱାରା ମନୁଷ୍ୟର ଜୀବନ ଶ୍ରୀହୀନ ହୋଇ-ପାରେ ; କିନ୍ତୁ ବାଧ୍ୟବଦ୍ଧ ପୃଥକ୍ କରଣ, ଯାହା ସଂଖ୍ୟାଲଘୁ ସମ୍ପ୍ରଦାୟର ଲୋକଙ୍କୁ ରକ୍ଷା ପାଇବାର ବାଟ ସୁଦ୍ଧା ଦିଏନାହିଁ, ତାହା ସଂଖ୍ୟାଲଘୁଙ୍କ ପାଇଁ ତଥା ସମଗ୍ର ସମାଜ ପାଇଁ ଅନେକ କଠିନ ସମସ୍ୟାର ଉତ୍ପତ୍ତି କରେ ।

ସେହି ପ୍ରଶ୍ନର ଅନ୍ୟ ଏକ ଉତ୍ତର ହୋଇପାରେ । ଯେତେବେଳେ କେତେକ ଚରିତ୍ରଗତ ବିଶେଷତ୍ୱ ଥିବା ଲୋକଙ୍କୁ (ସମାଜର) ଭିତରେ ରଖିବା ପରିବର୍ତ୍ତେ ବାହାରେ ରଖାଯାଏ ଅର୍ଥାତ୍ ଯେତେବେଳେ ଉଦ୍ଦେଶ୍ୟ ହେଉଛି ବହିଷ୍କରଣ, ଅଙ୍ଗୀ-କରଣ ନୁହେଁ, ସେତେବେଳେ ଏହା ହେଉଛି ଅବାଞ୍ଛନୀୟ ପୃଥକ୍‌କରଣ । ଯେଉଁ-ମାନେ ଗୋଟିଏ ଶ୍ୱେତାଙ୍ଗପଡ଼ା (ପ୍ରତିବେଶ) ରଖିବାକୁ ଚାହାନ୍ତି, ସେମାନେ କହନ୍ତି ନାହିଁ ଯେ—ଆମେ କେବଳ ଶ୍ୱେତାଙ୍ଗ ଚାହୁଁ କିମ୍ବା ଯେଉଁ ଶ୍ୱେତାଙ୍ଗମାନେ ଏତିକି ଦୂର ଶିକ୍ଷା ପାଇଛନ୍ତି ଓ ଅମୁକ ଅର୍ଥନୈତିକ ସ୍ତରରେ ଅଛନ୍ତି ଆମେ କେବଳ ସେହି ମାନଙ୍କୁ ଚାହୁଁ । ସେମାନେ କହନ୍ତି—ଯେଉଁମାନେ ଶ୍ୱେତାଙ୍ଗ ନୁହନ୍ତି, ସେମାନେ ଆମ ଭିତରୁ ବାହାର ଯାଆନ୍ତୁ ।

ପରିଶେଷରେ କୌଣସି ସୁସ୍ପଷ୍ଟ ସଂସ୍କୃତିଗତ ଓ କର୍ମଗତ ପାର୍ଥକ୍ୟ ଉପରେ ପ୍ରତିଷ୍ଠିତ ହୋଇ ନଥିଲେ ପୃଥକକରଣ ଗ୍ରହଣୀୟ ନୁହେଁ । ଯେତେବେଳେ

ଇଞ୍ଜିନିଅରମାନଙ୍କୁ ଡାକ୍ତରମାନଙ୍କ ଆସୋସିଏସନରୁ ବାହାରେ ରଖାଯାଏ କିମ୍ବା ଅଣକାଥଲିକମାନଙ୍କୁ କାଥଲିକମାନଙ୍କ ନିଉମାନକ୍ଲବରୁ ବାହାରେ ରଖାଯାଏ, ସେତେବେଳେ କେହି ଆପତ୍ତି କରେନାହିଁ । କିନ୍ତୁ ସୁଯୋଗ୍ୟ ନିଗ୍ରୋମାନଙ୍କୁ ସଂସ୍କୃତି ଦୃଷ୍ଟିରୁ ବା କାର୍ଯ୍ୟ ଦୃଷ୍ଟିରୁ ଓ୍ୱାଶିଙ୍ଗଟନର ମେଟ୍ରୋପଲିଟାନ କ୍ଲବରୁ କିମ୍ବା କସ୍‌ମସ୍ କ୍ଲବରୁ ବାହାରେ ରଖିବାର କୌଣସି କାରଣ ଖୋଜି ପାଇବା କଠିନ ।

ଏହି ନୀତିଗୁଡ଼ିକ ସ୍ୱୟଂସମ୍ପୂର୍ଣ୍ଣ ନୁହନ୍ତି କି ପରସ୍ପର ନିରପେକ୍ଷ ନୁହଁନ୍ତି । କିନ୍ତୁ ସବୁ ନୀତି ମିଳି ନୈତିକ ସିଦ୍ଧାନ୍ତ ଗ୍ରହଣ କରିବାରେ ସହାୟକ ହେବେ । ବର୍ତ୍ତମାନ ନୈତିକ ସିଦ୍ଧାନ୍ତର ପ୍ରୟୋଜନ ସର୍ବାଧିକ । ବୋଧହୁଏ ଏହାକୁ ନିମ୍ନ-ଲିଖିତ ମତେ ବ୍ୟକ୍ତ କରି ଯାଇପାରେ ।

ଗଣତାନ୍ତ୍ରିକ ସମାଜରେ କେବଳ ସେତିକବେଳେ ପୃଥକ୍‌କରଣ ନ୍ୟାୟସଙ୍ଗତ ହୋଇପାରେ, ଯେତେବେଳେ ଏହା ଅନ୍ୟ ଉପରେ ଲଦି ଦିଆ ନଯାଇ ସ୍ୱାଧୀନ ଭାବରେ ଗ୍ରହଣ କରି ଯାଇଥାଏ ; ଯେତେବେଳେ ଗୋଟିଏ ସମ୍ପ୍ରଦାୟକୁ ସୁବିଧା ଦେଇ ଅନ୍ୟ କୌଣସି ସମ୍ପ୍ରଦାୟକୁ ସଂସ୍କୃତିର ସ୍ରୋତ ମଧ୍ୟରେ ପ୍ରବେଶ କରିବାକୁ ବାରଣ କରିଯାଇ ନଥାଏ ; ଯେତେବେଳେ କେତେକଙ୍କର ବ୍ୟକ୍ତିତ୍ୱକୁ ଏପରି ଦମନ କରି ଯାଇ ନଥାଏ ଯେ କେବଳ ସେମାନେ ନୁହଁନ୍ତି, ସମଗ୍ର ଜାତି ମଧ୍ୟ କ୍ଷତି ଗ୍ରସ୍ତ ହେବ ; ଯେତେବେଳେ ସମାଜର ମୂଲ୍ୟବୋଧ ଓ କୌଶଳ ଶିକ୍ଷା କରିବାର ସୁଯୋଗରୁ କାହାରିକୁ ବଞ୍ଚିତ କରି ନଯିବ ।

## ପୃଥକ୍‌କରଣର ଫଳ

ଏହି ନୀତି ଗୁଡ଼ିକ ବିଷୟରେ ଆମେରିକାର ଲୋକମାନଙ୍କ ମଧ୍ୟରେ ଯଥେଷ୍ଟ ମତୈକ୍ୟ ଥିଲେହେଁ ସମ୍ପୂର୍ଣ୍ଣ ମତୈକ୍ୟ ଅଛି ବୋଲି କୁହାଯାଇ ନପାରେ । ଏହି ନୀତିଗୁଡ଼ିକୁ କିପରି ବର୍ତ୍ତମାନ ପରିସ୍ଥିତିରେ ପ୍ରୟୋଗ କରି ଯାଇପାରେ ଏବଂ କରିଯିବା ଉଚିତ ସେ ବିଷୟମର ମତୈକ୍ୟ ଆହୁରି ଊଣା । କେତେକ ସୁସ୍ପଷ୍ଟ ଐତିହାସିକ କାରଣରୁ ହାଇଅାଇରେ ଏଗୁଡ଼ିକର ପ୍ରୟୋଗ କରିବା ଅପେକ୍ଷାକୃତ ସହଜ । ଆମେରିକାର ପ୍ରଧାନ ଭୂଭାଗରେ ସଂଖ୍ୟାଲଘୁ ସଂଖ୍ୟାଗୁରୁ ସମ୍ପର୍କ ବିଷୟକ ଏହି ନୀତି ଗୁଡ଼ିକୁ ପ୍ରୟୋଗ କରିବା ଅଧିକ କଠିନ । କାରଣ ଆମ୍ଭେମାନେ ଆମେରିକାରେ ବିଶେଷ ଭାବରେ ଗୋଷ୍ଠୀଗତ ଯଥେଷ୍ଟ ପୃଥକ୍‌କରଣ ଓ ଭେଦଭାବଜନିତ ସମସ୍ୟା ଗୁଡ଼ିକୁ ସମାଧାନ କରିବାରେ ଲାଗିଅଛୁ ।

ଆମେରିକାର କେତେକ ସଂପ୍ରଦାୟ ପ୍ରଧାନତଃ ବହୁଳବାଦ ଉପରେ ପ୍ରତିଷ୍ଠିତ । ଉଦାହରଣ ସ୍ୱରୂପ ଲେଟିନ୍‌ଆମେରିକୀୟ ଓ ଇହୁଦୀମାନଙ୍କ ପାଇଁ ଗୋଟିଏ ବୃହତ୍ତର ଜାତୀୟ ଐକ୍ୟ ମଧ୍ୟରେ ସେମାନଙ୍କର ସ୍ୱତନ୍ତ୍ର ସଂସ୍କୃତି ରକ୍ଷା କରିବା ଆମର ଲକ୍ଷ୍ୟ । ଆମେ ଏଠାରେ ଏ ପ୍ରଶ୍ନର ସୂଚନା ମାତ୍ର ଦେଉଅଛୁଁ । କିନ୍ତୁ ଆମ୍ଭମାନଙ୍କର ମନେ ରଖିବା ଉଚିତ ଯେ ବହୁଳବାଦୀ ସମାଜ ପାଇଁ ଯେଉଁ ଗଠନ ଦରକାର ତାହା ସମ୍ମିଳନ (ସ୍ୱାଙ୍ଗୀକରଣ) ପାଇଁ ଆବଶ୍ୟକ ଗଠନଠାରୁ ଭିନ୍ନ ହେବ । କିନ୍ତୁ ମାର୍କିନ ସମାଜରେ ନିଗ୍ରୋ ସଂପ୍ରଦାୟର ସ୍ଥାନ କିପରି ପୁନଃନିର୍ଦ୍ଧାରିତ ହେବ, ତାହାହିଁ ଆମର ପ୍ରଧାନ ଆଲୋଚ୍ୟ ବିଷୟ । ସ୍ୱୀକାର କରିବାକୁ ହେବ ଯେ କେତେକ ଲୋକ ପ୍ରଚଳିତ ପରିବର୍ତ୍ତନର ବିରୋଧ କରୁଅଛନ୍ତି ; କାରଣ ସେମାନେ ଜାଣନ୍ତି (?) ଯେ ଶ୍ୱେତାଙ୍ଗମାନେ ଉନ୍ନତତର ; କିମ୍ବା ସେମାନେ କେତେକ ସୁବିଧା ଧରି ରଖିବାକୁ ଇଚ୍ଛା କରନ୍ତି । ଅନ୍ୟ କେତେକ ବହୁଳବାଦ ସମସ୍ୟାରେ ବିବ୍ରତ ହୋଇ ପଡ଼ୁଅଛନ୍ତି । ହୁଏତ ସେମାନେ ବୁଝି ନପାରି ଏବଂ କୌଣସି ବିଦ୍ୱେଷ ନ ରଖି କହନ୍ତି, "ନିଗ୍ରୋମାନେ (କେତେକ ପରିମାଣରେ କୃଷ୍ଣକାୟ ଓ ଅନ୍ୟ ଦେଶାଗତ ବିଭିନ୍ନ ସଂପ୍ରଦାୟର ଲୋକେ ମଧ୍ୟ) ସେମାନଙ୍କର ନିଜ ସ୍କୁଲ, ନିଜ ବସତି, ନିଜ ଚର୍ଚ୍ଚ ଓ ନିଜ ଘୃକିଷ୍ଟ କ୍ଷେତ୍ରରେ ସ୍ୱତନ୍ତ୍ର ହୋଇ ରହୁ ନାହାନ୍ତି ?" ଅଳ୍ପ ସଂଖ୍ୟକ (କିନ୍ତୁ କ୍ରମବର୍ଦ୍ଧିଷ୍ଣୁ) ନିଗ୍ରୋ (ସେମାନଙ୍କ ସହିତ କେତେକ କୃଷ୍ଣକାୟ ମୁସଲମାନ ମଧ୍ୟ) ଏହାର ଉତ୍ତରରେ କହନ୍ତି, "ନିଶ୍ଚୟ, କାହିଁକି ନ ରହିବୁ ?" ସେମାନଙ୍କର ଉତ୍ତର ଦୃଢ଼ ଓ ଆକ୍ରମଣମୂଳକ ; କିନ୍ତୁ ବହୁଳବାଦର ପରିପୋଷକ ନୁହେଁ । ପ୍ରକୃତ ଉତ୍ତରଟି ନିଶ୍ଚୟ ବଡ଼ ଜଟିଳ ଏବଂ ଏହାର ଦୁଇଟି ଦିଗ ସ୍ପଷ୍ଟ ।

ପ୍ରଥମ କଥା, ସେମାନଙ୍କର ନିଜର ଯେତିକି ବା ଯାହା ଅଛି, ସେଥିରେ ସନ୍ତୁଷ୍ଟ ହୋଇ ରହିବା ପାଇଁ ଆମ ଦେଶ ସେମାନଙ୍କୁ ଛାଡ଼ିଦେଇ ନ ପାରେ, ସେପରି କଲେ ସେମାନେ ଚିରଦିନ ପାଇଁ ମାର୍କିନ ସମାଜରୁ ଅଲଗା ହୋଇ ରହିବେ । ଆଜି ଆମେ ଯେଉଁ ଭୀଷଣ ନିଗ୍ରୋ ସମସ୍ୟାର ସମ୍ମୁଖୀନ ହୋଇଅଛୁ, ତାହା ସେମାନଙ୍କୁ ପୃଥକ୍ ରଖିବା ହେତୁ ସୃଷ୍ଟି ହୋଇଅଛି । ଯେତେବେଳେ ସେମାନଙ୍କ ପୂର୍ବପୁରୁଷମାନେ ନିଜ ଜନ୍ମଭୂମିରୁ ବିଚ୍ଛିନ୍ନ ହୋଇ ଏଠାକୁ ଆସିଲେ, ସେମାନେ ନିଜର ସଂସ୍କୃତିକୁ ରକ୍ଷା କରିବାର ସମ୍ଭାବନା ରହିଲା ନାହିଁ ଓ ସେମାନଙ୍କ ପାରିବାରିକ ଆଦର୍ଶ ଭାଙ୍ଗି ପଡ଼ିଲା । ଏହାପରେ ଗୋଟାଏ ଅର୍ଦ୍ଧସାମନ୍ତବାଦ ଚାଲିଲା । ଏହାଦ୍ୱାରା ଦାସତ୍ୱ ପ୍ରଥାର ବିଭୀଷିକା ଚିରସ୍ଥାୟୀ ହେବାକୁ ବସିଲା । ଅଳ୍ପ କେତେବର୍ଷ ହେଲା ଦାସତ୍ୱ ପ୍ରଥାର ବଳ ଭାଙ୍ଗି ଯାଇଅଛି । ଆମେରିକାର ଗୁରୁତର କର୍ତ୍ତବ୍ୟମାନଙ୍କ ମଧ୍ୟରୁ ଗୋଟିଏ ହେଉଛି—ଅଧିକତର ସଂଖ୍ୟକ ନିଗ୍ରୋଙ୍କୁ ଓ ଅନ୍ୟାନ୍ୟ ସୁଯୋଗ ରହିତ ସଂପ୍ରଦାୟର ଲୋକଙ୍କୁ ଦେଶର ସମୃଦ୍ଧ ସଂସ୍କୃତିରେ ପୂର୍ଣ୍ଣ ଅଂଶ

ଗ୍ରହଣ କରିବାକୁ ହେବ । ତାହା ନ କରିବା ପର୍ଯ୍ୟନ୍ତ ସେମାନଙ୍କର ପୃଥକକରଣ-ଜନିତ କଷ୍ଟଦାୟକ ପରିଣାମ ଭୋଗ କରିବାକୁ ହେବ ; ଅପରାଧର ଆଧିକ୍ୟ, ଶିଳ୍ପର ଅବନତି, ଶିକ୍ଷାଗତ ଶୃଙ୍ଖଳା ଓ ମୂଲ୍ୟବୋଧର ଅଭାବ, ଓ ସର୍ବସାଧାରଣ ତଥା ବ୍ୟକ୍ତିଗତ ସମ୍ପତ୍ତିର ଅପବ୍ୟବହାର ଲାଗି ରହିଥିବ ।

ଯେତେଦିନଯାଏ ନିଗ୍ରୋମାନେ କୃଷିକ୍ଷେତ୍ରମାନଙ୍କରେ ଅସହାୟଭାବରେ ଅଲଗା ହୋଇ ରହିଥିଲେ ସେତେଦିନ ପର୍ଯ୍ୟନ୍ତ ଏହି କୁପରିଣାମଗୁଡ଼ିକ ଦବି ରହିଥିଲା, ଅନ୍ତତଃ ସମାଜ ଉପରେ ସେଗୁଡ଼ିକର ପ୍ରଭାବ ସେତେ ବେଶି ନଥିଲା । ଏହି ଘଟଣାକୁ କେତେକ ଲୋକ ଅନ୍ଧକୂପରେ ଆବଦ୍ଧ ହୋଇପରି କହନ୍ତି, "ସେ ଯୁଗ ବଡ଼ ଭଲଥିଲା ।" ଯଦି କେହି ନ୍ୟାୟକୁ ସମର୍ଥନ କରିବାକୁ ଭୟକରେ, ତେବେ ତା ପକ୍ଷରେ ସେ ଯୁଗ ଭଲଥିଲା ବୋଲି କହିବାକୁ ହେବ । କିନ୍ତୁ ଆମ୍ଭେମାନେ ଦେଖିଅଛୁଁ ଯେ ଅଧିକାଂଶ ଲୋକଙ୍କ ମତରେ, ବିବେକର ସମ୍ମୁଖୀନ ହେବାକୁ ପଡ଼ିଲେ ମଧ୍ୟ ନ୍ୟାୟ ନିମନ୍ତେ ସଂଘର୍ଷ କରିବା ବିଧେୟ । ଯାହାହେଉ ଏହା ହେଉଛି ତର୍କର ବିଷୟ । ନିଗ୍ରୋମାନେ ଆଉ କୃଷିକ୍ଷେତ୍ରରେ କାମ କରୁନାହାନ୍ତି । ଆଜି ଆମେରିକାବାସୀ ଯେଉଁ ସ୍ୱପ୍ନ ଦେଖୁଅଛନ୍ତି, ସେମାନେ ସେହି ସ୍ୱପ୍ନ ଦେଖୁଅଛନ୍ତି । ସେମାନେ ଆଉ ନିରୀହ ପୋଷା ଜୀବ ହୋଇ ନାହାନ୍ତି । ତାହା ହୋଇନଥିଲେ ଆମ୍ଭେମାନେ ଗୋଟିଏ ପ୍ରଗତିଶୀଳ, ଶିଳ୍ପପ୍ରଧାନ ନାଗରିକ ସମାଜ ଗଠନ କରି ପାରିନଥାନ୍ତୁ । ଆମକୁ ବର୍ତ୍ତମାନ ଦୁଇଟି ପନ୍ଥା ମଧ୍ୟରୁ ଗୋଟିଏ ବାଛି ନେବାକୁ ପଡ଼ିବ । କୃଷ୍ଣକାୟ ଆମେରିକାବାସୀଙ୍କର ସାମ୍ୟ ପାଇଁ ଚାଲିଥିବା ଆନ୍ଦୋଳନକୁ ପ୍ରତିହତ କରିବାର ବ୍ୟୟ ବହନ କରିବା, (ଏହି ବ୍ୟୟ ଯେ କେତେ ଅଧିକ, ତାହା ଆମେ ଅନୁଭବ କରିବାକୁ ଆରମ୍ଭ କଲୁଣି ) କିମ୍ବା ସେମାନଙ୍କୁ ଆମ ଭିତରେ ମିଶାଇ ନେବା ଉଦ୍ୟମକୁ ତ୍ୱରାନ୍ୱିତ କରିବା ପାଇଁ ଯଥାଶକ୍ତି ଚେଷ୍ଟିତ ହେବା, ଯେପରି କି ସେମାନେ ସର୍ବପ୍ରକାରେ ଆମ ଜାତୀୟ ଜୀବନର ପୂର୍ଣ୍ଣ ଆଶା ଓ ସୁଯୋଗର ଅଧିକାରୀ ହୋଇ ପାରିବେ ।

କାହିଁକି ସେମାନେ ନିଜର ସ୍କୁଲ, ନିଜର ଚର୍ଚ୍ଚ ଇତ୍ୟାଦିରେ ସନ୍ତୁଷ୍ଟ ହୋଇ ରହି ନାହାନ୍ତି ?"—ଏହି ପ୍ରଶ୍ନର ଉତ୍ତରରେ ମୁଁ ଯାହା କହୁଅଛି ତାହାର ଦ୍ୱିତୀୟ ଦିଗଟି ସହିତ ପ୍ରଥମ ବିକଳ୍ପର ନିକଟ ସମ୍ପର୍କ ଅଛି । ନିଗ୍ରୋମାନଙ୍କର କୌଣସି ଗୋଟାଏ ସୁସ୍ପଷ୍ଟ ପରମ୍ପରା ନାହିଁ କି ସଂସ୍କୃତି ନାହିଁ । 'ସମ୍ପ୍ରଦାୟ' କହିଲେ ଯାହା ବୁଝାଯାଏ ଠିକ୍ ସେହି ଅର୍ଥରେ ସେମାନେ ଗୋଟାଏ ସମ୍ପ୍ରଦାୟ ନୁହନ୍ତି । ଦାସତ୍ୱର ଅଭିଜ୍ଞତା ସେମାନଙ୍କର ପରମ୍ପରାଗତ ଗୁଣଗୁଡ଼ିକୁ ଧ୍ୱଂସ କରି ପକାଇଥିଲା ଅଥଚ ନୂତନ ପରମ୍ପରା ସାମାନ୍ୟ ବିନ୍ଦୁମାତ୍ର ସେମାନଙ୍କୁ ଦେଇଥିଲା । ଆମେରିକାର

ପ୍ରାଚୀନ ଅଧିବାସୀ ହିସାବରେ ସେମାନେ ହୁଏତ ଅନ୍ୟମାନଙ୍କ ସହିତ ଆମର ସଂସ୍କୃତିକୁ ପୂର୍ଣ୍ଣରୂପେ ଗ୍ରହଣ କରିବେ ଅଥବା ଗୋଟାଏ ନୂଆ ସଂସ୍କୃତି ସୃଷ୍ଟି କରିବେ । କିନ୍ତୁ ଆମେ ନିଶ୍ଚିତରୂପେ ଜାଣୁ ଯେ ଗୋଟାଏ ଦରିଦ୍ର, ନୈରାଶ୍ୟମୟ, ବିଚ୍ଛିନ୍ନ ଜନତା କେବଳ ଗୋଟାଏ ନୀଚ ସଂସ୍କୃତି ସୃଷ୍ଟି କରିପାରେ । ପୃଥକ ଅବସ୍ଥାନ ଓ ବିଦ୍ୱେଷ ଉପରେ ଏହି ସଂସ୍କୃତି ଗଠିତ ହେଉଥିବାରୁ ଏହା ପ୍ରତିଷ୍ଠିତ ଜୀବନଯାତ୍ରା ପ୍ରଣାଳୀ ଉପରେ ଆକ୍ରମଣ କରିବାର ସମ୍ଭାବନା ଅଛି । ଏହା କଦାପି ଗଠନମୂଳକ ହୋଇ ନପାରେ । ଏହା ଏକ ବିରୋଧମୂଳକ ସଂସ୍କୃତି ହେବ[୭] । ଏହା ପୁରାତନ ମୂଲ୍ୟବୋଧକୁ ନଷ୍ଟ କରିଦେବ, ମାତ୍ର ତାହା ସ୍ଥାନରେ କୌଣସି ନୂତନ ମୂଲ୍ୟବୋଧ ଦେଇ ପାରିବ ନାହିଁ । ତେଣୁ ଆମର କଠୋର କର୍ତ୍ତବ୍ୟ ହେଉଛି ଯେ ଆମେ ନିଗ୍ରୋ ତଥା ସୁଯୋଗରହିତ ସଂଖ୍ୟାଲଘୁ ସଂପ୍ରଦାୟର ଲୋକମାନଙ୍କୁ ମାର୍କିନ ଜୀବନରେ ଆମସଙ୍ଗେ ପୂର୍ଣ୍ଣ ଅଂଶ ଗ୍ରହଣ କରିବା ପାଇଁ ସୁଯୋଗ ଦେବା ଓ ଏଥିପାଇଁ ଦୃଢ଼ ଦାବି କରିବା ।

ଏହି କର୍ତ୍ତବ୍ୟସାଧନରେ ଆମେ ଯେତିକି ପଶ୍ଚାତ୍‌ପଦ ହେବା ସେତିକି ପରିମାଣରେ କୃଷ୍ଣକାୟ-ମସ୍‌ଲିମ-ଆନ୍ଦୋଳନ ଭଳି ଆନ୍ଦୋଳନମାନଙ୍କର ଶକ୍ତି ବୃଦ୍ଧି ପାଇବ । କୃଷ୍ଣକାୟ ମସ୍‌ଲିମ ଆନ୍ଦୋଳନର ସମ୍ବାଦ ଆଜିକାଲି ସମ୍ବାଦପତ୍ର-ମାନଙ୍କରେ ବିଶେଷଭାବେ ଦେଖାଯାଏ । ପ୍ରାୟ ତିରିଶ ବର୍ଷ ପୂର୍ବେ ଏହି ଆନ୍ଦୋଳନର ଜନ୍ମ । ଏଥି ପୂର୍ବରୁ ମାର୍କସ ଗାର୍ଭେଙ୍କ ଦ୍ୱାରା ପରିଚାଳିତ ପ୍ରତିବାଦ ସଦୃଶ କେତେକ ଘଟନା ଘଟିଥିଲା । କିନ୍ତୁ ଏହାର ବର୍ତ୍ତମାନ ଶକ୍ତିର ପରିଚୟ ପାଇବାକୁ ହେଲେ ସମସାମୟିକ ଘଟନା ପ୍ରତି ଦୃଷ୍ଟି ପକାଇବାକୁ ହେବ । 'ସମସ୍ତଙ୍କ ପାଇଁ ସମାନ ସୁଯୋଗ' ଏହାହିଁ ହେଉଛି ଆମେରିକାବାସୀର ସ୍ୱପ୍ନ । ଅଧିକାଂଶ ନିଗ୍ରୋ ଏହି ସ୍ୱପ୍ନ ସହିତ ପରିଚିତ ହେଲେଣି । ମାତ୍ର ସେମାନଙ୍କ ମଧ୍ୟରୁ ଅନେକେ ନୈରାଶ୍ୟଜର୍ଜରିତ । ସେମାନଙ୍କର ନିଜ ଚର୍ଚ୍ଚ ଓ ଖ୍ରୀଷ୍ଟିଆନ ଚର୍ଚ୍ଚଦ୍ୱାରା ସେମାନଙ୍କର ମୋହନିଦ୍ରା ଭାଙ୍ଗି ଯାଇଛି । ଆଫ୍ରିକାର ରାଜ୍ୟମାନଙ୍କର ଅଭ୍ୟୁଦୟ ସେମାନଙ୍କ ମନରେ ଗୋଟାଏ ଉତ୍ତେଜନା ଆଣିଅଛି । ଆମେରିକାର ନିଗ୍ରୋମାନଙ୍କ ସହିତ ଆଫ୍ରିକାର ନିଗ୍ରୋମାନଙ୍କର କିଛି ପ୍ରତ୍ୟକ୍ଷ ସମ୍ପର୍କ ଅଛିବୋଲି ଯେ ଏପରି ଘଟିଛି, ତାହାନୁହେଁ । ପ୍ରକୃତ କାରଣ ହେଉଛି ଯେ ଆଫ୍ରିକାର କୃଷ୍ଣକାୟ ଲୋକଙ୍କ

---

[୭] 'ଆମେରିକାନ ସୋସିଓଲୋଜିକ୍ୟାଲ ରିଭିଉ' ପତ୍ରିକାର ୧୯୬୦ ମସିହା ଅକ୍‌ଟୋବର ସଂଖ୍ୟାର ୬୨୫-୬୩୫ ପୃଷ୍ଠାରେ ପ୍ରକାଶିତ ଜେ. ମିଲଟନ ୟୁଙ୍ଗରଙ୍କର 'କଣ୍ଟ୍ରାକଲ୍‌ଚର ଏଣ୍ଡ ସବ୍‌ କଲଚର' ପ୍ରବନ୍ଧ ଦେଖ ।

ନେଜେ ନୂତନ ଭାବରେ ନୂତନ ଅଭ୍ୟୁଥାନ ଦେଖା ଦେଇଅଛି । ଗୋଟାଏ ପଶ୍ଚାତ୍, ଅଶିକ୍ଷିତ ସଂପ୍ରଦାୟ ପକ୍ଷରେ ସଂଗ୍ରାମ କରିବା ପାଇଁ କୌଣସି ଅସ୍ତ୍ର ପ୍ରାୟ ନଥାଏ । ତେଣୁ ଧର୍ମ-ଆନ୍ଦୋଳନ ଐହିକ ସୁଖ ସଙ୍ଗେ ପାରତ୍ରିକ ମୁକ୍ତିର ଆଶା ଦେଲେ ତାହା ସେମାନଙ୍କୁ ଆକର୍ଷଣ କରିବା ସ୍ୱାଭାବିକ ।

ଲିଙ୍କନ ଓ ଏସିନ ଉଦମଙ୍କ ଦ୍ୱାରା ଲିଖିତ ପୁସ୍ତକମାନଙ୍କ ଉପରେ ନିର୍ଭର କରି ମୁଁ ଆମେରିକାର ନିଗ୍ରୋମାନଙ୍କ ମଧ୍ୟରେ ଥିବା କୃଷ୍ଣକାୟ-ମସ୍‌ଲିମ-ଶାଖାର କେତେକ ବିବରଣୀ ଦେଉଅଛି [୭] । କୌଣସି ଆନ୍ଦୋଳନର ଆଲୋଚନା କରିବାକୁ ଗଲେବେଳେ ତାହାର ଗୁରୁତ୍ୱକୁ ବାହୁଲ୍ୟ କରିବାର ଆଶଙ୍କା ଥାଏ । ତେଣୁ ମୁଁ ସ୍ପଷ୍ଟଭାବରେ କହି ରଖେଁ ଯେ ବର୍ତ୍ତମାନ ମାର୍ଟିନ ଲୁଥର କିଙ୍ଗଙ୍କର ଅନ୍ୟାନ୍ୟ ଖ୍ରୀଷ୍ଟିଆନ ଚର୍ଚ୍ଚର ପ୍ରଭାବ, ଶ୍ରମିକ ଆନ୍ଦୋଳନ ପ୍ରଭୃତିଠାରୁ ଏହି କୃଷ୍ଣକାୟ-ମସ୍‌ଲିମ-ମାନଙ୍କର ଗୁରୁତ୍ୱ କମ୍ । ତଥାପି ଆମେରିକାର ଗୋଷ୍ଠୀଗତ ସମ୍ବନ୍ଧରେ କେତେକ ପ୍ରଚ୍ଛନ୍ନ ପରିଣାମ ଏହି ମସ୍‌ଲିମମାନଙ୍କଦ୍ୱାରା ସୁସ୍ପଷ୍ଟ ଭାବରେ ପ୍ରକଟିତ । ଏହି ପରିଣାମ ଗୁଡ଼ିକୁ ଉତ୍ତମରୂପେ ବୁଝିବାକୁ ଚେଷ୍ଟା କରିବା ଆମ୍ଭମାନଙ୍କର କର୍ତ୍ତବ୍ୟ ।

ପ୍ରଫେସର ଲିଙ୍କନଙ୍କ ମତରେ କୃଷ୍ଣକାୟ ମସଲିମ ଶାଖା ଗୋଟିଏ ସମ୍ପୂର୍ଣ୍ଣ ରୂପେ ଉତ୍ସର୍ଗୀକୃତ, କଠୋର ଶୃଙ୍ଖଳାବଦ୍ଧ, ଲକ୍ଷାଧିକ ନିଗ୍ରୋଙ୍କର ସମଷ୍ଟି । ସେମାନଙ୍କର ବିଶ୍ୱାସ ଯେ ସେମାନେହିଁ ପରମ ସତ୍ୟ ଲାଭ କରିଅଛନ୍ତି ଏବଂ ଏହି ସତ୍ୟପାଇଁ ସେମାନେ ଯେ କୌଣସି ତ୍ୟାଗ କରିବାକୁ ପ୍ରସ୍ତୁତ [୮] । ଏହି ପରମ ସତ୍ୟଟି ହେଉଛି—ଶ୍ୱେତାଙ୍ଗମାନଙ୍କର ସଭ୍ୟତା ଅଧୋଗତି ଲାଭ କରୁଅଛି ଓ ସେମାନଙ୍କ ନୈତିକତା ଅନ୍ତର୍ହିତ । କୃଷ୍ଣକାୟ ଲୋକେ ଯେ ପୃଥିବୀକୁ ଶାସନ କରିବେ ଏହି ବିଧିନିର୍ଦ୍ଦିଷ୍ଟ । କୃଷ୍ଣକାୟ ମସ୍‌ଲିମ ହେଉଛନ୍ତି ଜନ୍ମରୁ ମସ୍‌ଲିମ, ଏହା ମନେ ରଖିବା ଉଚିତ । ଶ୍ୱେତାଙ୍ଗ ତାର କାନ୍ଧରେ ବସିଛି ; ତାକୁ ଫିଙ୍ଗି ଦେବାକୁ ହେବ (ମୂର୍ଖ ବ୍ୟକ୍ତି ସହିତ ସମ୍ମିଳନର ଆବଶ୍ୟକତା କଅଣ ?) । ଗୋଟାଏ ନୂତନ ଜୀବନ ଗଠନ କରିବାକୁ ହେବ । ସେପରି କୌଣସି ଗଣ୍ଡଗୋଳ ଘଟି ନଥିଲେହେଁ ଏହି ଧର୍ମ-ଶାଖାର ଉପଦେଶାବଳୀ ଆକ୍ରମଣ ମୂଳକ । ମାର୍କିନ ଯୁକ୍ତରାଷ୍ଟ୍ରରେ ଅନ୍ୟ କୌଣସି ଆନ୍ଦୋଳନ ଏହି କୃଷ୍ଣକାୟ ମସ୍‌ଲିମ ଆନ୍ଦୋଳନ ଭଳି ଶ୍ୱେତାଙ୍ଗ ବିରୋଧୀ ନୁହେଁ ।

---

[୭] ବୋଷ୍ଟନର ବିକନ୍ ପ୍ରେସରୁ ୧୯୬୧ ମସିହାରେ ପ୍ରକାଶିତ ଏରିକ୍ ଲିଙ୍କନଙ୍କର 'ଦ ବ୍ଲାକ ମସ୍‌ଲିମସ୍ ଅଫ୍ ଆମେରିକା' ଓ ଚିକାଗୋ ଇଉନିଭରସିଟି ପ୍ରେସରୁ ପ୍ରକାଶିତ ଏସିନ୍ ଉଦମଙ୍କର 'ବ୍ଲାକ ନାସନାଲିସମ୍ ଏ ସାର୍ଚ୍ଚ ଫର ଆଇଡେଣ୍ଟିଟି ଇନ୍ ଆମେରିକା' ପୁସ୍ତକମାନ ଦେଖ ।

[୮] ଲିଙ୍କନଙ୍କର 'ଦ ବ୍ଲାକ ମୁସ୍‌ଲିମସ୍ ଇନ୍ ଆମେରିକା ପୁସ୍ତକର ୧୭ପୃଷ୍ଠା ଦେଖ ।

ଏହି ଧର୍ମରେ ରବିବାର ପବିତ୍ର ଦିବସ ରୂପେ ଗଣ୍ୟ ହୁଏନାହିଁ । ପ୍ରତ୍ୟେକ ମସ୍‌ଲିମ ପ୍ରତି ସପ୍ତାହରେ ଅନ୍ତତଃ ଦୁଇଦିନ ପ୍ରାର୍ଥନାରେ ଯୋଗଦିଏ ଓ ଉଦାର-ଭାବରେ ଦାନକରେ । ସମୟେ ସମୟେ ଏହି ଦାନର ପରିମାଣ ତାର ବାର୍ଷିକ ଆୟର ଏକଚତୁର୍ଥାଂଶ ହୋଇଥାଏ । ସେମାନେ ପରିବାର ମଧ୍ୟରେ ଭଦ୍ରଭାବରେ ବାସ କରନ୍ତି ; ଜୁଆ ଖେଳନ୍ତି ନାହିଁ ; ମଦ୍ୟ କିମ୍ବା ଧୂମ୍ରପାନ କରନ୍ତି ନାହିଁ । କାହାରିଠାରୁ ଧାର କରନ୍ତି ନାହିଁ ; ଅତି ଭୋଜନ କରନ୍ତି ନାହିଁ । ସଂଯତ ଜୀବନ ଯାପନ କରୁଥିବାରୁ ସେମାନଙ୍କର ଜୀବନ ଧାରଣର ମାନ ଉଚ୍ଚ ଓ ନିଜ ଧର୍ମମତର ପ୍ରଚାର ଲାଗି ସେମାନଙ୍କର ଅର୍ଥର ଅଭାବ ଘଟେନାହିଁ । ଏମାନଙ୍କ ମଧ୍ୟରୁ ଅନେକେ ନିରକ୍ଷର ଗ୍ରାମାଗତ ସହରବାସୀ ; ଅଧିକାଂଶ ହେଉଛନ୍ତି ଶ୍ରମିକଯୁବକ । କେତେକେ ପ୍ରଥମେ ସହରର ବନ୍ଦୀଶାଳାକୁ ଆସିଥାନ୍ତି । ବଡ଼ବଡ଼ ସହର ମାନଙ୍କରେ ସେମାନେ ଗୋଟିଏ ଗୋଟିଏ ନିର୍ଦ୍ଦିଷ୍ଟ ଅଞ୍ଚଳରେ ରହିଥାନ୍ତି । ତାହାରି ଭିତରେ ସେମାନଙ୍କର ଧର୍ମମନ୍ଦିର ଓ ବ୍ୟବସାୟକ୍ଷେତ୍ର । ଏହି ଅଞ୍ଚଳମାନଙ୍କପ୍ରତି ଖ୍ରୀଷ୍ଟିଆନ ଚର୍ଚ୍ଚର ଦୃଷ୍ଟି ଥାଏ । ଏହି ଧର୍ମାବଲମ୍ବିମାନେ ଖ୍ରୀଷ୍ଟିଆନ ଧର୍ମର ବିରୋଧୀ । ସେମାନଙ୍କ ମତରେ ଖ୍ରୀଷ୍ଟିଆନ ଧର୍ମ ହେଉଛି ଶ୍ୱେତାଙ୍ଗମାନଙ୍କର ଧର୍ମ । ମାତ୍ର ଏହି ଧର୍ମର ପ୍ରାଚୀନ ଖ୍ରୀଷ୍ଟିଆନ ଧର୍ମ ସଙ୍ଗେ ଅନେକ ସାଦୃଶ୍ୟ ଅଛି । ଏଥିରେ ପୁନର୍ଜନ୍ମ ଓ ନୂତନ ଜୀବନରେ ବିଶ୍ୱାସ ଅଛି । ମୁସଲମାନମାନଙ୍କ ପ୍ରତୀକବାଦ ସଙ୍ଗେ ଗୋଟିଏ ନୂତନ ନାମ, ଗୋଟିଏ ନୂତନ ବାସଭୂମି ଓ ଗୋଟିଏ ନୂତନ ଧର୍ମ ଗ୍ରହଣ କରି ଏହି ସୁଯୋଗହୀନ, ପ୍ରଗତିଶୂନ୍ୟ ଲୋକେ ଆଶା ଓ ବିଶ୍ୱାସ ପାଇ ପାରୁ ଅଛନ୍ତି ।

ମାତ୍ର ଏହି ଆନ୍ଦୋଳନର ଗୋଟିଏ ଭୟାବହ ଦିଗ ଅଛି । ଏଥିରେ ହିଂସା ଓ ବିଦ୍ୱେଷ ପୂରି ରହିଅଛି । ଏହାର ନୀତି ସ୍ପଷ୍ଟତଃ ଓ ବାହ୍ୟତଃ ବିଭେଦମୂଳକ । କିନ୍ତୁ ଅଜ୍ଞାତସାରରେ ଏହା ଆଶାର ସଞ୍ଚାର କରୁଅଛି । ଏହି ଧର୍ମର ଆଦର୍ଶଗତ ନୀତି ଓ ବିଧିବିଧାନ ପାରିବାରିକ ଜୀବନକୁ ଦୃଢ଼ କରୁଅଛି । ଏହା ମିତବ୍ୟୟିତା, ସାଧୁତା ଓ କାର୍ଯ୍ୟରେ ଶୃଙ୍ଖଳା ଶିକ୍ଷାଦିଏ । ଏହି ଧର୍ମର ପ୍ରଭାବ କେତେ କଠୋର ହୃଦୟ ଅପରାଧୀ ଓ ଅପରାଧ ପ୍ରବଣ ଯୁବକଙ୍କ ହୃଦୟକୁ ସ୍ପର୍ଶ କରି ପାରିଅଛି । ସେମାନଙ୍କୁ ଅନ୍ୟ କୌଣସି ଉପାୟରେ ପରିବର୍ତ୍ତନ କରିପାରିବା ସମ୍ଭବପର ହୋଇ ପାରି ନଥିଲା । ଏଥିରେ ବିଦ୍ୱେଷ ପ୍ରକାଶ କରିବାର କେତେକ ପନ୍ଥା ଅଛି । ନୋଚେତ୍ ଏହା ଭୀଷଣ ଭାବରେ ଧ୍ୱଂସଶୀଳ ହୋଇଥାନ୍ତା । ଏହାର ସମାଲୋଚନା କରିବା ପୂର୍ବରୁ ଏହା କେଉଁ କେଉଁ ପ୍ରତିକ୍ରିୟାର ସ୍ଥାନ ଅଧିକାର କରିଅଛି, ତାହା ଜାଣିବା ଉଚିତ । ଯେଉଁମାନେ ଏହି ଆନ୍ଦୋଳନର ସମର୍ଥନ କରୁଅଛନ୍ତି, ସେମାନେ ତାହା କରୁ ନଥିଲେ ସୁବିନ୍ୟସ୍ତ ରାଜନୈତିକ କାର୍ଯ୍ୟରେ ଲିପ୍ତ ହୋଇ ଥାଆନ୍ତେ କି ? ସୁଶୃଙ୍ଖଳଭାବରେ ବସିରହିବା ଆନ୍ଦୋଳନରେ ଯୋଗ ଦେଇ

ଥାଆନ୍ତେ କି ? ସମାଜରେ ଏହି କାର୍ଯ୍ୟ କରି ଥାଆନ୍ତେ କି ? ଯେଉଁ ନିମ୍ନ ଶ୍ରେଣୀର ମାର୍କିନ ନିଗ୍ରୋମାନେ ଏହି ଆନ୍ଦୋଳନ ପଛରେ ଅଛନ୍ତି ସେମାନେ ଏଥିରେ ଯୋଗ-ଦେଇ ନଥିଲେ ଏମାନେ ନୀତିହୀନତା ଓ ଅପରାଧରେ ଲିପ୍ତ ହୋଇ ଥାଆନ୍ତେ କି ? ବର୍ତ୍ତମାନ ମନେହୁଏ ଯେ ଏମାନେ ନୀତିହୀନ ଅପରାଧୀ ହୋଇ ଯାଇଥାଆନ୍ତେ ।

ଏହି ଦୃଷ୍ଟିରୁ ବିଚାର କଲେ କୃଷ୍ଣକାୟ ମସ୍‌ଲିମମାନେ ଯେତେ ଭୟାନକ ବୋଲି ଶୁଣାଯାଏ, ବାସ୍ତବରେ ସେତେ ଭୟାନକ ନୁହନ୍ତି । କିନ୍ତୁ ପରିଣାମରେ ଏହି ଆନ୍ଦୋଳନର ଅନଭିପ୍ରେତ ଓ ଶୁଭଙ୍କର ପୂର୍ବୋଲ୍ଲିଖିତ ଫଳଗୁଡ଼ିକ ରହି ପାରିବ କି ? ଏହି ପରୀକ୍ଷଲବ୍ଧ ଶୁଭ ଫଳ ସଙ୍ଗେ ଅଶୁଭ ଫଳର ମଧ୍ୟ (ଯଥା— ବିଦ୍ୱେଷର ବୃଦ୍ଧି, ହିଂସାପ୍ରବଣତା, ପୃଥକକରଣବାଦୀଙ୍କର ଚରମ ନୀତିର ପୁନରୁଦ୍ରେକ ପ୍ରଭୃତିର) ବିଚାର କରିବାକୁ ହେବ । ପୃଥକକରଣବାଦୀମାନେ ଏହି ମସ୍‌ଲିମ ଆନ୍ଦୋଳନକୁ ସେମାନଙ୍କର ବିଶ୍ୱାସ ଓ କାର୍ଯ୍ୟରେ ଯଥାର୍ଥ ନିମନ୍ତେ ଉପସ୍ଥାପିତ କରନ୍ତି । ଆନ୍ଦୋଳନର ଜଣେ ପ୍ରଭାବଶାଳୀ ନେତା ମାଲକମ୍ ଏକ୍‌ସଙ୍କୁ ଅସ୍ଥାୟୀଭାବେ ଅନ୍ତର କରି ଦେବାଦ୍ୱାରା ସମ୍ପ୍ରଦାୟଟି ବର୍ତ୍ତମାନ ବିଭକ୍ତ ହୋଇ ଯାଇଅଛି । ଶାଖା ସମ୍ପ୍ରଦାୟମାନଙ୍କର ଇତିହାସରେ ଏପରି ସାଧାରଣତଃ ଘଟିଥାଏ । ମାଲକମ ଏକ୍‌ସ ଗୋଟିଏ କୃଷ୍ଣକାୟ ଜାତୀୟଦଳ ପ୍ରତିଷ୍ଠାର କଳ୍ପନା କରିଥିଲେ । କିନ୍ତୁ ଅଳ୍ପକାଳ ପୂର୍ବେ ସେ ତାଙ୍କର ଜାତି ଗତ ମତ ପରିତ୍ୟାଗ କରି ପ୍ରାଚୀନ ମସ୍‌ଲିମ ଧର୍ମର ସାର୍ବଜନୀନ ଭାବରେ ସମର୍ଥନ ଜଣାଇ ଅଛନ୍ତି ।

ଏହାର ସମ୍ଭାବ୍ୟ ସୁଫଳଗୁଡ଼ିକ ପ୍ରଭାବ ବିସ୍ତାର କରିବ କି ଏହାର ଭେଦମୂଳକ ପ୍ରଭାବରେ ବୃଦ୍ଧି ହେବ ତାହା ଆନ୍ଦୋଳନର ଅନ୍ତର୍ନିହିତ ଗୁଣ ଅପେକ୍ଷା ମାର୍କିନ ସମାଜରେ ସମ୍ମିଳନର ପ୍ରଣାଳୀ ଉପରେ ଅଧିକ ନିର୍ଭର କରେ । କୃଷ୍ଣକାୟ ମସ୍‌ଲିମ-ମାନଙ୍କର ବର୍ତ୍ତମାନ ସଂଖ୍ୟା ହେଉଛି ଏକଲକ୍ଷ । କିନ୍ତୁ ବହୁ ଲକ୍ଷ ଲୋକ ଏହାକୁ ପର୍ଯ୍ୟବେକ୍ଷଣ କରୁ ଅଛନ୍ତି ; ଏହାର ଫଳ ଜାଣିବାକୁ ଅପେକ୍ଷା କରି ରହି ଅଛନ୍ତି । ଏଥିପୂର୍ବରୁ କେତେ ଆନ୍ଦୋଳନ ଉଭେଇ ଯାଇଅଛି । ଏହି ଆନ୍ଦୋଳନ ସେହିପରି ଉଭେଇ ଯିବ କି ଗୋଟିଏ ଗଠନମୂଳକ ଶକ୍ତିରେ ପରିଣତ ହେବ, ତାହା ଗୋଟିଏ କଥା ଉପରେ ନିର୍ଭର କରେ—ଏହି ଆନ୍ଦୋଳନର ମୂଳରେ ଯେଉଁ ହୃଦୟ ବିଦାରକ ନୈରାଶ୍ୟ ଅଛି, ତାହାକୁ ଲଘୁ କରିବାରେ ଆମେରିକାର କୃତିତ୍ୱ ଉପରେ ।

ଭେଦଭାବର ପରିଣତି କଅଣ ହୋଇପାରେ ମସ୍‌ଲିମମାନେ ତାହାର ଗୋଟିଏ ଉଦାହରଣ ବୋଲି ମନେ କରିବା ବିଜ୍ଞତାର କାର୍ଯ୍ୟହେବ । ଏ ପ୍ରକାର

ଆନ୍ଦୋଳନକୁ ଦମନ କରିବା ଆମର ଲକ୍ଷ୍ୟ ହେବା ଉଚିତ ନୁହେଁ ବରଂ ଯେଉଁ ଅବସ୍ଥାରୁ ଏ ପ୍ରକାର ଆନ୍ଦୋଳନର ଉତ୍ପତ୍ତି, ସେହି ଅବସ୍ଥାର ପରିବର୍ତ୍ତନ କରିବା ଉଚିତ ।

ଏହାଛଡ଼ା ଆହୁରି ଅନେକ ଆନ୍ଦୋଳନ ଅଛି । କିନ୍ତୁ ସେ ସବୁ ସମ୍ପୂର୍ଣ୍ଣ ରୂପେ ଭେଦଭାବର ପରିଣାମ ନୁହେଁ । ଏହି ଆନ୍ଦୋଳନମାନଙ୍କ ବିଷୟ କହିଲା-ବେଳେ ମୋର ଗୋଟିଏ ପୂର୍ବ ଉକ୍ତିର ଟିକିଏ ସଂଶୋଧନ ଆବଶ୍ୟକ । ମୁଁ ପୂର୍ବରୁ କହିଅଛି ଯେ "ନିଗ୍ରୋମାନଙ୍କର ସ୍ୱତନ୍ତ୍ର ପରମ୍ପରା ଓ ସଂସ୍କୃତି ନାହିଁ ।" ଏହି ଉକ୍ତିରୁ କେହି ଜୋର ଦେଇ କହିପାରେ ଯେ ନିଗ୍ରୋମାନେ ପ୍ରାଚୀନ ଆମେରିକାବାସୀ ; ସେମାନଙ୍କର ଆଫ୍ରିକାବାସୀ ପୂର୍ବ ପୁରୁଷମାନଙ୍କର ପରମ୍ପରାର କେବଳ ମୂଳସୂତ୍ର ନିଗ୍ରୋମାନଙ୍କଠାରେ ଦେଖାଯାଏ ; ସେମାନେ ଆମେରିକାର ସାଧାରଣ ସଂସ୍କୃତିରେ ଅଂଶ ଗ୍ରହଣ କରନ୍ତି । କିନ୍ତୁ ଏପରି କହିବା ଦ୍ୱାରା ପ୍ରକୃତ ଘଟଣାର ପରିଣତିକୁ ଲଘୁ କରାଯିବ । ସେମାନେ (ଆଫ୍ରିକା ଓ ଆମେରିକାର ନିଗ୍ରୋମାନେ) ଏତେ କାଳହେଲା ସମାନ ଦୁଃଖ ଭୋଗୀ ଆସିଅଛନ୍ତି ; ସମାନ ଧରଣର ଭେଦଭାବର ଶିକାର ହୋଇ ଅଛନ୍ତି ; ଏକାଭଳି ନୈରାଶ୍ୟରେ ଜର୍ଜ୍ଜରିତ ହୋଇ ସଂଗ୍ରାମ କରି ଆସିଅଛନ୍ତି ।

ଯଦିଓ ଆମେରିକାର କୃଷ୍ଣକାୟମାନେ ପରସ୍ପର କ୍ରିୟାଶୀଳ ସଂଗଠିତ ଦଳ ଅର୍ଥରେ ଗୋଟିଏ ସମ୍ପ୍ରଦାୟ ନୁହନ୍ତି, ସେମାନଙ୍କୁ ଆମ୍ଭେମାନେ ଗୋଟିଏ 'ନିର୍ମ୍ମିତ ସମାଜ' କହିପାରୁ । ସେମାନଙ୍କର କଷ୍ଟ ପ୍ରକାଶ କରିବାର ଓ କଷ୍ଟର ପ୍ରତିକାର କରିବାର ବିଭିନ୍ନ ଧରଣ ଅଛି । ଏହି ଧରଣ ସେମାନଙ୍କର ସଂସ୍କୃତିର ଅଙ୍ଗରୂପେ ପରିଣତ ହୋଇଅଛି ଏବଂ ବଡ଼ ବଡ଼ ପୃଥକକୃତ ସମ୍ପ୍ରଦାୟ ମଧ୍ୟରେ ଚଳପ୍ରଚଳ ହେବାଦ୍ୱାରା ଏହା ପରବର୍ତ୍ତୀ ବଂଶଧରମାନଙ୍କଠାକୁ ଯାଇଅଛି । ତେଣୁ ଆମେରିକା ସଂସ୍କୃତି ଗଠନର ଗୋଟିଏ ଧାରା ଦେଖି ଆସିଅଛି । ଏହାକୁ ଆମେ ଲଳିତକଳାରେ —ବିଶେଷତଃ ଜାଜ୍ ନୃତ୍ୟରେ ଓ ଲୋକ ସଙ୍ଗୀତରେ—ଦେଖିପାରୁ । ସେହିପରି ସାହିତ୍ୟରେ, ନୃତ୍ୟରେ, ଅଭିନୟରେ ମଧ୍ୟ ଦେଖିପାରୁ । ଏହା ଧର୍ମରେ ଆତ୍ମ-ପ୍ରକାଶ କରିଅଛି । ନାଗରିକ ଅଧିକାର ପାଇଁ ସେମାନଙ୍କ ସଂଗ୍ରାମର ଅହିଂସ ଆନ୍ଦୋଳନରେ ଏହା ପ୍ରକଟିତ । ଅହିଂସ ଆନ୍ଦୋଳନ ବହୁ ପରିମାଣରେ ପ୍ରାଚୀନ ଖ୍ରୀଷ୍ଟିଆନ ଧର୍ମ ଓ ମହାତ୍ମା ଗାନ୍ଧୀଙ୍କଠାରେ ଋଣୀ । କିନ୍ତୁ ମାର୍କିନ ଯୁକ୍ତରାଷ୍ଟ୍ରରେ ନିଗ୍ରୋମାନଙ୍କ ଅଭିଜ୍ଞତାରୁ ଏହା ନୂତନ ରୂପ ଗ୍ରହଣ କରିଅଛି ।

ସଂସ୍କୃତି ଗଠନଧାରାର ଫଳସ୍ୱରୂପ କେତେକ ନିଗ୍ରୋ ପୃଥକ୍‌ବାଦୀ ହେବାକୁ ଆରମ୍ଭ କଲେଣି । କିନ୍ତୁ ସେମାନଙ୍କ ପନ୍ଥା କୃଷ୍ଣକାୟ ମସ୍‌ଲମମାନଙ୍କ ପନ୍ଥାଠାରୁ ଭିନ୍ନ ।

ତଥାପି ସମ୍ମିଳନ ସମ୍ବନ୍ଧରେ ଏବଂ ମୁଖ୍ୟ ସମ୍ପ୍ରଦାୟର ମୂଲ୍ୟ ବୋଧ ଓ ଅଭିପ୍ରାୟ ସମ୍ବନ୍ଧରେଥିବା ଭ୍ରମ ଦୂର ହେଲା ପରେ ଏହି ପନ୍ଥାଦ୍ୱାରା ମଧ୍ୟ କେତେକ ଭ୍ରମ ଦୂର ହୋଇଯାଏ । ସେମାନେ ପ୍ରଶ୍ନ କରୁଅଛନ୍ତି—ଶ୍ୱେତାଙ୍ଗମାନଙ୍କ ସମାଜ, ସେମାନଙ୍କ ଖେଳଭଜନ, ସିନେମା, ସଂସ୍କୃତି, ସନ୍ଦେହ ଜନକ ବ୍ୟବସାୟଗତ ନୈତିକତା, ଧର୍ମରେ ଈଶ୍ୱରଭକ୍ତି ଯାହାର କି କାର୍ଯ୍ୟ ସଙ୍ଗେ ସାମ୍ୟ ନାହିଁ—ଏ ସବୁରେ କି ଲାଭ ଅଛି ? କେହି କେହି ଉପହାସ କରି ଜେମସ୍ ବଲ୍‌ଡ଼ୱିନଙ୍କ ଭଳି କହି ଅଛନ୍ତି—"ମୁଁ ତୁମ୍ଭର ଭଉଣୀକୁ ବିଭାହେବାକୁ ଚାହୁଁ ନାହିଁ । ତୁମ୍ଭେ ମୋ କାନ୍ଧରୁ ଓହ୍ଲାଇଯାଅ । ମୁଁ ଏତିକି ମାତ୍ର ଚାହେଁ ।" ଏହି ଅଗ୍ରଗତି ମଧ୍ୟରେ ଆମେ ଏକ ପ୍ରକାର ଗଠନ ମୂଳକ ବହୁଳବାଦର ପ୍ରାରମ୍ଭିକ ସୂଚନା ଦେଖିପାରିବା । ଏହା ସ୍ୱତଃସ୍ଫୂର୍ତ୍ତ ବହୁଳ-ବାଦଠାରୁ ଭିନ୍ନ ଏବଂ ମସ୍ଲିମ୍ ଓ ନିଗ୍ରୋମାନଙ୍କ ଆନ୍ଦୋଳନଠାରୁ ମଧ୍ୟ ଭିନ୍ନ ।

## ଉପସଂହାର

ଶେଷଭାଗରେ ମୁଁ ଯେଉଁସବୁ ଆଭିମୁଖ୍ୟର ଉଲ୍ଲେଖ କରିଅଛି, ସେ ସବୁ, 'ନାଗରିକ ଅଧିକାର ଆନ୍ଦୋଳନ'ର ମୌଳିକ ସମ୍ମିଳନ ନୀତି ଦୃଷ୍ଟିକୋଣର ବ୍ୟତି-କ୍ରମ ମାତ୍ର । ମାର୍କିନ ଯୁକ୍ତରାଷ୍ଟ୍ରରେ ଯେ ଗୋଷ୍ଠୀ ଅନୁସାରେ ସଂଖ୍ୟାଲଘୁ ସମ୍ପ୍ରଦାୟ-ମାନଙ୍କର ପୃଥକ୍‌କରଣ ରହିଅଛି, ତାହା ବହୁଳବାଦର ପରିପ୍ରକାଶ ନୁହେଁ ; ହୋଇଥିଲେ ଅତି ଅଳ୍ପ ମାତ୍ରାରେ ହୋଇଥିବ । ଏହା ହେଉଛି, ସେମାନଙ୍କ ସଂଖ୍ୟାଲଘୁ ଆସନ (ସ୍ଥିତି) ଓ ତାହାର ଅନ୍ତର୍ଗତ ଭେଦଭାବର ପରିଣାମ । କୌଣସି ସମ୍ପ୍ରଦାୟ ଗୋଟିଏ ଯଥାର୍ଥ ବହୁଳବାଦ ମଧ୍ୟରେ ସାର୍ଥକଭାବରେ ନିଜର ଭୂମିକା ଗ୍ରହଣ କରିବାକୁ ହେଲେ ତାହାର ସଭ୍ୟମାନେ ଏହାର ବର୍ଦ୍ଧିଷ୍ଣୁ ପରମ୍ପରାରେ ଅଂଶୀଦାର ହେବା ଓ ଏହାର ସୁରକ୍ଷା ଓ ଉନ୍ନତି ପାଇଁ ଇଚ୍ଛା କରିବା ଉଚିତ । ଯେଉଁ ସ୍ୱାତନ୍ତ୍ର୍ୟର ଆଉ ଐତିହାସିକ ଗୁରୁତ୍ୱ ନାହିଁ ତାହା ଦ୍ୱାରା ଆବଦ୍ଧ ରହିବା ଯଥେଷ୍ଟ ନୁହେଁ । ସଂସ୍କୃତିର ଇତିହାସରେ ବା ସମସାମୟିକ ବିବେଚନରେ ଯାହାର ଭିତ୍ତି ନାହିଁ ସେପରି ଗୋଟାଏ ଯାଦୃଚ୍ଛିକ ସ୍ୱାତନ୍ତ୍ର୍ୟ ଦ୍ୱାରା ଚିହ୍ନିତ ହେବା ଆଦୌ ଯଥେଷ୍ଟ ନୁହେଁ ଏହା ନିଶ୍ଚିତ ।

ବର୍ତ୍ତମାନ ହାୱାଇରେ ଯେ ପ୍ରକାରର ବହୁଳବାଦ ଦେଖାଯାଏ, ତାହାକୁ ମଧ୍ୟ ଏକବାରେ ବିଶୁଦ୍ଧ ବା ପବିତ୍ର ମନେ କରିବା ଉଚିତ ନୁହେଁ । ଜାତିଗତ ସୀମାରେଖାର ବାହାରେ ଯଥେଷ୍ଟ କ୍ରିୟା ପ୍ରତିକ୍ରିୟା ଘଟୁଥିଲେହେଁ ବ୍ୟକ୍ତି ବିଶେଷର ଜୀବନ ତାହାର ସାଂସ୍କୃତିକ ଓ ଜାତୀୟ ଉତ୍ପତ୍ତି ଦ୍ୱାରା ପ୍ରଭାବିତ ହୋଇଥାଏ । କିନ୍ତୁ

ଏଭଳି ସ୍ୱତନ୍ତ୍ର ଶାଖା-ସଂସ୍କୃତିର ପ୍ରଭାବ ବଂଶଧରମାନଙ୍କଠାରେ ବେଶୀ ଦିନଯାଏ ରହିବ ନାହିଁ। କୌଣସି ଜୀବନଯାପନରୀତି ଏହାର ଉତ୍ପତ୍ତି ସ୍ଥଳରେ ଯେତେ ଗୌରବାନ୍ୱିତ ଓ ମୂଲ୍ୟବାନ ହୋଇଥାଉ ନା କାହିଁକି, ଗୋଟାଏ ବିଶ୍ୱଜନୀନ ନଗରର ପରିବେଶ ମଧ୍ୟରେ ଗୋଟାଏ ଭିନ୍ନ ସମାଜରେ ତାହାକୁ ରକ୍ଷା କରିବା ଆଦୌ ସହଜ ନୁହେଁ। ତଥାପି ସ୍ୱକୀୟ ପରମ୍ପରାର ଅବନତି ଦ୍ୱାରା କ୍ଷତି ସାଧିତ ହେବାର ଆଶଙ୍କା ନାହିଁ। ହାୱାଇର ପ୍ରତ୍ୟେକ ସମ୍ପ୍ରଦାୟ ଆଧୁନିକ ସମାଜର ନୂତନ ଓ ବିଭିନ୍ନ ସଂସ୍କୃତିର ମିଶ୍ରଣରେ ଗଠିତ ସଂସ୍କୃତିକୁ ଯେଉଁ ଦାନଦେଇ ଅଛନ୍ତି, ତାହାର କ୍ଷତି ହେଲେ ହାୱାଇର କ୍ଷତି ହେବ ; ସମଗ୍ର ଜାତିର କ୍ଷତି ହେବ। ବୋଧହୁଏ, ଆମ୍ଭମାନଙ୍କ ପକ୍ଷରେ ଐତିହାସିକ ବହୁଳବାଦ ଉପରେ ଗୁରୁତ୍ୱ ଦେବାର ପ୍ରୟୋଜନ ନାହିଁ। ଏହାର ଆଭିମୁଖ୍ୟ ଓ ସମ୍ବନ୍ଧ ଅତୀତ ସହିତ। ଆମ୍ଭେମାନେ ସମସାମୟିକ ବହୁଳବାଦ ଉପରେ ଗୁରୁତ୍ୱ ଦେବା ଉଚିତ। ସମସାମୟିକ ବହୁଳବାଦ କହିବା ଦ୍ୱାରା ମୋର ଉଦ୍ଦେଶ୍ୟ ହେଉଛି ଯେ ଗୋଟାଏ ନୂତନ ଓ ବିଚିତ୍ର ସଂସ୍କୃତି ସୃଷ୍ଟି କରିବାରେ ଐତିହାସିକ ପରମ୍ପରାର ଦାନ ଉପରେ ଗୁରୁତ୍ୱ ଦେବା ଉଚିତ। ତାହା ସଙ୍ଗେ ମୁଁ ବ୍ୟକ୍ତି ବିଶେଷଙ୍କର ଓ ନୂତନ ସମ୍ପ୍ରଦାୟମାନଙ୍କର ସ୍ୱାଧୀନତାର ମୂଲ୍ୟ ଉପରେ ଗୁରୁତ୍ୱ ଦେଉଅଛି। ନାନା ସମ୍ପ୍ରଦାୟ ମଧ୍ୟରୁ ନିଜର ସମ୍ପ୍ରଦାୟ ନିର୍ବାଚନ କରି ନୂତନ ସାଂସ୍କୃତିକ ସଂଶ୍ଳେଷଣ କରିବା ଏହି ସ୍ୱାଧୀନତାର ଅନ୍ତର୍ଗତ [୧]।

ପୃଥକୀକରଣ ଓ ଐତିହାସିକ ବହୁଳବାଦ ପ୍ରତି ବିଦ୍ୱେଷଠାରୁ ହାୱାଇ ବହୁଦୂର ଅଗ୍ରସର ହୋଇ ଯାଇଅଛି। ବାସ୍ତବରେ ନାନା ଜାତିର ଲୋକଙ୍କର ପରସ୍ପର ମିଶ୍ରଣ ଫଳରେ ହାୱାଇ ଆଧୁନିକ ବହୁଳବାଦର ଯଥେଷ୍ଟ ନିକଟବର୍ତ୍ତୀ ହୋଇଅଛି। ବିଗତ ଅର୍ଦ୍ଧଶତାବ୍ଦୀ ମଧ୍ୟରେ ସେଠାରେ ଯେଉଁ ପରିବର୍ତ୍ତନ ଘଟିଅଛି ସେଥିରୁ ସ୍ପଷ୍ଟ ଜଣାଯାଏ ଯେ ଜାତି ଓ ସଂସ୍କୃତିର ବିଭିନ୍ନତା ସମ୍ମିଳନର ପଥରୋଧ କରି ନପାରେ। ଆମ୍ଭେମାନେ ଯେଉଁ ସବୁ ଲକ୍ଷଣ ନିର୍ଦ୍ଦେଶ କରିଅଛୁଁ, ସେ ସବୁ ପ୍ରୟୋଗ କଲେ, ହାୱାଇରେ ଥିବା ବିଭେଦକାରୀରେଖା ଗଣତାନ୍ତ୍ରିକ ମାନଦଣ୍ଡ ଦୃଷ୍ଟିରୁ ପୂର୍ଣ୍ଣମାତ୍ରାରେ ନହେଲେ ମଧ୍ୟ ମୋଟ ଉପରେ ବିଧି ସଙ୍ଗତ। ଏଠାରେ ବିଭିନ୍ନ ସାମାଜିକ ଗୋଷ୍ଠୀ ବିଶେଷ ପରିମାଣରେ ପରୋକ୍ଷଭାବରେ ଅର୍ଥନୈତିକ ଓ ରାଜନୈତିକ ଉଦ୍ଦେଶ୍ୟ ସାଧନ କରେନାହିଁ। ବିଭେଦ ଅଛି, ମାତ୍ର ତାହା ବିରାଟ ନୁହେଁ କି ସମ୍ପୂର୍ଣ୍ଣ ନୁହେଁ। ବିଭିନ୍ନ ସମ୍ପ୍ରଦାୟ ପରସ୍ପରକୁ ନିଜ ସହିତ ମିଶାଇ

[୧] ନିଉୟର୍କର ମାକମିଲନ କଂପାନୀଙ୍କଦ୍ୱାରା ୧୯୬୩ ମସିହାରେ ପ୍ରକାଶିତ ଜେ. ମିଲ୍‌ଟନ ୟିଙ୍ଗରଙ୍କ କୃତ 'ସୋସିଓଲଜି ଲୁକ୍‌ସ ଆଟ୍ ରିଲିଜିଅନ ପୁସ୍ତକର ୧୦୪-୧୧୧ପୃଷ୍ଠା ଦେଖ।

ନେବାକୁ ପ୍ରସ୍ତୁତ ; ପରସ୍ପରଠାରୁ ବାହାର କରି ଦେବାକୁ ନୁହେଁ । ଅଧିକାଂଶ ସ୍ଥଳରେ ବିଭିନ୍ନ ସମ୍ପ୍ରଦାୟ ଗୁରୁତ୍ୱପୂର୍ଣ୍ଣ ସାଂସ୍କୃତିକ ପ୍ରଭେଦ ଉପରେ ପ୍ରତିଷ୍ଠିତ ।

ଆମେରିକା ମହାଦେଶର ଗୋଷ୍ଠୀଗତ ସମ୍ପର୍କକୁ ପରୀକ୍ଷା କଲେ ଦେଖାଯିବ ଯେ ସେଥିରେ ଏହି ଲକ୍ଷଣମାନଙ୍କ ମଧ୍ୟରୁ ଗୋଟିଏ ହେଲେ ନାହିଁ । ଏଠାରେ ଥିବା ବିଭେଦ ବହୁଳବାଦର ପରିପ୍ରକାଶ ନୁହେଁ; ଭେଦଭାବର ପ୍ରକାଶକ । ତେଣୁ ଗଣତାନ୍ତ୍ରିକ ସମାଜର କର୍ତ୍ତବ୍ୟ ହେଉଛି, ନିଗ୍ରୋ ଓ ଅନ୍ୟାନ୍ୟ ସୁଯୋଗରହିତ ସଂଖ୍ୟାଲଘୁ ସଂପ୍ରଦାୟମାନଙ୍କୁ ମାର୍କିନ ଜୀବନରେ ପୂର୍ଣ୍ଣ ମାତ୍ରାରେ ଅଂଶଗ୍ରହଣ କରିବାକୁ ସୁଯୋଗ ଦେବା ଓ ଅଂଶ ଗ୍ରହଣ କରିବାକୁ ପ୍ରେରଣା ଦେବା ; ସେଥିରୁ ବାରଣ କରିବା ନୁହେଁ ।

ନାନା ଦୃଷ୍ଟିରୁ ଏହି କର୍ତ୍ତବ୍ୟର ଜଟିଳତା ହୃଦୟଙ୍ଗମ କରିବା କଠିନ । କେତେକ ଉଦାରପନ୍ଥୀ ପୃଥକ୍‌କରଣ ଓ ଭେଦଭାବ ଦ୍ୱାରା ସାଧିତ କ୍ଷତିକୁ (ସାମାନ୍ୟ) ଲଘୁ ବୋଲି କହି ସଂଖ୍ୟାଲଘୁ ସଂପ୍ରଦାୟର ଲୋକଙ୍କୁ ସଂଗ୍ରାମର ବୀରରୂପେ ଓ ସଂଖ୍ୟାଗୁରୁ ସଂପ୍ରଦାୟର ଲୋକଙ୍କୁ ସଇତାନ ରୂପେ ଚିହ୍ନଣ କରିଥାନ୍ତି । ଅବଶ୍ୟ ସଂଖ୍ୟାଲଘୁ ସଂପ୍ରଦାୟରେ ବୀର ଅଛନ୍ତି, ଯେଉଁମାନେ କି ଗ୍ରାହକ ବୈଷମ୍ୟ ସତ୍ତ୍ୱେ ବିସ୍ମୟକର କାର୍ଯ୍ୟମାନ ସାଧନ କରିଅଛନ୍ତି । ସେହିପରି ଶ୍ୱେତାଙ୍ଗମାନଙ୍କ ମଧ୍ୟରେ ବୀର ଦେଖା ଦେଇଅଛନ୍ତି । ଏପରିସ୍ଥଳେ ସମସ୍ତଙ୍କୁ ମାନବଜାତିର ଅଙ୍ଗରୂପେ ବିଚାରିବା ଉଚିତ ନୁହେଁ କି ? କେହି ବୁଦ୍ଧିରେ ବା ହୃଦୟବତ୍ତାରେ ପୂର୍ଣ୍ଣ ନୁହନ୍ତି । ସମସ୍ତେ କଠୋର ସମସ୍ୟା ସହିତ ସଂଗ୍ରାମରେ ଲିପ୍ତ । ଉଦାରପନ୍ଥୀମାନେ ପୃଥକ୍-କରଣ ଓ ଭେଦଭାବକୁ ଯେତେ ଭୟଙ୍କର ବୋଲି କହନ୍ତି, ତାହା ଯଦି ସେତେ ଭୟଙ୍କର ହୋଇଥାଏ—ମୋର ବିଶ୍ୱାସ ଯେ ତାହା ଭୟଙ୍କର—ତାହାହେଲେ ଏଥିରୁ କେତେକ ଭୟଙ୍କର ଘଟଣା ଘଟିବା ସ୍ୱାଭାବିକ । ଦୁଃଖର ବିଷୟ ଏପରି ଘଟୁଅଛି ।

ରକ୍ଷଣଶୀଳମାନେ ଠିକ୍ ସେହି ଘଟଣାଗୁଡ଼ିକ ଉପରେ ଗୁରୁତ୍ୱ ଦିଅନ୍ତି । କିନ୍ତୁ କି ପ୍ରକାରର ସାମାଜିକ ଶକ୍ତି ଓ ଅନୁଷ୍ଠାନ ଏହି ଘଟଣାର ପୂର୍ବରୁ ଘଟି ଏହାର ସୃଷ୍ଟି କଲା ତାହା ସେମାନେ ଦେଖି ପାରନ୍ତି ନାହିଁ । ଏଗୁଡ଼ିକୁ ସେମାନେ ସ୍ୱତଃସିଦ୍ଧରୂପେ ଗ୍ରହଣ କରିନଥାନ୍ତି । ସେମାନେ ଦେଖିଲେ ଯେ ଗୋଟିଏ ସ୍କୁଲ ଅବନତି ଆଡ଼କୁ ଗତି କରୁଅଛି । ସ୍ୱତନ୍ତ୍ର ସ୍କୁଲରେ ପିଲା ପୂରି ରହିଅଛନ୍ତି । ଏହି ପିଲାମାନେ ଦରିଦ୍ର ; ପୃଥକ୍‌କୃତ ପରିବେଶ ମଧ୍ୟରେ ପରିବର୍ଦ୍ଧିତ । ଏମାନଙ୍କ ମଧ୍ୟରେ

ଅପରାଧର ହାର ଅଧିକ । ଏହି ସତ୍ୟଯୁକ୍ତିକୁ ଅସ୍ୱୀକାର କରାଯାଇ ନପାରେ । ଆମ୍ଭମାନଙ୍କୁ ପ୍ରଶ୍ନ କରିବାକୁ ହେବ, ସେମାନେ କେଉଁଠାରୁ ଆସିଅଛନ୍ତି ? କିପରି ସେମାନଙ୍କର ଦୋଷ ଦୂର କରିବାକୁ ହେବ ? ଯେତେବେଳେ ଆମ୍ଭେମାନେ ଗୋଟିଏ ନିଗ୍ରୋପିଲା କିମ୍ବା ପିଉର୍ଟୋରିକାନ ପିଲା କିମ୍ବା ମେକ୍ସିକାନ ପିଲାକୁ ଦେଖୁଁ ସେତେବେଳେ ଆମ୍ଭେମାନେ ଜାଣୁ ଯେ ତାହାର ହୃଦୟର ଧ୍ୱଂସମୂଳକ ଆଦର୍ଶ ବିଧି-ନିର୍ଦ୍ଦିଷ୍ଟ ନୁହେଁ ତଥାପି ଆମେ ସମସାମୟିକ ଘଟଣାବଳୀକୁ ଯଦି କାରଣ ରୂପେ ଦର୍ଶାଇ ସେହିସବୁ ଘଟଣାର ପ୍ରକୃତକାରଣରୂପୀ ଅବସ୍ଥାର ପରିବର୍ତ୍ତନ ନକରୁ ତେବେ ଆମ୍ଭେମାନେ ଗୋଟିଏ ଅଖଣ୍ଡ ବୃତ୍ତରେ ଘୁରୁଥିବା, ସେଥିରୁ ବାହାରି ପାରିବା ନାହିଁ । ଏହା ଯେ କଠିନ କାର୍ଯ୍ୟ ତାହା ମୁଁ ସ୍ୱୀକାର କରୁଅଛି । ସମ୍ମିଳନ ଦିଗରେ ପାଦେ ମାତ୍ର ଅଗ୍ରସର ହେବା କଷ୍ଟକର ; କାରଣ ଆମ୍ଭମାନଙ୍କୁ ଲୋକଙ୍କର ପ୍ରତିକ୍ରିୟା ଓ ସହଯୋଗର ପରିସର ବୃଦ୍ଧି କରିବାକୁ ହେବ । ଏହି ଲୋକଙ୍କ ମଧ୍ୟରୁ ଅନେକେ ସୁଯୋଗର ଅଭାବରୁ ସମାଜର ମୂଲ୍ୟବୋଧକୁ ପୂର୍ଣ୍ଣରୂପେ ହୃଦୟଙ୍ଗମ କରି ନାହାନ୍ତି । ନିଜେ ନିଜେ ଉପରକୁ ଉଠିବାକୁ ହେବ । ତାହାହେଲେ ସମ୍ମିଳନ ସମ୍ଭବପର ହୋଇପାରିବ । ପ୍ରଥମେ ସାମାଜିକ କାର୍ଯ୍ୟକୁ ଏକ ଧର୍ମକାର୍ଯ୍ୟ ରୂପେ ଗ୍ରହଣ କରିବା ଆବଶ୍ୟକ ।

ସୁଖର କଥା, ଅନେକ ଘଟଣାରୁ ଏହା ଏକ ଧର୍ମକାର୍ଯ୍ୟ ରୂପେ ଗୃହୀତ ହୋଇଥିବାର ଜଣାଯାଏ । ସଂଖ୍ୟାଲଘୁ ସମ୍ପ୍ରଦାୟର ଅନେକ ଲୋକ ସୁଯୋଗହୀନ ଅବସ୍ଥାରେ ରହି ମଧ୍ୟ କୌଣସି ଅସାଧାରଣ ପିତାମାତା ବା ବନ୍ଧୁଭାବାପନ୍ନ ବ୍ୟବ-ସାୟୀ ବା କୌଣସି ବୁଦ୍ଧିମାନ ଲୋକ କିମ୍ବା କୌଣସି ଧର୍ମବିଶ୍ୱାସ ବଳରେ ଏହି ଦୁରବସ୍ଥାରୁ ମୁକ୍ତ ପାଇ ପାରିଅଛନ୍ତି । ସଂଖ୍ୟାଲଘୁ ସଂପ୍ରଦାୟର ଅଧିକାଂଶ ଲୋକ ଆମେରିକାର ମୂଲ୍ୟବୋଧ ନିକଟରେ ଏପରି ଆତ୍ମସମର୍ପଣ କରି ଦେଇ ଅଛନ୍ତି ଯେ ସାମାନ୍ୟ ଅଗ୍ରଗତି ଦ୍ୱାରା ମଧ୍ୟ ବିସ୍ମୟଜନକ ଫଳଲାଭ ହେଉଅଛି । ଏହା ହୁଏତ ବେଶୀଦିନ ରହି ନପାରେ । ସମଗ୍ର ଜଗତରେ ସ୍ୱାଧୀନତା ପାଇଁ ସଂଗ୍ରାମ ଚାଲିଥିଲା-ବେଳେ ସେମାନଙ୍କର ଆଶା ଅଭୂତପୂର୍ବ ଭାବରେ ଜାଗରିତ ହୋଇଅଛି । ସେମାନଙ୍କର ଉଚ୍ଚାଭିଳାଷ ଅନବରତ ପ୍ରତିହତ ହେଲେ ତାହାର ଫଳ ସ୍ୱରୂପ କେବଳ ଉଗ୍ର ମନୋଭାବ ତଥା ବିଦ୍ୱେଷମୂଳକ କାର୍ଯ୍ୟର ବୃଦ୍ଧି ଲାଭ କରିବ ।

---

# ସପ୍ତମ ଅଧ୍ୟାୟ

## ଭେଦଭାବର ହ୍ରାସକରଣ

### କୌଶଳଗତ ସମସ୍ୟା

ପୂର୍ବବର୍ତ୍ତୀ ଅଧ୍ୟାୟରେ କୁହାଯାଇଅଛି ଯେ ସମ୍ମିଳନ ଓ ବହୁଳବାଦ ଆମ ଲକ୍ଷ୍ୟର ଅନ୍ତର୍ଗତ । ଏହାର ନୈତିକ ଦିଗ ମଧ୍ୟ ଦର୍ଶାଇଅଛି । ପ୍ରେରଣା ଦେବା ଏଥିର ଉଦ୍ଦେଶ୍ୟ ନୁହେଁ : କିନ୍ତୁ ଯତ୍ନସହକାରେ ମୂଲ୍ୟବୋଧ ପ୍ରଶ୍ନର ଅନୁସନ୍ଧାନ କରିବା ପାଇଁ ଉତ୍ସାହିତ କରିବା ଏହାର ଉଦ୍ଦେଶ୍ୟ । ସ୍ୱୀକାର କରିବାକୁ ହେବ ଯେ ଏହି କ୍ଷୁଦ୍ର ଆଲୋଚନା ମଧ୍ୟରେ ମୁଁ ଅନେକ ପ୍ରଶ୍ନ ଅମୀମାଂସିତ ରଖିଯାଇଅଛି । ତଥାପି ଏହି ଅଧ୍ୟାୟରେ ମୁଁ ଧରି ନେଉଅଛି ଯେ ଲକ୍ଷ୍ୟ ସମ୍ବନ୍ଧରେ ଆମ୍ଭମାନଙ୍କ ମଧ୍ୟରେ ଯଥେଷ୍ଟ ମତୈକ୍ୟ ଅଛି । ଅନ୍ତତଃ ପକ୍ଷେ ଆମେ ସମସ୍ତେ ଗୋଟିଏ ବିଷୟରେ ଏକମତ ହୋଇ ପାରିବା—କୌଣସି ଲୋକର ଜୀବନରେ ଉନ୍ନତିର ସମ୍ଭାବନା ତାର ଗୋଷ୍ଠୀ, ତାର ଧର୍ମ, ତାର ଜାତୀୟତା ବା ତାର ଜନ୍ମଗତ ଶ୍ରେଣୀ ଦ୍ୱାରା ପ୍ରତିହତ ହେବା ଉଚିତ ନୁହେଁ ।

ବର୍ତ୍ତମାନ ଆମର କାର୍ଯ୍ୟ ହେଉଛି, କି କୌଶଳରେ ଏହା କରାଯାଇ ପାରିବ ତାହା ବାହାର କରିବା । ଏହି ଲକ୍ଷ୍ୟ ଦିଗକୁ ଅଗ୍ରସର ହେବାପାଇଁ ଶ୍ରେଷ୍ଠ ଉପାୟ କଅଣ ? କୁସଂସ୍କାରାଚ୍ଛନ୍ନ ଲୋକମାନଙ୍କର ମନୋଭାବ ପରିବର୍ତ୍ତନ କରିବା ପାଇଁ ଆମ୍ଭେମାନେ ଅଧିକ ମନଯୋଗ ଦେବା କି ? ଆଇନଗତ ଓ ବ୍ୟୁରଗତ କାର୍ଯ୍ୟାନୁଷ୍ଠାନର ସ୍ଥାନ କେଉଁଠାରେ ? ବସି ରହି ଧର୍ମଘଟ କରିବା, ସ୍ୱାଧୀନତା ପାଇଁ ଶୋଭାଯାତ୍ରା କରିବା, ପ୍ରତିବାଦ ଯାତ୍ରା କରିବା, ପିକେଟିଂ କରିବା—ଏସବୁ ଦ୍ୱାରା ଅବସ୍ଥାର ପରିବର୍ତ୍ତନ ହେବକି ? ଏଭଳି କଷ୍ଟକର ଓ ଗୁରୁତ୍ୱପୂର୍ଣ୍ଣ ପ୍ରଶ୍ନମାନଙ୍କର ଉତ୍ତର କୌଣସି ସଂକ୍ଷିପ୍ତ ଉକ୍ତି ମଧ୍ୟରେ ଦିଆଯାଇ ନପାରେ । ମୋର ଆଶା, ମୁଁ ପ୍ରଶ୍ନଗୁଡ଼ିକ ଉତ୍ଥାପନ କରି ସାହାଯ୍ୟ କରିବା ମାତ୍ର, ଯେପରିକି ତୁମ୍ଭେମାନେ ଉତ୍ସାହିତ ହୋଇ ପୂର୍ଣ୍ଣ ଉତ୍ତର ପାଇବାକୁ ନିଜେ ଅନୁସନ୍ଧାନ କରିବ । ଏହି

ଅଧ୍ୟାୟରେ ମୋର ଅନେକ ଉକ୍ତି କେବଳ ଅନୁମାନମୂଳକ ହେବ । ଅଥାତ୍ ସତ୍ୟର ସନ୍ଧାନ ଜନକରେ ପ୍ରାରମ୍ଭିକ ଅନୁମାନ ମାତ୍ର ହେବ । ଏହି ପ୍ରଣାଳୀରେ ଅଗ୍ରସର ହେବା ଦ୍ୱାରା ଆମ୍ଭମାନଙ୍କ ଆଗରେ ସର୍ବଦା ଏହି ଧାରଣା ରହିବ ଯେ ଆମ୍ଭମାନଙ୍କର କାର୍ଯ୍ୟ କ୍ଷେତ୍ର ପ୍ରଶସ୍ତ ଓ କ୍ରମଶଃ ବର୍ଦ୍ଧନଶୀଳ ।

ସାଧାରଣ ଜ୍ଞାନ ଉପରେ ପ୍ରତିଷ୍ଠିତ ଗୋଟିଏ କୌଶଳ ଅନେକ ସମୟରେ ଶୁଣିବାକୁ ମିଳେ । ତାହା ହେଉଛି—ଆମର ଏକମାତ୍ର ପ୍ରୟୋଜନ ହେଉଛି, ଅନ୍ୟର ଶିକ୍ଷା ଭେଦତତ୍ତ୍ୱ ଗୋଟିଏ ବିରାଟ ଜଟିଳ ପ୍ରଶ୍ନ ବୋଲି ସ୍ୱୀକାର କରିଗଲେହେଁ "ଶିକ୍ଷା ଏକାନ୍ତ ପ୍ରୟୋଜନ" ଏପରି କହିବା ଦ୍ୱାରା ବିଷୟଟି ନିତାନ୍ତ ସହଜ ବୋଲି ବୁଝାଯିବ ? ମାତ୍ର ପ୍ରକୃତରେ ତାହା ଏତେ ସହଜ ନୁହେଁ । ଏହି ଉକ୍ତିର ବିରୋଧରେ ଯୁକ୍ତି କରିବା ବା ଏହା ଯଥେଷ୍ଟ ନୁହେଁ ବୋଲି ଦର୍ଶାଇବା ମୋର ପ୍ରଥମ ଉଦ୍ଦେଶ୍ୟ । ଅନ୍ୟ ଏକ ପ୍ରକାରେ ଏହି ପ୍ରଶ୍ନର ସମ୍ମୁଖୀନ ହେବା ଲାଭଜନକ ହୋଇପାରେ । ସ୍ୱୀକାର କରାଯାଉ ଯେ, ଶିକ୍ଷାର ଯଥେଷ୍ଟ ଆବଶ୍ୟକତା ଅଛି । ଏବଂ ଏହି ଶିକ୍ଷା ଖୁବ୍ ଉଦାରଧରଣର ହେବା ଉଚିତ । ବାସ୍ତବରେ ଆମେ ଯେଉଁ ସମାଜରେ ବାସ କରୁଅଛୁ, ସେଥିପାଇଁ ଶିକ୍ଷା ଯେତେ ଦରକାର ଆଉ କାହା ସେତେ ଦରକାର ନୁହେଁ ଯେଉଁ ସମାଜ ଅତି ସରଳ, ସେଥିରେ ଏକମାତ୍ର ସ୍କୁଲ ହେଉଛି ଘର ଓ କ୍ଷେତ । ଏହି ଘର ଓ କ୍ଷେତରେ ନିଜର ଉଦାହରଣ ଓ ଉପଦେଶଦ୍ୱାରା ଲୋକେ ଜୀବନ ଯାତ୍ରା ନିର୍ବାହର ପ୍ରଣାଳୀ ଶିକ୍ଷା ଦେଇପାରନ୍ତି । କିନ୍ତୁ ସମାଜ ଯେତେବେଳେ ଜଟିଳ ହୋଇଯାଏ ଓ ସର୍ବଦା ପରିବର୍ତ୍ତନ ମଧ୍ୟରେ ଗତିକରେ, ସେତେବେଳେ କେବଳ ପିତାମାତାଙ୍କ ଆଦର୍ଶ ଯଥେଷ୍ଟ ହୁଏନାହିଁ ; ବିଶେଷଜ୍ଞ ଶିକ୍ଷକଙ୍କର ଆବଶ୍ୟକ ହୁଏ । ସେଥିରୁ ସ୍କୁଲର ଉତ୍ପତ୍ତି । ସ୍କୁଲ ଓ ଘର ଛଡ଼ା ଆମେ ଏକ ତୃତୀୟ ସୋପାନରେ ପହଞ୍ଚିଲେଣି । ବର୍ତ୍ତମାନ ସ୍କୁଲ୍ କଲେଜର ଶିକ୍ଷା ମଧ୍ୟ ପର୍ଯ୍ୟାପ୍ତ ନୁହେଁ । ଅନ୍ତତଃ ସ୍କୁଲ୍ କଲେଜରେ ଶିକ୍ଷା ସମ୍ପୂର୍ଣ୍ଣ ହେଉନାହିଁ । ଜୀବନର ଅବସ୍ଥାରେ ଏତେ ବିରାଟ ପରିବର୍ତ୍ତନ ଏତେ ଶୀଘ୍ର ଓ ଏତେ ସ୍ଥାୟୀଭାବରେ ଘଟୁଅଛି ଯେ ସମଗ୍ରଜୀବନବ୍ୟାପୀ ଅବିଶ୍ରାନ୍ତ ଶିକ୍ଷା ବ୍ୟତୀତ ଅନ୍ୟ କୌଣସି ଶିକ୍ଷା ପର୍ଯ୍ୟାପ୍ତ ହୋଇ ନପାରେ ।

ଆମେ ଏବେ ଅନ୍ୟକ୍ଷେତ୍ରରେ ପରୀକ୍ଷା କରିବା—କଙ୍ଗୋର ଜଣେ ଆଦିବାସୀ କିପରି ଜାଣିବ ଯେ ତାର ପୁଅ ଭବିଷ୍ୟତରେ କି ପ୍ରକାର ଜୀବନରେ ସମ୍ମୁଖୀନ ହେବ ଓ ତଦନୁସାରେ ସେ ତାକୁ ଶିକ୍ଷା ଦେବ ? ଅଳ୍ପବାମାର ଜଣେ ଭୂଗର୍ଭ୍ୟଶ୍ରମୀ କିପରି ତାର ପୁଅକୁ ଡେଟ୍ରଏଟର ବିଧାନସଭାର ଜଣେସଭ୍ୟ ହେବାକୁ ଯୋଗ୍ୟ କରିପାରିବ ?

ଲଙ୍କପୁରର ଜଣେ ନିରକ୍ଷର କୃଷକ କିପରି ନାଗରିକ ଜୀବନର ଉପଯୋଗୀ କର୍ମପନ୍ଥା ଓ ମୂଲ୍ୟବୋଧ ତାର ପରିବାରର ଲୋକଙ୍କୁ ଶିକ୍ଷା ଦେଇ ପାରିବ ? ବୋଧହୁଏ ଆଜି ପକ୍ଷରେ ଅନ୍ୟପ୍ରକାରେ ପ୍ରଶ୍ନ କରିବା ଅଧିକ ଗୁରୁତ୍ୱପୂର୍ଣ୍ଣ ହେବ । ଏକ ସମୟରେ ସମୁଦ୍ରର ବିସ୍ତାର ଅଧିକ ଥିଲା ; ମନୁଷ୍ୟର ମାଗଣାସ୍ଥ ଦେଶ ଓ କାଳର ସୀମାମଧ୍ୟରେ ଆବଦ୍ଧ ଥିଲା । ସେହି ଯୁଗରେ ବଢ଼ିଥିବା କୌଣସି କଲେଜ ଶିକ୍ଷିତ ଚାକିରିଆ ବା ବ୍ୟବସାୟୀ ନିଜର ପୁଅ ଝିଅଙ୍କୁ ଆଧୁନିକ ସଂସାରରେ ଜୀବନଯାତ୍ରା ବିଷୟରେ କିପରି ଶିକ୍ଷା ଦେଇ ପାରିବ ? ଯେଉଁ ସ୍କୁଲ ବା କଲେଜରୁ ୨୦ ବା ୩୦ ବା ୪୦ ବର୍ଷ ପୂର୍ବେ ସେମାନେ ବାହାରିଥିଲେ ସେହି ସ୍କୁଲ ବା କଲେଜ ଜୀବନରେ ଗୁରୁତ୍ୱପୂର୍ଣ୍ଣ ସିଦ୍ଧାନ୍ତରେ ଉପନୀତ ହେବାକୁ କିପରି ସେମାନଙ୍କୁ ସାହାଯ୍ୟ କରି ପାରିବ ? ସେମାନଙ୍କ ହୃଦୟରେ ବୌଦ୍ଧିକ ବିନୟ, ଅନୁସନ୍ଧିତ୍ସା ଓ ଅପରିସୀମ କୌତୂହଳ ସୃଷ୍ଟି କରି ସେମାନଙ୍କୁ ଭାବରାଜ୍ୟ ଓ ଘଟନା ସମ୍ବନ୍ଧରେ ଯାବଜ୍ଜୀବନ ଜାଗ୍ରତ ରଖିବାଦ୍ୱାରା ଏହା କେବଳ ସମ୍ଭବପର ହୋଇପାରେ ।

ଏହାହିଁ ହେଉଛି, ଏ ଅଧ୍ୟାୟର ଚିନ୍ତା । ଏଥିପାଇଁ ଶିକ୍ଷାକୁ ପ୍ରଶସ୍ତ ଅର୍ଥରେ ଗ୍ରହଣ କରିବା ଉଚିତ ଏବଂ ସ୍କୁଲଘରର ବାହାରେ ଘଟୁଥିବା ନାନା ଘଟଣାର ଉଲ୍ଲେଖ କରିବାକୁ ପଡ଼ିବ । ଅର୍ଥାତ୍ ଯେତେ ପ୍ରଶ୍ନର ଉତ୍ତର ଦିଆଯିବ, ତାହା ଅପେକ୍ଷା ଅଧିକ ପ୍ରଶ୍ନର ଉତ୍ଥାପନ କରାଯିବ । ମୋର ଆଶା, ମୁଁ ତୁମ୍ଭମାନଙ୍କ ସମକ୍ଷରେ ଅଧ୍ୟୟନ ଓ ଗବେଷଣା ନିମନ୍ତେ ଗୋଟିଏ ଚିତ୍ତାକର୍ଷକ କ୍ଷେତ୍ର ଉନ୍ମୁକ୍ତ କରି ଦେଇ ପାରିବ । ଏଥିରେ ସମ୍ଭାବ୍ୟ ପନ୍ଥାର ସୂଚନା ରହିବ ; କିନ୍ତୁ ଅଧିକଜ୍ଞାନ ଆହରଣ କରିବାର ଆବଶ୍ୟକତା ପ୍ରଦର୍ଶିତ ହେବ । ତୁମ୍ଭମାନଙ୍କ ମଧ୍ୟରେ କେତେକ ସେହି ଜ୍ଞାନ ଦେଇପାରନ୍ତି ।

କୌଶଳ ସମ୍ବନ୍ଧରେ ନିର୍ଦ୍ଦିଷ୍ଟ ସମସ୍ୟାମାନଙ୍କର ଆଲୋଚନା କରିବା ପୂର୍ବରୁ ମୁଁ ଗୋଟିଏ କଥା କହିରଖେଁ । ସମାଜଠାରୁ ପୃଥକ୍‌ଭାବରେ ଶିକ୍ଷା ବା ସାମ୍ପ୍ରଦାୟିକ ସମ୍ବନ୍ଧ ବୁଝିବା ଅସମ୍ଭବ ; କାରଣ ଶିକ୍ଷା ଓ ସାମ୍ପ୍ରଦାୟିକ ସମ୍ବନ୍ଧ ସମାଜର ଗୋଟିଏ ଗୋଟିଏ ଅଙ୍ଗ । ସମାଜର ବିଭିନ୍ନ ଅନୁଷ୍ଠାନ ବିଷୟ ସ୍ୱତନ୍ତ୍ର ଭାବରେ ଆଲୋଚନା କରାଯାଇପାରେ କିନ୍ତୁ ସେ ସବୁ ପରସ୍ପର କ୍ରିୟାକାରୀ ଏକ ପଦ୍ଧତିର ଗୋଟିଏ ଗୋଟିଏ ଅଙ୍ଗ । ପ୍ରତ୍ୟେକ ଅଙ୍ଗ ଯେଉଁ ପଦ୍ଧତିର ଅନ୍ତର୍ଗତ ତାହା ଉପରେ କ୍ରିୟା ପ୍ରକାଶ କରେ ଓ ସମଗ୍ର ପଦ୍ଧତି ଦ୍ୱାରା ମଧ୍ୟ ପ୍ରଭାବିତ ହୁଏ । ଉଦାହରଣ ସ୍ୱରୂପ କେହି ସମାଜର ଗୋଟିଏ ଦିଗ ବିଷୟରେ ଆଗ୍ରହଶୀଳ । ମନେକର ସେ ଦିଗଟି ହେଲା ଧର୍ମର ଅଦର୍ଶ । ସେ ଅଳ୍ପ ସମୟ ମଧ୍ୟରେ ଦେଖି ପାରିବ ଯେ ସେ ସ୍ୱତନ୍ତ୍ର ଭାବରେ ଧର୍ମ-ସମ୍ପ୍ରଦାୟ ଓ ତାହାର ଆଚରଣ ମଧ୍ୟରେ ନିଜକୁ ସୀମାବଦ୍ଧ କରି

ରକ୍ଷା ପାରିବ ନାହିଁ । ଧର୍ମ ସହିତ ସମାଜର ଅର୍ଥନୀତି, ରାଜନୀତି, ପରିବାର ଓ ଶିକ୍ଷା ପ୍ରଣାଳୀର ପାରସ୍ପରିକ କ୍ରିୟା ପ୍ରତିକ୍ରିୟାକୁ ସେ ନିଶ୍ଚୟ ଆଖି ଆଗରେ ରଖିବାକୁ ବାଧ୍ୟ ହେବ ।

ଯିଏ ସଂଖ୍ୟାଲଘୁ-ସଂଖ୍ୟାଗୁରୁ ସମ୍ବନ୍ଧର ଆଲୋଚନା କରିବାକୁ ଯିବ, ତାକୁ ମଧ୍ୟ ଏହି ସତ୍ୟର ସମ୍ମୁଖୀନ ହେବାକୁ ପଡ଼ିବ । ସେ ଯେକୌଣସିଠାରୁ ନିଜର ପର୍ଯ୍ୟବେକ୍ଷଣ କାର୍ଯ୍ୟ ଆରମ୍ଭ କରୁନା କାହିଁକି ସେ ଦେଖିବ ଯେ ତାକୁ ଗୋଟିଏ ଜଟିଳ ପଦ୍ଧତିକୁ ସୋପାନପରେ ସୋପାନ କ୍ରମେ ଅଧ୍ୟୟନ କରିବାକୁ ହେବ । ଏହି ପଦ୍ଧତିରେ ପରସ୍ପର ଛନ୍ଦାଛନ୍ଦି ଓ ପରସ୍ପର ସାହାଯ୍ୟକାରୀ ଆଦର୍ଶମାନ ରହି ଅଛନ୍ତି । ଅବଶ୍ୟ ଏହି ପଦ୍ଧତିରେ କେତେକ ପରସ୍ପର ବିରୋଧ ଓ ସଂଘର୍ଷ ରହିପାରେ । ଏହି ବିରୋଧ ଓ ସଂଘର୍ଷ ହେଉଛି ଉକ୍ତ ପଦ୍ଧତିର ଦୁର୍ବଳତା । ଏହା ଶୀଘ୍ର ପରିବର୍ତ୍ତିତ ହୋଇପାରେ । ଯେ ବିଶ୍ଳେଷଣ କରିବାକୁ ଇଚ୍ଛାକରେ, ଓ ଯେ ପରିବର୍ତ୍ତନ ଆଣିବାକୁ ଚେଷ୍ଟାକରେ, ଏହି ଦୁଇ ଶ୍ରେଣୀର ଲୋକଙ୍କ ପକ୍ଷରେ ଏହି ଘଟନା କୌଶଳଦୃଷ୍ଟିରୁ ଗୁରୁତ୍ୱପୂର୍ଣ୍ଣ କିନ୍ତୁ ବିରୋଧ ଓ ଅସଙ୍ଗତି ସତ୍ତ୍ୱେ ଏ ଗୁଡ଼ିକ ସମାଜ ମଧ୍ୟରେ କିପରି ଚଳି ପାରୁଛି, ସେହି ଦୃଷ୍ଟିରୁ ଏହାକୁ ବିଚାର କରିବାକୁ ହେବ । ଯେଉଁ ଲୋକ ଭେଦଭାବର ମୂଳକାରଣ ବୁଝି ଅନ୍ୟକୁ ବୁଝାଇବାକୁ ଚେଷ୍ଟା କରିବ ସେ ଦେଖିବ ଯେ ଯେଉଁ ସବୁ ସହଜ ଓ ସାଧାରଣଜ୍ଞାନଲବ୍ଧ ସୂତ୍ର ଶୁଣିବାକୁ ମିଳେ ସେସବୁ ଭ୍ରମପୂର୍ଣ୍ଣ ; କାରଣ ସାମାଜିକ ଜୀବନ ଯେ ପରସ୍ପର ସମ୍ବନ୍ଧାନ୍ୱିତ ସେ କଥାଟି ପ୍ରତି ଦୃଷ୍ଟି ଦିଆଯାଇ ନଥାଏ । ଉଦାହରଣ ସ୍ୱରୂପ କୁହା ଯାଇଥାଏ—"ସ୍ୱଳ୍ପସ୍ୱରେ ସୁଯୋଗର ଅଭାବ ହେଉଛି ମୌଳିକ ସମସ୍ୟା ।" କିମ୍ବା "କୁସଂସ୍କାର ବିରୋଧରେ କୌଣସି ଆଇନ ପ୍ରଣୟନ କରାଯାଇ ନପାରେ ।" କିମ୍ବା "ମୌଳିକ ପ୍ରଶ୍ନ ହେଉଛି, ଆନ୍ତଃସାମ୍ପ୍ରଦାୟିକ ବିବାହ ।" ଏ ପ୍ରକାର ମନ୍ତବ୍ୟରେ ଜୀବନର ଗୋଟାଏ ଗୋଟାଏ ଦିଗ ପ୍ରତି ଅଧିକ ଦୃଷ୍ଟି ଦିଆ ଯାଇଥାଏ ; ଏହା ଫଳରେ ଗୋଟାଏ କେବଳ ବିକୃତ ଚିତ୍ର ମିଳିଥାଏ ।

ଏହି ମତରେ ଆଉ ଗୋଟାଏ ଦିଗ ଅଛି । ଜୀବନ ହେଉଛି ଗୋଟିଏ ଗଣ୍ଠି ନଥିବା ଜାଲ ପରି । ଆନ୍ତଃସାମ୍ପ୍ରଦାୟିକ ସମ୍ବନ୍ଧ ସେହି ଜାଲର ଗୋଟିଏ ଅଂଶ । କୌଶଳ ସବୁ ସାମାଜିକ ଗଠନ ସହିତ ସଂପୃକ୍ତ ଏବଂ ଯେଉଁ କୌଶଳ ମୁଖ୍ୟତଃ ବ୍ୟକ୍ତିଗତ ଦୃଷ୍ଟିକୋଣ ଉପରେ ମନୋନିବେଶ କରେ, ତାହା ଆନ୍ତଃସାମ୍ପ୍ରଦାୟିକ ସମ୍ପର୍କରେ ନିହିତ ଶକ୍ତି ବିଷୟରେ ମୂଲ୍ୟବାନ ଚିତ୍ର ଦେଇପାରେ, ମାତ୍ର ତାହା ନିଶ୍ଚୟ ଏକ ଦେଶଦର୍ଶୀ ହେବ । ବ୍ୟକ୍ତିଗତ କୁସଂସ୍କାରର ପ୍ରସାର ଓ

ଗମ୍ଭୀରତା ବିଷୟରେ ଯେଉଁ ଜ୍ଞାନ ତାହା ସାମ୍ପ୍ରଦାୟିକ ଆଚରଣ ବିଷୟକ ଜ୍ଞାନର ପଥ ପ୍ରଦର୍ଶନ କରିବାକୁ ଯଥେଷ୍ଟ ନୁହେଁ । କିଛି କାଳ ପୂର୍ବେ "ଶିଳ୍ପକ୍ଷେତ୍ରରେ ନ୍ୟାଯ୍ୟ ବିଚାର" ବିଷୟକ ଆଇନ ପ୍ରତି ଲୋକଙ୍କର ମନୋଭାବ କିପରି, ତାହା ମୁଁ ଅନୁସନ୍ଧାନ କରୁଥିଲି । ମୁଁ ଦେଖିଲି ଯେ ଶ୍ରମିକ ଇଉନିୟନମାନଙ୍କ ନେତାମାନେ କିଛି ନା କିଛି ବ୍ୟକ୍ତିଗତ ବିଦ୍ୱେଷ ପ୍ରକାଶ କରୁଥିଲେ; କିନ୍ତୁ ସମସ୍ତେ ବିନା ଦ୍ୱିଧାରେ ଭେଦଭାବ ବିରୋଧୀ ନୀତିର ଦୃଢ଼ ସମର୍ଥନ କରିଥିଲେ । ଅପର ପକ୍ଷରେ ପରିଚାଳକମାନଙ୍କ ପ୍ରତିନିଧିମାନଙ୍କର ସେତେ ବ୍ୟକ୍ତିଗତ ବିଦ୍ୱେଷ ଦେଖାଯାଇ ନଥିଲା; କିନ୍ତୁ ସେମାନେ ଭେଦଭାବ ନୀତିରେ ଶ୍ରମିକ ଗ୍ରହଣ ନୀତିର ସମର୍ଥନ କରିଥିଲେ । ଏଥିରୁ ବୁଝିବାକୁ ହେବନାହିଁ ଯେ ବ୍ୟକ୍ତିଗତ ଦୃଷ୍ଟିକୋଣ ଆଦୌ ଗୁରୁତ୍ୱପୂର୍ଣ୍ଣ ନୁହେଁ । ଏହାର ଅର୍ଥ ହେଉଛି, ଯେଉଁ ସମ୍ପ୍ରଦାୟରେ ଏହା ପ୍ରକାଶ ପାଉଅଛି; ସେହି ସମ୍ପ୍ରଦାୟ ଦୃଷ୍ଟିରୁ ଏହାର ଆଲୋଚନା କରିବାକୁ ହେବ । ବିପରୀତ ପକ୍ଷରେ ଦୁଇଜଣ ଲୋକ ଏକ କାର୍ଯ୍ୟରେ ନିଯୁକ୍ତ ଥିଲେ ଓ ଏକାଭଳି ଅବସ୍ଥାର ପ୍ରଭାବରେ ପଡ଼ିଥିଲେ ସୁଦ୍ଧା ବ୍ୟକ୍ତିଗତ ମନୋଭାବ ଅନୁସାରେ ଭିନ୍ନ ପ୍ରତିକ୍ରିୟା ପ୍ରକାଶ କରିପାରନ୍ତି । ଯିଏ ସାମ୍ପ୍ରଦାୟିକ ସମ୍ବନ୍ଧ ବିଷୟ ଅଧ୍ୟୟନ କରିବାକୁ ଯିବ ସେ କଦାପି ବ୍ୟକ୍ତିଗତ ଦୃଷ୍ଟିକୋଣକୁ ଅବହେଳା କରିପାରିବ ନାହିଁ କିମ୍ବା ଯେଉଁ ସମାଜ ସଂଗଠନରେ ଏହା ପ୍ରକଟିତ ତାହାକୁ ମଧ୍ୟ ଅବହେଳା କରି ପାରିବ ନାହିଁ । ତାହାକୁ ସମଗ୍ର କ୍ଷେତ୍ର ଅନୁସନ୍ଧାନ କରିବାକୁ ହେବ । [୧]

ଡ଼ିଉଚ ଓ କଲିନ୍‌ସ ଗୃହନିର୍ମାଣରେ ସମ୍ମିଳନ ବିଷୟର ଗବେଷଣା କରି ତାହାର ଭିତ୍ତିରେ ଅବସ୍ଥାର ଜଟିଳତା ବର୍ଣ୍ଣନା କରି ଲେଖିଅଛନ୍ତି :—

ବିଦ୍ୱେଷ ଓ ଭେଦଭାବର ବିଶ୍ଳେଷଣ କରି ଆମ୍ଭେମାନେ ମନେ କରୁଁ ଯେ ଗୋଷ୍ଠୀଗତ ସମ୍ବନ୍ଧର ପରିବର୍ତ୍ତନ ନିମନ୍ତେ ଯେ କୌଣସି କୌଶଳର ପାଞ୍ଚୋଟି ଉଦ୍ଦେଶ୍ୟ ଥିବା ଦରକାର । (କ) ଏହା ଆମ ସମାଜରେ ଏପରି ରାଜନୈତିକ ଓ ଅର୍ଥନୈତିକ ପରିବର୍ତ୍ତନ ଆଣିବ ଯେ ବିଦ୍ୱେଷ ଓ ଭେଦଭାବ ସମାଜର ପ୍ରଭାବଶାଳୀ ସମ୍ପ୍ରଦାୟର କୌଣସି ଗୁରୁତ୍ୱପୂର୍ଣ୍ଣ ଉଦ୍ଦେଶ୍ୟ ସାଧନ କରି ପାରିବ ନାହିଁ । (ଖ) ନିଗ୍ରୋମାନଙ୍କର (ଅନ୍ୟ ସଂଖ୍ୟାଲଘୁ ସମ୍ପ୍ରଦାୟମାନଙ୍କର ମଧ୍ୟ) ସାମାଜିକ ଓ ଅର୍ଥନୈତିକ ଅବସ୍ଥାରେ ଏପରି ପରିବର୍ତ୍ତନ ଆଣିବ ଯେ ସେମାନେ ମାର୍କିନ ସଂସ୍କୃତିରେ ଭାଗ

---

[୧] ଜର୍ଜ ଇ. ସିମ୍ପସନ ଓ ଜେ. ମିଲ୍‌ଟନ ୟିଙ୍ଗରଙ୍କ କୃତ ଓ ନିଉୟର୍କର ହାପର ଏଣ୍ଡ ରୋ'ଙ୍କ ଦ୍ୱାରା ୧୯୬୫ ମସିହାରେ ପ୍ରକାଶିତ 'ରେସିଆଲ ଏଣ୍ଡ କାଲଚରାଲ ମାଇନୋରିଟିସ' (୩ୟ ସଂସ୍କରଣ) ପୁସ୍ତକ ଦେଖ ।

ନେବାର ପୂର୍ଣ୍ଣ ସୁଯୋଗ ଲାଭ କରି ତାହାଙ୍କୁ କିଛି ଦାନ କରି ପାରିବେ ଏବଂ ଗୋଟିଏ ସମ୍ପ୍ରଦାୟ ଭାବରେ ସେମାନେ କୌଣସି ଭେଦଭାବ ଅନୁଭବ କରି ପାରିବେ ନାହିଁ ଓ କୌଣସି ସୁବିଧାରୁ ବଞ୍ଚିତ ହେବେ ନାହିଁ । (ଗ) ଯେଉଁସବୁ ଭେଦଭାବ ମୂଳକ ସାମାଜିକ ବାଧାବିଧାନ, ବହିଷ୍କରଣ ବା ପୃଥକ୍‌କରଣ ନିଗ୍ରୋମାନଙ୍କର ଅସୁବିଧାର କାରଣ ହୋଇଅଛି ଓ ସେମାନଙ୍କ ବିଦ୍ୱେଷକୁ ପରିପୁଷ୍ଟ କରିଅଛି, ସେଗୁଡ଼ିକୁ ଦୂର କରିବାକୁ ହେବ । (ଘ) ଯେଉଁ ବିଦ୍ୱେଷ ମୂଳକ ମନୋଭାବ ଦ୍ୱାରା ବ୍ୟକ୍ତି ବିଶେଷର ମନରେ ଭେଦଭାବ ଜନ୍ମେ ଓ ପୃଥକ୍‌କରଣ ପ୍ରତି ସମର୍ଥନ ଆସେ, ସେ ପ୍ରକାରର ମନୋଭାବକୁ ଧ୍ୱଂସ କରିବାକୁ ହେବ । (ଙ) ଗଣତନ୍ତ୍ରର ଆଦର୍ଶ ପ୍ରତି ଅଧିକତର ଆନୁଗତ୍ୟ ସୃଷ୍ଟି କରିବ । [୨]

ଫୁଟବଲ୍ ଖେଳରେ ଯିଏ କ୍ୱାର୍ଟର ବ୍ୟାକ୍ ଥାଏ, ସେ ଏକ ପ୍ରକାର ଖେଳ ଜାଣିଥିଲେ ଚଳିବ ନାହିଁ । ସେହିପରି କେବଳ ଗୋଟିଏ ଦିଗରେ ଉଦ୍ୟମ କଲେ ସମସ୍ୟାର ସମାଧାନ ହୋଇ ପାରିବ ନାହିଁ । ଏହି ଉଦାହରଣରୁ ଜଣାଯିବ ଯେ ଫୁଟବଲ୍ ଖେଳରେ ଗୋଟିଏ ଦଳ କିପରି ମିଳମିଶି ଖେଳିଲେ ଜିଣିପାରିବେ; ତାହା ଅପର ଦଳର ଖେଳ ଉପରେ ନିର୍ଭର କରେ । ଠିକ୍ ସେହିପରି ଏ କ୍ଷେତ୍ରରେ ଯେଉଁ ପରିସ୍ଥିତି ସହିତ ସଂଗ୍ରାମ କରିବାକୁ ହେବ, ତାହା ବିଚାର କରିବାକୁ ପଡ଼ିବ । ଆମେ କୌଶଳ ସମ୍ବନ୍ଧରେ ଯେଉଁ ସାଧାରଣ ନୀତିଗୁଡ଼ିକର ଉଲ୍ଲେଖ କରିଅଛୁଁ; ସେଥିରେ ଗୋଟିଏ ସମସ୍ୟା ପ୍ରତି ଦୃଷ୍ଟି ଦିଆଯାଇ ପାରି ନାହିଁ । ତାହା ହେଉଛି; ନିର୍ଦ୍ଦିଷ୍ଟ ପରିସ୍ଥିତିରେ କାର୍ଯ୍ୟ କରୁଥିବା ଶକ୍ତିମାନଙ୍କ ମଧ୍ୟରେ ଭାରସାମ୍ୟ ରକ୍ଷା କରିବା ସମସ୍ୟା । ଏହା ଛଡ଼ା ଆଉ ଗୋଟିଏ ଜଟିଳ ବିଷୟ ପ୍ରତି ଦୃଷ୍ଟିଦେବା ବିଧେୟ । ଡ଼ଉଚ ଓ କଲିନ୍‌ସ ଯେଉଁ ପ୍ରଶ୍ନଗୁଡ଼ିକ ଉତ୍ଥାପନ କରିଅଛନ୍ତି; ସେଗୁଡ଼ିକ ମଧ୍ୟରୁ ପ୍ରତ୍ୟେକର ଆଭ୍ୟନ୍ତରୀଣ ଗଠନ ସ୍ୱତନ୍ତ୍ର । ଉଦାହରଣ ସ୍ୱରୂପ ଚେଇନ୍ ଉଲ୍ଲେଖ କରିଅଛନ୍ତି ଯେ ବ୍ୟକ୍ତିଗତ ବିଦ୍ୱେଷର (ଉପରିଲିଖିତ ତାଲିକାର 'ଘ'ର ଅନ୍ତର୍ଗତ) ନାନା ଦିଗରେ ବିସ୍ତୃତ ଅଛି—ଏଗୁଡ଼ିକ ହେଲା ଜ୍ଞାନ (ଅଥବା ଜ୍ଞାନର ଅଭାବ); ଉପଯୋଗିତା ବା ସାମଞ୍ଜସ୍ୟ; ସ୍ଥିତି ବା ଆସନ ଏବଂ ମାନସିକ ଆବଶ୍ୟକତା [୩] ।

[୨] ମର୍ଟନ ଡ଼ଉଚ ଓ ମେରି ଇ. କଲିନ୍‌ସଙ୍କ ଲିଖିତ ଓ ମିନେସୋଟା ଇଉନିଭରସିଟି ପ୍ରେସରୁ ୧୯୫୧ ମସିହାରେ ପ୍ରକାଶିତ 'ଇଣ୍ଟାରରେସିଆଲ ହାଉସିଙ୍ଗ୍' ପୁସ୍ତକର ୧୪୪-୧୪୫ ପୃଷ୍ଠା ଦେଖ ।

[୩] ଇସିଡର ଚେଇନଙ୍କ ଦ୍ୱାରା ଲିଖିତ 'ଜର୍ନାଲ ଅଫ ଏଡୁକେସନାଲ ସୋସିଓଲଜି' ପତ୍ରିକାର ୧୯୪୬ ମସିହାର ମାର୍ଚ୍ଚ ସଂଖ୍ୟାରେ ପ୍ରକାଶିତ 'ସମ କନ୍‌ସିଡରେସନ ଇନ କମ୍ବାଟିଙ୍ଗ୍ ଇଣ୍ଟାରଗ୍ରୁପ ପ୍ରିଯୁଡିସ' ପ୍ରବନ୍ଧର ୪୧୨-୪୧୯ ପୃଷ୍ଠା ଦ୍ରଷ୍ଟବ୍ୟ ।

ବିଦ୍ୱେଷ ବୃଦ୍ଧିର ସହାୟକ ଏହି କାରଣମାନଙ୍କ ମଧ୍ୟରୁ ଗୋଟିକୁ ଦୂର କରିବା ପାଇଁ ଯେଉଁ କୌଶଳ ଫଳପ୍ରଦ ହୋଇପାରେ; ଅନ୍ୟ ଗୋଟିଏ ପାଇଁ ତାହା ଆଦୌ ଫଳପ୍ରଦ ହୋଇ ନ ପାରେ ।

ବିଭିନ୍ନ କାରଣ ଓ ସେଥିପାଇଁ କି କୌଶଳ ଦରକାର ତାହାର ଏକ ତାଲିକା ନିମ୍ନରେ ଦିଆଯାଉଅଛି ।

| ବିଦ୍ୱେଷର କାରଣ | ଫଳପ୍ରଦ ସମ୍ଭାବ୍ୟ ବ୍ୟବସ୍ଥା |
|---|---|
| ୧ । ଜ୍ଞାନର ଅଭାବ ଓ ବିକୃତ ଦୃଷ୍ଟିକୋଣ । | ୧ । ଶିକ୍ଷା, ପରସ୍ପର ମିଳାମିଶା । |
| ୨ । ଉପଯୋଗୀ ହେବାର ଅକ୍ଷମତା । | ୨ । ଭେଦଭାବବିରୋଧୀର ଆଇନଗତ ଓ ଅନ୍ୟ ଆଦର୍ଶର ସ୍ପଷ୍ଟ ନିର୍ଦ୍ଦେଶ । |
| ୩ । ସ୍ଥିତି ବା ଆସନ ନିମନ୍ତେ ଅଭିଳାଷ ଓ ଆସନର ଅସ୍ଥାୟିତ୍ୱ । | ୩ । ଜୀବନକୁ ଅଧିକ ନିରାପଦ କରିବା ଓ ସମସ୍ତଙ୍କ ପାଇଁ ଅଧିକ ସୁଯୋଗ ପ୍ରଦାନ । |
| ୪ । ଭିତର ଆବେଗ, ଘୃଣାଭାବ ଓ ଶତ୍ରୁତା । | ୪ । ଯେଉଁମାନଙ୍କ ପ୍ରତି ବିଦ୍ୱେଷ ଅଛି, ସେମାନଙ୍କ ନୈରାଶ୍ୟର ହ୍ରାସକରଣ । |

ଏହି ତାଲିକାଟି ଚୂଡ଼ାନ୍ତ ନୁହେ କିମ୍ବା ସୁସ୍ପଷ୍ଟ ଭାବରେ ବିଶେଷଣାତ୍ମକ ବିଭାଗ ନୁହେଁ । କିନ୍ତୁ ଏଥିରୁ ବୁଝାଯିବ ଯେ ଭେଦଭାବର ସମର୍ଥକ ବିଷୟଗୁଡ଼ିକ କେତେ ଜଟିଳ ଓ ସେହି ହେତୁରୁ ବିଭିନ୍ନ ଦିଗରୁ ସମସ୍ୟାର ସମାଧାନ ନିମନ୍ତେ ବିଭିନ୍ନ ପନ୍ଥାର ଆବଶ୍ୟକତା ଅଛି । ବିଶେଷଭାବରେ ଲକ୍ଷ୍ୟ କରିବାର କଥା ଏହି ଯେ ବ୍ୟକ୍ତିଗତ ବିଦ୍ୱେଷର ପ୍ରତିକାର କଲାବେଳେ ମଧ୍ୟ ତାହାଙ୍କପାଖେ ଦିଆଯାଇଥିବା ଅଧିକାଂଶ କୌଶଳର ବ୍ୟକ୍ତିବିଶେଷଙ୍କ ମନୋଭାବ ସଙ୍ଗେ ପ୍ରତ୍ୟକ୍ଷ ସମ୍ପର୍କ ନାହିଁ । ଆମର ଲକ୍ଷ୍ୟ ହେଉଛି, ଏପରି ପରିସ୍ଥିତି ସୃଷ୍ଟି କରିବାକୁ ହେବ ଯେ ସେଥିରେ ତାହାର ପ୍ରତି କୌଣସି ବିକୃତ ବା ଶତ୍ରୁଭାବାପନ୍ନ ମନୋଭାବ ସୃଷ୍ଟି ହେବ ନାହିଁ । ତାହାର ମତକୁ ଖଣ୍ଡନ କରିବାକୁ ଯୁକ୍ତିକଲେ ସେ ମଧ୍ୟ ନିଜର ସମର୍ଥନ ନିମନ୍ତେ ପୁନର୍ବାର ଯୁକ୍ତି କରିବାର ସମ୍ଭାବନା ଅଛି; ତାହାର ଯେଉଁ ବିଶ୍ୱାସ, ସେଥିପାଇଁ ସେ କାରଣ ଖୋଜି ବସିବ । କିନ୍ତୁ ତୁମ୍ଭେ ଯଦି ତାହାର ଜୀବନରେ ଯେଉଁ ଅବସ୍ଥା ହେତୁ ସେହି ବିଶ୍ୱାସ ବା ଧାରଣା ଜନ୍ମିଥିଲା, ତାହାର ପରିବର୍ତ୍ତନ କର ଏବଂ ଅବସ୍ଥାର ଅନ୍ୟ କାରଣ ଦର୍ଶାଇ ପାର, ତେବେ ତାହାର ବିଦ୍ୱେଷଭାବ ହ୍ରାସ ପାଇବାର ଅଧିକ ସମ୍ଭାବନା ଅଛି ।

ଶିକ୍ଷାର ଅର୍ଥ ବ୍ୟକ୍ତି ଓ ଅବସ୍ଥାର ପରିବର୍ତ୍ତନ ଶିକ୍ଷା ଉପରେ ଯେଉଁ ପ୍ରଭାବ ବିସ୍ତାର କରେ ତାହା ମଧ୍ୟ ଶିକ୍ଷାର ଅନ୍ତର୍ଗତ । ଏହି ଅର୍ଥରେ ଆମେ ଏଠାରେ ଶିକ୍ଷା ଶବ୍ଦ ବ୍ୟବହାର କରିବା । ଅତି ସାଧାରଣ ଓ ଆକ୍ଷରିକ ଅର୍ଥରେ ଏହାର ବ୍ୟବହାର କଲେ ଆମେ ବ୍ୟକ୍ତିଗତ ମନୋଭାବ ପ୍ରତି ବିଶେଷ ଦୃଷ୍ଟି ଦେବାର ଆଶଙ୍କା ଅଛି ଏବଂ ଯେଉଁ ସାମାଜିକ ପରିସ୍ଥିତିରେ ସେହି ମନୋଭାବର ଉତ୍ପତ୍ତି ସେଥିପ୍ରତି ଦୃଷ୍ଟି ଦେଇ ନପାରୁ । ଆମ୍ଭେମାନେ ଅକ୍ଳେଶରେ ସ୍ୱୀକାର କରିନେବୁ ଯେ ଯଦି ଭ୍ରାନ୍ତ ଧାରଣାଗୁଡ଼ିକୁ ଦୂର କରିଯାଇ ପାରେ, ଯଦି ଏ ବିଷୟରେ ଅଧିକ ଜ୍ଞାନ ଲାଭ କରିଯାଏ, ଯଦି କ୍ଷମତାସୂଚକ ମନୋଭାବର ପରିବର୍ତ୍ତନ କରିଯାଏ, ତାହାହେଲେ ଆନ୍ତଃସାମ୍ପ୍ରଦାୟିକ ସମ୍ବନ୍ଧ ଉପରେ ନିଶ୍ଚୟ ଏମାନଙ୍କର ପ୍ରଭାବ ପଡ଼ିବ ; ଏହା ଯେ ଆଂଶିକ ଭାବରେ ସତ୍ୟ, ମୁଁ ତାହାର ପ୍ରତିବାଦ କରିବାକୁ ଯାଉନାହିଁ । ମୁଁ ଜୋର ଦେଇ କହିବାକୁ ଚାହେଁ ଯେ ଏଗୁଡ଼ିକୁ ଅନ୍ୟ ସତ୍ୟମାନଙ୍କ ସହିତ ଦେଖିବାର ଆବଶ୍ୟକତା ଅଛି । କେତେକ ଲୋକଙ୍କର ଭ୍ରାନ୍ତ ଧାରଣା ବା ବିଦ୍ୱେଷଭାବ ଥାଇ ମଧ୍ୟ ସେମାନେ ବିଦ୍ୱେଷହୀନ ଭାବରେ କାର୍ଯ୍ୟ କରି ପାରନ୍ତି ; କାରଣ ଯେଉଁ ପରିସ୍ଥିତିରେ ସେମାନେ କାର୍ଯ୍ୟ କରନ୍ତି ତାହା ସେମାନଙ୍କ ଶ୍ରମିକ ସଙ୍ଘର ବା ଚର୍ଚ୍ଚର ବା ବ୍ୟବସାୟୀ ଗୋଷ୍ଠୀର ବା ଆଇନପାଳନକାରୀ ନାଗରିକମାନଙ୍କର ସଭ୍ୟ ହିସାବରେ ବିଭିନ୍ନ ମନୋଭାବ ପ୍ରକାଶ କରିବାରେ ସହାୟକ ହୋଇଥାଏ । କାହାରି ଆଚରଣକୁ ବୁଝି ପରିବର୍ତ୍ତନ କରିବା ପାଇଁ ଅନେକ ପରିସ୍ଥିତିରେ ବିଦ୍ୱେଷବିରୁଦ୍ଧରେ ଶିକ୍ଷାଗତ ବା ଅନ୍ୟ ପ୍ରକାରର ପ୍ରତ୍ୟକ୍ଷ ସଂଗ୍ରାମ କରିବା ଆବଶ୍ୟକ ହୁଏନାହିଁ ; ପରୋକ୍ଷ ଆକ୍ରମଣହିଁ ଆବଶ୍ୟକ ହୋଇଥାଏ । କୌଣସି ସମସ୍ୟା ପ୍ରତି ଦୃଷ୍ଟି ଦେଲା-ବେଳେ ଲୋକେ ଯେଉଁ ସମ୍ପ୍ରଦାୟ ପ୍ରତି ଅନୁଗତ, ସେହି ସମ୍ପ୍ରଦାୟକୁ ଯଦି ପରିବର୍ତ୍ତନ କରିଯାଏ କିମ୍ବା ପରିବେଶ ମଧ୍ୟରେ ପ୍ରଚଳିତ ବିଧିନିଷେଧର ଭାରସାମ୍ୟକୁ ପରିବର୍ତ୍ତନ କରିଯାଏ, ତାହାହେଲେ ବ୍ୟକ୍ତିଗତ ବିଦ୍ୱେଷ ଉପରେ ଆଦୌ ଆକ୍ରମଣ ନକରି ମଧ୍ୟ ସେମାନଙ୍କର ଶିକ୍ଷା ଓ ଆଚରଣ ପ୍ରତି ମନୋଭାବର ପରିବର୍ତ୍ତନ କରିଯାଇ ପାରିବ ।

କେତେକ ପରିମାଣରେ ମନୋଭାବର, ଜ୍ଞାନର (ଏପରିକି ଜ୍ଞାନର ଅଭାବର) ଦଳପ୍ରତି ଆନୁଗତ୍ୟ ସହିତ ଓ ପରିବେଶରେ କାର୍ଯ୍ୟ କରୁଥିବା ସମଗ୍ର ଜଟିଳ ସାମାଜିକ ପ୍ରଭାବ ସହିତ ସମ୍ପର୍କ ରହିଥାଏ । ଉଦାହରଣ ସ୍ୱରୂପ, ଜ୍ଞାନର ଅଭାବ ଉପରେ ଆକ୍ରମଣ କରିବା କେବଳ ଗୋଟିଏ ରୋଗ ଲକ୍ଷଣ ଉପରେ ଆକ୍ରମଣ କରିବା ସଙ୍ଗେ ସମାନ । ଜଣେ ଲୋକ ଅଜ୍ଞ ହୋଇ ପାରେ ; କିନ୍ତୁ ପ୍ରକୃତ ଅବସ୍ଥା ଜାଣିବା ପାଇଁ ସୁବିଧାର ଅଭାବ ତାହାର ଅଜ୍ଞତାର କାରଣ ହୋଇ ନ ପାରେ । ହୁଏତ ନିଜର କାର୍ଯ୍ୟକୁ ସମର୍ଥନ କରିବା ପାଇଁ, (ମିର୍‌ଡାଲଙ୍କ ଭାଷାରେ) 'ଅଜ୍ଞତାର ବିପୁଳ ସୁଯୋଗ' ନେବା ପାଇଁ ସେ ଅଜ୍ଞତା ପ୍ରକାଶ କରେ । ଅଳ୍ପଦିନ ତଳେ ମୁଁ ଜଣେ ବିଖ୍ୟାତ ଓକିଲ, ଆଇନଜ୍ଞ ଓ ଆଇନ ବିଦ୍ୟାଳୟର ଅଧ୍ୟାପକଙ୍କ

ସଙ୍ଗେ କଥାବାର୍ତ୍ତା ହେଉଥିଲି । ସେ ତାଙ୍କ ଅଞ୍ଚଳର ଗୋଷ୍ଠୀସମ୍ପର୍କ ବିଷୟରେ ଅତି ସାଧାରଣ କଥା ମଧ୍ୟ ଜାଣି ନଥିଲେ । ଯେତେବେଳ ଯାଏ ସେ ଏତେ ନିବିଡ଼ ଭାବରେ ସଂପୃକ୍ତ ସମାଜର ଗଠନ ଓ ପ୍ରକୃତ ଅବସ୍ଥା ଜାଣିବା ବିଷୟରେ ଏତେ ଉଦାସୀନ, ସେତେବେଳଯାଏ ତାଙ୍କ ସହିତ ଶିକ୍ଷା ସମ୍ବନ୍ଧରେ ଆଲୋଚନା କରିବାରେ କିଛି ଫଳ ନାହିଁ । ଗୋଟାଏ ଅନୁକୂଳ ପରିବେଶ ମଧ୍ୟରେହିଁ ଶିକ୍ଷା ସମ୍ଭବପର ଏବଂ ଯେଉଁମାନେ ଆନ୍ତଃସାମ୍ପ୍ରଦାୟିକ ଶିକ୍ଷାର ବିସ୍ତାର କାମନା କରନ୍ତି, ସେମାନଙ୍କ ପକ୍ଷରେ ସମଗ୍ର ସାମାଜିକ ସମ୍ବନ୍ଧ ବିଷୟରେ ଚିନ୍ତା କରିବା ଉଚିତ । କାରଣ ସେହି ସମ୍ବନ୍ଧ ମଧ୍ୟରେହିଁ ଶିକ୍ଷା ଦିଆ ଯାଇଥାଏ । ଜ୍ଞାନରେ, ମନୋଭାବରେ ଓ ଆଚରଣରେ ପରିବର୍ତ୍ତନ ଆଣିବାରେ ସେହି ସମ୍ବନ୍ଧ ଅନୁକୂଳ ହୋଇପାରେ ବା ପରିବର୍ତ୍ତନର ପଥକୁ ରୁଦ୍ଧ କରିପାରେ ।

ଏହାକୁ 'ପରୋକ୍ଷ ନୀତି' କୁହା ଯାଇପାରେ । ପ୍ରଥମ ଦୃଷ୍ଟିରେ ମନେହେବ ଯେ ଏହି ନୀତି ନୈରାଶ୍ୟ ବାଦ ଆଡ଼କୁ ଟାଣିନେବ ; କାରଣ ଏହି ନୀତି ଅନୁସାରେ କେବଳ ଜ୍ଞାନର ବିସ୍ତାର ଦ୍ୱାରା ଅର୍ଥାତ୍ ସଂକୀର୍ଣ୍ଣ ଅର୍ଥରେ ବ୍ୟବହୃତ ଶିକ୍ଷା ଦ୍ୱାରା କୌଣସି ପରିବର୍ତ୍ତନ ସାଧନ କରି ହେବ ନାହିଁ । କିନ୍ତୁ ଏହି ନୀତିର ଗୋଟିଏ ଆଶାପ୍ରଦ ଅଂଶ ଅଛି । ଏହି ନୀତି ଅନୁସାରେ ସାମାଜିକ ଶକ୍ତିର ବିଶାଳ ପ୍ରବାହ ଶିକ୍ଷାର ଗତିକୁ ତ୍ୱରାନ୍ୱିତ କରିପାରେ । ଗୋଟାଏ ପରିସ୍ଥିତିରେ ଶିକ୍ଷାଦ୍ୱାରା ଆନ୍ତଃସାମ୍ପ୍ରଦାୟିକ ସମ୍ବନ୍ଧ ଉନ୍ନତ କରିବା ଉଦ୍ୟମ ବିଫଳ ହୋଇପାରେ । ମାତ୍ର ଯେଉଁଠାରେ ଅର୍ଥନୀତି, ଗୋଷ୍ଠୀଗଠନ ବା ଆଇନ ଅନୁକୂଳ ଥିବ, ସେଠାରେ ଉଦ୍ୟମ ସଫଳ ହୋଇପାରେ । ଉଦାହରଣ ସ୍ୱରୂପ, ଶିକ୍ଷା ଶବ୍ଦର ନିଗୂଢ଼ ଅର୍ଥରେ ଅର୍ଥନୈତିକ ପରିସ୍ଥିତିର ପ୍ରତିଘାତ, ବାସଗୃହ ବ୍ୟବସ୍ଥାରେ ମନୋଭାବ ମଧ୍ୟ ଶିକ୍ଷାର ବିଷୟ । ଏହାଦ୍ୱାରା ଏପରି ଅବସ୍ଥା ସୃଷ୍ଟି ହୋଇପାରେ ଯେ ଅଜ୍ଞତାର ସୁଯୋଗ ଊଣା ହୋଇଯିବ ଏବଂ ଅଧିକସଂଖ୍ୟକ ଲୋକ ଏହାକୁ ଗ୍ରହଣ କରିନେବେ ।

ଅନ୍ୟ ପ୍ରକାରରେ କହିବାକୁ ଗଲେ ଶିକ୍ଷାକୁ ସ୍ଥୂଳ ବିଶେଷରେ ଅନ୍ୟର ଅଧୀନ, ପରିବର୍ତ୍ତନଶୀଳ ବିଷୟ ବୋଲି କୁହା ଯାଇପାରେ । ଏହି ଦୃଷ୍ଟିରୁ ଆମେ ପଚାରି ପାରିବା ନାହିଁ—ପ୍ରତ୍ୟକ୍ଷ ଶିକ୍ଷାଗତ ଉଦ୍ୟମଦ୍ୱାରା ଆମ୍ଭେମାନେ ବୃଦ୍ଧିର ଉନ୍ନତିକର ଆଚରଣରେ ପରିବର୍ତ୍ତନ ଆଣି ପାରିବା କି ? କିନ୍ତୁ ଆମ୍ଭେମାନେ ପଚାରି ପାରିବା—ଆଇନରେ, ବାସଗୃହ ବ୍ୟବସ୍ଥାରେ, ଚାକିରି ପାଇବା ସୁବିଧାରେ ପରିବର୍ତ୍ତନ ଦ୍ୱାରା ଶିକ୍ଷା ସମ୍ଭବପର ହେବ କି ? ସମୂହ ପରିସ୍ଥିତି ମଧ୍ୟରେ ଶିକ୍ଷା କାର୍ଯ୍ୟକରି ପୁଣି ଗୋଟିଏ ପରସ୍ପରକାରଣବଦ୍ଧ ପରିବର୍ତ୍ତନଶୀଳ ବିଷୟ ପର୍ଯ୍ୟାୟରେ ପରିଣତ ହୁଏ ।

ଏହି ଦୃଷ୍ଟିରୁ ଜୀବନ ଅତିଶୟ ଜଟିଳ ବୋଧହେବ । କିନ୍ତୁ ଏହା ଯେବେ ଯଥାର୍ଥ ସତ୍ୟ, ତେବେ ଏହାକୁ ଅଗ୍ରାହ୍ୟ କରିବାଦ୍ୱାରା ବିପଦ ବରଣ କରିବାକୁ

ହେବ ; କାରଣ ଆମ୍ଭେମାନେ କେବଳ କେତେକ ଆପାତସହଜ ଅନୁମାନ ଉପରେ ନିର୍ଭର କରି ବୁଝିବାକୁ ଓ ପରିବର୍ତ୍ତନ ଆଣିବାକୁ ଉଦ୍ୟମ କରିଥାଉଁ । ଏହି ସମ୍ପର୍କରେ ଅଜ୍ଞତା ନିଶ୍ଚୟ ଅସୁବିଧାଜନକ ।

## ଗଣତାନ୍ତ୍ରିକ ଶିକ୍ଷାର କେତେକ ନୀତି

ଶିକ୍ଷା କୌଶଳର ବିଭିନ୍ନ ଦିଗ ପରୀକ୍ଷା କରିବା ପୂର୍ବରୁ ଏହି ଆଲୋଚନାରେ ମୁଁ ସତ୍ୟରୂପେ ଧରି ନେଇଥିବା କେତେକ ନୀତିର ଉଲ୍ଲେଖ କରିବା ଉଚିତ ମନେ କରୁଅଛି । ଏହି ନୀତି ଗୁଡ଼ିକ ସୁବିଦିତ ; ମନସ୍ତାତ୍ତ୍ୱିକ ଓ ସମାଜବିଜ୍ଞାନଗତ ପର୍ଯ୍ୟବେକ୍ଷଣ ଉପରେ ପ୍ରତିଷ୍ଠିତ । ତେଣୁ ମୁଁ ସାମାନ୍ୟ ବ୍ୟାଖ୍ୟାସହ ସେ ଗୁଡ଼ିକର ସୂଚନା ଦେଉଅଛି ।

୧ । ଯେଉଁ ପ୍ରଣାଳୀ ସତ୍ୟର ସନ୍ଧାନରେ ସାହାଯ୍ୟ କରେ, ଓ ଆଲୋଚନାରେ ସକ୍ରିୟ ଅଂଶ ଗ୍ରହଣ କରିବାର ସ୍ୱାଧୀନତା ଦିଏ, ସେହି ପ୍ରଣାଳୀର ଶିକ୍ଷା ଦ୍ୱାରା ଶିକ୍ଷାଲବ୍ଧ ଜ୍ଞାନକୁ କାର୍ଯ୍ୟରେ ପରିଣତ କରିବା ଯେତେ ସମ୍ଭବପର, ନିଷ୍କ୍ରିୟ ଜ୍ଞାନ ଆହରଣ ଦ୍ୱାରା ସେତେ ସମ୍ଭବପର ନୁହେଁ । ଏଥିରୁ ସ୍ୱତଃ ବିଶ୍ୱାସ ଜନ୍ମେ ଯେ ସଂଖ୍ୟାଗୁରୁ-ସଂଖ୍ୟାଲଘୁ-ସମ୍ପର୍କ ବିଷୟକୁ ଗୋଟିଏ ସାମାଜିକ ସମସ୍ୟାରୂପେ ଅଧ୍ୟୟନ କଲାବେଳକୁ ଆହୁରି ଅଧିକସଂଖ୍ୟକ ଲୋକ ଆଲୋଚନାର ପରିସରକୁ ଆସିବେ । ଉନ୍ନତି ସାଧନ କରିବାପାଇଁ ଯେଉଁ ସମ୍ପ୍ରଦାୟମାନଙ୍କର କାର୍ଯ୍ୟ ଓ ମୂଲ୍ୟବୋଧର ପରିବର୍ତ୍ତନ ଅବଶ୍ୟମ୍ଭାବୀ, ସେହି ସମ୍ପ୍ରଦାୟମାନେ ଏଥିରେ ଅଂଶଗ୍ରହଣ କରିବା ବାଞ୍ଛନୀୟ । ଆମ ସମାଜର କେତେକ ପରିବର୍ତ୍ତନ ଫଳରେ କେତେକ ଗୋଷ୍ଠୀପକ୍ଷରେ ଅନ୍ତଃସମ୍ପ୍ରଦାୟିକ ଶିକ୍ଷା ସମ୍ଭବପର ହୋଇଅଛି । ଅଳ୍ପ କେତେ ବର୍ଷ ପୂର୍ବେ ଏପରି ହେବାର ସମ୍ଭାବନା ନଥିଲା । ଏହି ପରିବର୍ତ୍ତନ ସର୍ବସାଧାରଣରେ ତର୍କବିତର୍କର ବିଷୟ ହେବାଦ୍ୱାରା ସୁଫଳ ମିଳିପାରେ । କେତେକ ସାମାଜିକ ପରିବର୍ତ୍ତନ ବିଷୟ ପରେ ଆଲୋଚନା କରାଯିବ ।

୨ । ଶିକ୍ଷାଗତ ପରିସ୍ଥିତିରେ ଅନ୍ତର୍ନିହିତ ମୂଲ୍ୟବୋଧ, ସେମାନଙ୍କର ଅଧିକାର ଓ ସୁଯୋଗ ଶିକ୍ଷାର ବିଷୟ ତଥା ଭବିଷ୍ୟତ କାର୍ଯ୍ୟ ଉପରେ ପ୍ରଭାବ ପକାଇଥାଏ । ସେମାନେ ଯଦି ସ୍ୱାଧୀନ ଭାବରେ ପ୍ରଶ୍ନ କରିପାରନ୍ତି, ଅଭିଯୋଗ କରିପାରନ୍ତି ଏପରିକି ବାଦାନୁବାଦ କରି ପାରନ୍ତି ତେବେ ଅନ୍ତତଃ ଅନେକ ଅବସ୍ଥାରେ ସେମାନଙ୍କ ପକ୍ଷରେ ନୂତନ ଭାବ, ନୂତନ ଆଚରଣର ଆଦର୍ଶ ଗ୍ରହଣ କରିବା ଅପେକ୍ଷାକୃତ ସହଜହୁଏ ।

ଯେଉଁ କ୍ଷେତ୍ରରେ କ୍ଷମତାର ପ୍ରାଧାନ୍ୟ ନଥାଏ, ସ୍ୱାଧୀନତା ଥାଏ, ଆତ୍ମାଭିମାନ ନଥାଏ, ସେଠାରେ ସେମାନେ ନିଜର ପୁରାତନ ଦୃଷ୍ଟିକୋଣକୁ ସମର୍ଥନ କରିବାର ବା ଲୁକ୍‌କାୟିତ ଭାବରେ ତାହାକୁ ପୋଷଣ କରିବାର ଆବଶ୍ୟକତା ଅନୁଭବ କରନ୍ତି ନାହିଁ ।

୩ । ଆନ୍ତଃସାମ୍ପ୍ରଦାୟିକ ଶିକ୍ଷାକ୍ଷେତ୍ରରେ ଆଲୋଚ୍ୟ ସମ୍ପ୍ରଦାୟର ଧାରଣା ଗୁରୁତ୍ୱପୂର୍ଣ୍ଣ [୪] । ଯେଉଁ ସମ୍ପ୍ରଦାୟରେ କେହି ଅଂଶ ଗ୍ରହଣ କରୁଥାଏ କିମ୍ବା ଗୋଟାଏ ଧାରଣା କରିବାପାଇଁ ଯେଉଁ ସମ୍ପ୍ରଦାୟର କଳ୍ପନା କରିଥାଏ, ସେହି ସମ୍ପ୍ରଦାୟ ତାହାର ବିଶ୍ୱାସ ଓ କାର୍ଯ୍ୟ ଉପରେ ପ୍ରଭାବ ପକାଇଥାଏ । କୌଶଳ ଦୃଷ୍ଟିରୁ ଏଥିରୁ ଗୋଟିଏ ପ୍ରଶ୍ନ ଉଠେ । ଯେତେବେଳେ କୌଣସି ଲୋକ ଆନ୍ତଃସାମ୍ପ୍ରଦାୟିକ କାର୍ଯ୍ୟରେ ଲିପ୍ତ ରହିବାପରେ ଗୋଟିଏ ବ୍ୟବସାୟିକ ସମ୍ପ୍ରଦାୟ, ଗୋଷ୍ଠୀ ବା ପରିବାରକୁ ଗୋଟାଏ ଭିନ୍ନ ମାନଦଣ୍ଡ (ଆଦର୍ଶ) ନେଇ ଫେରିଆସେ, ସେତେବେଳେ ସ୍କୁଲର ଗୋଟିଏ ଶ୍ରେଣୀ, ଚର୍ଚ୍ଚ ଆଲୋଚନା ଚକ୍ର ବା ସମଗ୍ର ଗୋଷ୍ଠୀ କପରି ଆମର ଆଲୋଚ୍ୟ ସମ୍ପ୍ରଦାୟ ହୋଇ ପାରିବ ? ବୋଧହୁଏ ଏ ବିଷୟରେ ଜନତାର ମାଧ୍ୟମ ସର୍ବାପେକ୍ଷା ଅଧିକ କାର୍ଯ୍ୟକାରୀ ହୋଇ ପାରିବ । ଗଣ୍ଭୀର ଅଭିଜ୍ଞତା ଫଳରେ ଯେଉଁ ସବୁ ଗଣତାନ୍ତ୍ରିକ ମନୋଭାବ ସୃଷ୍ଟି ହୋଇଅଛି, ସେଗୁଡ଼ିକୁ ସେମାନେ ପୁନର୍ବାର ଦୃଢ଼ୀଭୂତ କରି ପାରିବେ । ଏହି ମାଧ୍ୟମ ଦ୍ୱାରା ନୂତନରୂପେ ସେହି ସବୁ ମନୋଭାବ ସୃଷ୍ଟି ହୋଇ ପାରିବ ନାହିଁ । (ଏହି ମତଟି ପରୀକ୍ଷିତ ନୁହେଁ, ଅନୁମାନ ମାତ୍ର) ସାଧାରଣତଃ ଆଲୋଚ୍ୟ-ସମ୍ପ୍ରଦାୟ-ମତବାଦରୁ ସୂଚନାମିଳେ ଯେ ଶିକ୍ଷାରୁ ଅଭିଜ୍ଞତା ଲାଭ କଲାପରେ ସେହି ଅନୁସାରେ କାର୍ଯ୍ୟ ଚଳାଇବାକୁ ହେବ । ଯଦି ଉପଯୁକ୍ତ ବ୍ୟକ୍ତିମାନଙ୍କୁ ଆଲୋଚ୍ୟ ସମ୍ପ୍ରଦାୟମାନେ ବିଭିନ୍ନ ଦଗରେ ଆକର୍ଷଣ କରନ୍ତି ତେବେ କେତେକ ବକ୍ତୃତା, ସ୍କୁଲରେ ଏହି ବିଷୟରେ କିଛିପାଠ, ମନୋଭାବ ଓ କାର୍ଯ୍ୟରେ ପରିବର୍ତ୍ତନ ଆଣିବାକୁ ଦୃଢ଼ ପ୍ରତିଜ୍ଞ କେତେକ ସମାଜ ସହିତ ସମ୍ପର୍କସ୍ଥାପନ ଦ୍ୱାରା କୌଣସି ଫଳ ହେବନାହିଁ ।

୪ । ଦେଶ କୈନ୍ଦ୍ରିକତା—ନିଜ ସମ୍ପ୍ରଦାୟର ମୂଲ୍ୟବୋଧ ଓ ଆଦର୍ଶ ଅନ୍ୟମାନଙ୍କ ଆଦର୍ଶ ଓ ମୂଲ୍ୟବୋଧ ଠାରୁ ଶ୍ରେଷ୍ଠ ଏହି ବିଶ୍ୱାସ ହେଉଛି, ପ୍ରକୃତିଗତ

---

[୪] ରବର୍ଟ କେ. ମର୍ଟନଙ୍କକୃତ ଓ ନିଉୟର୍କର ଫ୍ରି ପ୍ରେସ ଅଫ୍ ଗ୍ଲେଙ୍କୋଙ୍କ ଦ୍ୱାରା ୧୯୫୭ ମସିହାରେ ପ୍ରକାଶିତ 'ସୋସିଆଲ ଥିଓରି ଏଣ୍ଡ ସୋସିଆଲ ଷ୍ଟ୍ରାକ୍‌ଚର' ପୁସ୍ତକର ଅଷ୍ଟମ ଓ ନବମ ଅଧ୍ୟାୟ ଦେଖ ।

ସାମାଜିକୀକରଣର ସ୍ୱାଭାବିକ ପରିଣତି । କିନ୍ତୁ ଲୋକମାନଙ୍କର ବିଭିନ୍ନ ମୂଲ୍ୟବୋଧ ରହିପାରେ ; ଜୀବନ-ଯାତ୍ରା ପ୍ରଣାଳୀ ଭିନ୍ନ ହୋଇପାରେ ; ଧର୍ମ ଓ ଗୋଷ୍ଠୀ ଭିନ୍ନ ହୋଇପାରେ—ଏପ୍ରକାର ଧାରଣାରହିଁ ମଧ୍ୟ ସାମାଜିକୀକରଣ ସମ୍ଭବପର । ସମ୍ପ୍ରଦାୟ-ସମ୍ପ୍ରଦାୟ ମଧ୍ୟରେ ଶତ୍ରୁତା ଯେପରି ହ୍ରାସପାଏ, ସେଥିପାଇଁ ଉଦ୍ୟମ କରିବାକୁ ହେଲେ ଦ୍ୱିତୀୟ ଧାରଣାଟି ପୋଷଣ କରିବା ଉଚିତ । କିନ୍ତୁ ଏହା କରିବାକୁ ଗଲେ ଗୋଟିଏ ସମସ୍ୟା ଦେଖାଦିଏ । କେତେକ ସମାଜବିଜ୍ଞାନୀ ଓ ନୃତତ୍ତ୍ୱବିତ୍ କହନ୍ତି ଯେ ଦେଶ କେନ୍ଦ୍ରିକତାର ହ୍ରାସ କରିବାଦ୍ୱାରା ଗୋଟାଏ ପ୍ରବଳ ଆପେକ୍ଷିକତାର ଉଦ୍ଭବ ହୁଏ । ଏଥିରେ ପ୍ରତ୍ୟେକ ଲୋକ ନିଜକୁ ନୈତିକତା ବିଷୟରେ ନିଜର ଭାଗ୍ୟବିଧାତା ମନେ କରେ । ଏହାର ଫଳ ହେବ ନୈତିକ ଅରାଜକତା । ଯିଏଯା ଖୁସି ଯାହାକୁ ଠିକ୍ ବୋଲି କହିବେ ତାହାହିଁ ହେବ ଠିକ୍ । ଏପରିସ୍ଥଳେ କୌଣସି ମୂଲ୍ୟବୋଧ ବା କାର୍ଯ୍ୟ ଅନ୍ୟଠାରୁ ଭଲ ଏହା କହିବାପାଇଁ କୌଣସି ଦୃଢ଼ ଯୁକ୍ତି ରହିବ ନାହିଁ । ସହିଷ୍ଣୁତାର (ସହନଶୀଳତାର) ଅଭିବୃଦ୍ଧି ଓ ଦେଶ କେନ୍ଦ୍ରିକତାର ହ୍ରାସପାଇଁ ଉଦ୍ୟମର ଫଳସ୍ୱରୂପ ଏଭଳି ଏକ ଚରମ ଆପେକ୍ଷିକତା ସମ୍ଭବପର ହେଲେ ମଧ୍ୟ ମୋ ମତରେ ଏହା ଘଟିବାର ସମ୍ଭାବନା ନାହିଁ । ଅସହିଷ୍ଣୁତା ଓ ଦୃଢ଼ ଚରମବାଦର ବୃଦ୍ଧି ଫଳରେ ଉଦ୍ଭୁତ ସଂଘର୍ଷ ପରି ଏହା ବିପଜ୍ଜନକ ବୋଲି ମନେ ହୁଏନାହିଁ । ଚରମବାଦରେ ପରସ୍ପର ବିରୋଧର ସ୍ଥାନ ଥିବାରୁ ଏହା ସବୁ କ୍ଷେତ୍ରରେ ପୂର୍ଣ୍ଣରୂପେ ଚରମ ହୋଇ ନପାରେ । ଏହି ବିଚିତ୍ର ପରିବର୍ତ୍ତନଶୀଳ ଜଗତରେ ଯଦି ପ୍ରତ୍ୟେକ ଲୋକ କହେ—ମୋର ମୂଲ୍ୟବୋଧ ଓ ମୋର ପ୍ରଥମ ଅନୁମାନ ସମ୍ପୂର୍ଣ୍ଣ ଚରମ ; ତୁମ୍ଭର ମୂଲ୍ୟବୋଧ ଓ ପ୍ରଥମ ଅନୁମାନ ଯେ କେତେ ଆପେକ୍ଷିକ ତାହା ମୁଁ ସହଜରେ ଜାଣି ପାରୁଅଛି । ଏପରି ହେଲେ ଆମର ନୈତିକ ଭିତ୍ତିର ଦୃଢ଼ତା ଆଦୌ ରହିବ ନାହିଁ । ଭଲ ହେଉ ବା ମନ୍ଦ ହେଉ, ଚିନ୍ତା ସହକାରେ ବିଭିନ୍ନ ମୂଲ୍ୟ ବୋଧ ବିଶିଷ୍ଟ ସମ୍ପ୍ରଦାୟମାନଙ୍କ ସହିତ ଆପୋଷ ମିଳାମିଶା କରିବା ଆଧୁନିକ ମାନବ ଜୀବନର ଏକ ଅପରିହାର୍ଯ୍ୟ ଅଙ୍ଗ । ତେଣୁ ପ୍ରତ୍ୟେକ ଲୋକର ମୂଲ୍ୟବୋଧର ନିୟମକୁ ଚରମ ଓ ଅପରିବର୍ତ୍ତନୀୟ ବୋଲି ଗ୍ରହଣ କରିବା ଦୁଷ୍କର ହେଲେହେଁ ପରିସ୍ଥିତିକୁ ଭିତ୍ତିକରି ବିଭିନ୍ନ ଆପେକ୍ଷିକ ଗୁଣବିଶିଷ୍ଟ ମାନଦଣ୍ଡ ଓ ଆଚରଣରୁ ସାମାନ୍ୟ ସହାନୁଭୂତି ସହକାରେ ମୂଲ୍ୟବୋଧ ନିର୍ବାଚନ କରିବାର ଆବଶ୍ୟକତା ରହିଅଛି । ପୁନଶ୍ଚ ଆମ୍ଭମାନଙ୍କ ମଧ୍ୟରୁ କେହି ଜଣେ ହେଲେ ମାନବଜୀବନରେ ଯାହା ଚରମ ଓ ପରମ, ତାହାର କଳ୍ପନା କରି କାର୍ଯ୍ୟରେ ପରିଣତ କରିବାର ଉଦ୍ୟମରେ ସମ୍ପୂର୍ଣ୍ଣ ସଫଳ ହୋଇ ପାରିନାହିଁ । ଏହି ଧାରଣାକୁ ହୃଦୟରେ ରଖି ସେହି ଦିଗରେ ଅଗ୍ରସର ହେବା ଆମ୍ଭମାନଙ୍କ ପକ୍ଷରେ ସହାୟକ ହୋଇପାରେ ।

# କୌଶଳ ସହିତ ସାମାଜିକ ସ୍ତରୀକରଣର ସମ୍ବନ୍ଧ

ସମାଜବିଜ୍ଞାନ ଦୃଷ୍ଟିରୁ କୌଣସି ସାମାଜିକ ସମସ୍ୟାର ହ୍ରାସ ବା ସମାଧାନ ଦିଗରେ ଉଦ୍ୟମ ଫଳପ୍ରଦ ହେବାପାଇଁ ଏହାର ପୂର୍ବାପର ଘଟନା ସହିତ ସମ୍ପର୍କ ରହିବା ବାଞ୍ଛନୀୟ । ଏହିଠାରୁ ଆରମ୍ଭ କରି ପରିବର୍ତ୍ତନଶୀଳତା ଉପରେ ପୂର୍ବାପର ସାମାଜିକ ଘଟନା କିପରି ପ୍ରଭାବ ପକାଏ, ତାହା ଜାଣିବାକୁ ଉଦ୍ୟମ କରି ପାରିବା । ସାମାଜିକ ସ୍ତରୀକରଣ ବିଷୟକ ଗବେଷଣାରୁ କେତେ ଗୁଡ଼ିଏ ପ୍ରଶ୍ନର ଉଦୟ ହୁଏ । ସାମାଜିକ ଶ୍ରେଣୀମାନଙ୍କ ମଧ୍ୟରେ ବିଦ୍ୱେଷ ଓ ଭେଦଭାବ ପ୍ରବଣତାର ଭେଦ କେତେ ଦୂର ? ଶ୍ରେଣୀ ଅନୁସାରେ ଏହି ଯେଉଁ ବିଭେଦ ପରିଲକ୍ଷିତ ହୁଏ, ତାହା ମନୋଭାବ ସଂକ୍ରାନ୍ତ ବିଭେଦର ଫଳ କି (ଯଥା, ଗୋଟିଏ ସମ୍ପ୍ରଦାୟରେ ଅନ୍ୟ ସମ୍ପ୍ରଦାୟଠାରୁ କ୍ଷମତାଶାଳୀ ବ୍ୟକ୍ତିଙ୍କର ସଂଖ୍ୟାଧିକ୍ୟ) ? ଅଥବା ଏହି ବିଭେଦର ମୂଳରେ ମୁଖ୍ୟତଃ ସାମାଜିକ ପରିସ୍ଥିତି ବିଦ୍ୟମାନ ? ମନୋଭାବ ଛଡ଼ା ଆଉ କେଉଁ କେଉଁ ଅବସ୍ଥା ବିଭିନ୍ନ ଶ୍ରେଣୀକୁ ଭେଦଭାବପୂର୍ଣ୍ଣ କାର୍ଯ୍ୟ କରିବାକୁ ଉତ୍ସାହିତ କରେ ବା ବାରଣ କରେ ? ଆନ୍ତଃସାମ୍ପ୍ରଦାୟିକ ବିଶ୍ୱାସ ଓ ଆଚରଣରେ ଥିବା ବିଭେଦ ମୁଖତଃ ଉପକୃଷ୍ଟିଗତ ପ୍ରଭେଦ (ବିଭିନ୍ନ ଶ୍ରେଣୀର ପିଲାମାନେ ଯେଉଁ ସାମାଜିକ ଆଦର୍ଶ ଓ ମୂଲ୍ୟବୋଧ ଶିକ୍ଷା କରନ୍ତି ତନ୍ମଧ୍ୟରେ ଥିବା ବିଭେଦ) ଉପରେ ନିର୍ଭର କରେ କି ? ଅଥବା ସମାଜ ସଂଗଠନର ବିଭିନ୍ନ ପରିସ୍ଥିତିଜନିତ କର୍ଷଣ ଓ ସଂକ୍ରୋଷ ଭିତରେ ବିଭେଦ ହେତୁରୁ ଏହି ବିଭେଦର ଉତ୍ପତ୍ତି ହୁଏ କି ?

ବର୍ତ୍ତମାନ ଆମ୍ଭେମାନେ ଏହି ସବୁ ପ୍ରଶ୍ନର ଉତ୍ତର ଯଥାର୍ଥ ରୂପେ ଦେଇ ପାରିବା ନାହିଁ । ସମାଜସଂଗଠନରେ ଯେଉଁ ଦ୍ରୁତ ପରିବର୍ତ୍ତନ ଘଟୁଅଛି, ସେଥିରେ ପଡ଼ି ବିଭିନ୍ନ ସମ୍ପ୍ରଦାୟ ପରସ୍ପର ପ୍ରତି ଶତ୍ରୁତା ପୋଷଣ କରିବା ସହଜ ବୋଲି ଆମ୍ଭେମାନେ ଜାଣୁ । ଆମେରିକାର ଦକ୍ଷିଣାଞ୍ଚଳର ଯେଉଁ ଅଂଶରେ ଅର୍ଥନୈତିକ ଉନ୍ନତି ନାହିଁ ଓ ଜନସଂଖ୍ୟା ହ୍ରାସ ପାଉଅଛି, ସେହି ଅଂଶରେହିଁ ପୃଥକ୍‌କରଣ ବିଲୋପର ବିରୋଧ ପ୍ରବଳଭାବରେ ଦେଖାଯାଏ । ଯେଉଁ ରାଜନୈତିକ ଆନ୍ଦୋଳନ ଅନ୍ୟ ସମ୍ପ୍ରଦାୟମାନଙ୍କ ପ୍ରତି ଶତ୍ରୁତା ଉପରେ ପ୍ରାଧାନ୍ୟ ଦିଏ, ତାହା ଏକଶ୍ରେଣୀର ଲୋକଙ୍କ ମଧ୍ୟରେ ପ୍ରାଧାନ୍ୟ ବିସ୍ତାର କରେ । ଏମାନଙ୍କର ଜୀବିକା ଓ ଜୀବନ ଯାତ୍ରା ପ୍ରଣାଳୀ ସାମାଜିକ ପରିବର୍ତ୍ତନ ଫଳରେ ବିଶେଷ ଭାବରେ କ୍ଷତିଗ୍ରସ୍ତ ହୋଇଅଛି । ଉଦାହରଣ ସ୍ୱରୂପ ସ୍ୱୟଂକ୍ରିୟ ଯନ୍ତ୍ରର ପ୍ରଚଳନ ଫଳରେ ଯେଉଁ ଶ୍ରମିକମାନଙ୍କର କର୍ମଚ୍ୟୁତିର ଆଶଙ୍କା ଅଛି କିମ୍ବା ସମୟର ଗତି ଭଲ ଆଡ଼କୁ ହେଉ ବା ମନ୍ଦ ଆଡ଼କୁ

ହେବ ଯେଉଁ କ୍ଷୁଦ୍ର ବ୍ୟବସାୟୀମାନଙ୍କର ଭବିଷ୍ୟତ ଅନ୍ଧକାର ସମ୍ଭବ ସେମାନଙ୍କ ମଧ୍ୟରେ ଏହା ବିଶେଷ ପ୍ରାଧାନ୍ୟ ବିସ୍ତାର କରିଅଛି [୫]।

ଯେଉଁ ସଂପ୍ରଦାୟମାନେ ସର୍ବାପେକ୍ଷା ଅଧିକ ଗୃପ ସନ୍ଧ୍ୟ କରୁଅଛନ୍ତି, ଠିକ୍ ସେହି ସଂପ୍ରଦାୟମାନଙ୍କର ଲୋକେ ଆନ୍ତଃସାଂପ୍ରଦାୟିକ ଶତ୍ରୁତା ବିଶେଷଭାବରେ ପ୍ରକାଶ କରିବାର ଆଶଙ୍କା ଅଛି। କୌଣସି ଶିକ୍ଷାଗତ ଉଦ୍ୟମ ସେମାନଙ୍କୁ ସ୍ଥିର

---

[୫] ଏହି ବିଷୟରେ ଅନେକ ପ୍ରବନ୍ଧ ଲେଖା ଯାଇଅଛି। ଯଥା:—ଆମେରିକାନ ସୋସିଓଲଜିକାଲ ରିଭ୍ୟୁ ପତ୍ରିକାର ୧୯୫୯ ମସିହା ଅଗଷ୍ଟ ସଂଖ୍ୟାର ୪୮୨-୫୦୧ପୃଷ୍ଠାରେ ପ୍ରକାଶିତ ଏସ୍. ଏମ୍. ଲିପସେଟଙ୍କର 'ଡେମୋକ୍ରେସି ଏଣ୍ଡ ଓ୍ୟାର୍କିଂ-କ୍ଲାସ ଅଥରିଟେରିଆନିଜିମ୍' ପ୍ରବନ୍ଧ ; ଆମେରିକାନ ଜର୍ଣ୍ଣାଲ ଅଫ୍ ସୋସିଓଲଜି ପତ୍ରିକାର ୧୯୫୮ ମସିହା ନଭେମ୍ବର ସଂଖ୍ୟାର ୨୭୦-୨୮୧ ପୃଷ୍ଠାରେ ପ୍ରକାଶିତ ମାର୍ଟିନ୍ ଟ୍ରାଓ'ଙ୍କ ଲିଖିତ 'ସ୍ମଲ ବିଜିନେସ୍‌ମ୍ୟାନ, ପଲିଟିକାଲ ଟଲେରେନ୍ସ ଏଣ୍ଡ ସପୋର୍ଟ ଫର ଦ ମେକାର୍ଥି' ପ୍ରବନ୍ଧ ; ସୋସିଆଲ ପ୍ରୋବ୍ଲେମ୍ସ ପତ୍ରିକାର ୧୯୬୩ ମସିହା ବସନ୍ତ ସଂଖ୍ୟାର ୩୦୩-୩୩୪ପୃଷ୍ଠାରେ ପ୍ରକାଶିତ ଓ ଆଲବର୍ଟ କେ. କୋହେନ ଓ ହାରଲ୍ଡ୍ ଏମ୍. ହଜେଜଙ୍କ ଲିଖିତ 'କାରେକ୍ଟେରିଷ୍ଟିକସ୍ ଅଫ୍ ଦ ଲୋୟାର ବ୍ଲୁ-କଲାର କ୍ଲାସ ପ୍ରବନ୍ଧ ; ଜର୍ଣ୍ଣାଲ ଅଫ୍ ଆବ୍ନୋରମାଲ ଏଣ୍ଡ ସୋସିଆଲ ସାଇକୋଲୋଜି ପତ୍ରିକାର ୧୯୫୯ ମସିହା ଜୁଲାଇ ସଂଖ୍ୟା ୨୮-୩୬ପୃଷ୍ଠାରେ ପ୍ରକାଶିତ ଓ ଟମାସ ଏଫ୍. ପେଟିଗ୍ରୁଙ୍କ ଦ୍ୱାରା ଲିଖିତ 'ରେଜିଓନାଲ ଡିଫେରେନ୍ସ ଇନ୍ ଏଣ୍ଟି-ନିଗ୍ରୋ ପ୍ରେଜୁଡ଼ିସ୍' ପ୍ରବନ୍ଧ ; ଆମେରିକାନ ଜର୍ଣ୍ଣାଲ ଅଫ୍ ସୋସିଆଲଜି ପତ୍ରିକାର ୧୯୫୯ ମସିହାର ନଭେମ୍ବର ସଂଖ୍ୟାରେ ୨୫୮-୨୬୪ ପୃଷ୍ଠାରେ ପ୍ରକାଶିତ ଓ ଫ୍ରେଡ୍ ବି. ସିଲ୍‌ଭରଷ୍ଟୋନ ଓ ମେଲଭିନ ସିମାନଙ୍କ ଲିଖିତ ସୋସିଆଲ ମୋବିଲିଟି ଏଣ୍ଡ ପ୍ରେଜୁଡ଼ିସ୍' ପ୍ରବନ୍ଧ ; ଆମେରିକାନ ଜର୍ଣ୍ଣାଲ ଅଫ୍ ସୋସିଓଲଜି ପତ୍ରିକାର ୧୯୫୭ ମସିହା ସେପ୍ଟେମ୍ବର ସଂଖ୍ୟାର ୧୯୦-୧୯୬ ପୃଷ୍ଠାରେ ପ୍ରକାଶିତ ଓ ଫ୍ରାଙ୍କ ଆର. ଓ୍ୱେଷ୍ଟି ଓ ମାରଗାରେଟ ଏଲ. ଓ୍ୱେଷ୍ଟିଙ୍କ ଲିଖିତ 'ଦ ସୋସିଆଲ ଡିଷ୍ଟାନସ୍ ପିରାମିଡ଼ ରିଲେସନସିପ୍ ବିଟୱିନ୍ କାଷ୍ଟ ଏଣ୍ଡ କ୍ଲାସ' ପ୍ରବନ୍ଧ ଦେଖ।

କରିବାର ଆଶା ଅତି ଅଳ୍ପ । ବର୍ତ୍ତିମାନ ଯେଉଁମାନେ ଶିକ୍ଷାଲାଭ କରିବାକୁ ଇଚ୍ଛୁକ ସେମାନଙ୍କୁ ଦିଆଯିବା ଶିକ୍ଷା କୌଶଳ ଦୃଷ୍ଟିରୁ ଗୁରୁତ୍ୱପୂର୍ଣ୍ଣ ବହୁ ଲୋକଙ୍କ ନିକଟରେ ପହଞ୍ଚି ପାରେନାହିଁ । ଇଟାଲିର ଗୋଟିଏ ସହରର ମେୟରଙ୍କ ବିଷୟରେ ଗୋଟିଏ ଗଳ୍ପ ଅଛି । ଉକ୍ତ ଗଳ୍ପଟି ଉପର୍ଯ୍ୟୁକ୍ତ ମତର ସମର୍ଥନ କରେ ।

ଲୋକେ ସାକ୍ଷର ନ ହେବାର ଦେଖି ଉକ୍ତ ମେୟର ଚିନ୍ତିତ ହୋଇ ପଡ଼ିଲେ । ସେ ଗୋଟିଏ ପ୍ରକାଣ୍ଡ ଉଦ୍ୟମ କଲେ । ସହରଯାକ କାନ୍ଥରେ ସେ ଖୋଳାଇ ଦେଲେ, "ଆଉ ଡେରି କରନାହିଁ ; ପାଠ ପଢ ।" ଏହାର ଫଳ କିଛି ହେଲାନାହିଁ । ଗୀର୍ଜାରେ ଶ୍ରୋତାମାନଙ୍କ ବସିବାସ୍ଥାନ ଶୂନ୍ୟ ପଡ଼ିଲା । ତେଣୁ ଧର୍ମଯାଜକଙ୍କ ଉପଦେଶର କିଛି ମୂଲ୍ୟ ରହିଲା ନାହିଁ । ମେର୍ଡ଼ନ କହୁଅଛନ୍ତି ; " 'ସାମ୍ପ୍ରଦାୟିକ ଆତ୍ମକଥନ ଓ ବ୍ୟକ୍ତିଗତ ସମାଧାନ'—ଏ ଦୁଇଟି ମହାଭ୍ରମ ଅର୍ଥାତ୍ ଗଣତନ୍ତ୍ରରେ ବିଶ୍ୱାସ କରୁଥିବା ଲୋକମାନଙ୍କ ମଧ୍ୟରେ କଥାବାର୍ତ୍ତା ଓ ସେମାନେ କିଛି କରିଛନ୍ତି ବୋଲି ବିଶ୍ୱାସ କରିବା ଗୋଟିଏ ଗୋଟିଏ ବଡ଼ ବିପଦ । ଏହି ହେତୁରୁ ଯେଉଁମାନେ ବିଦ୍ୱେଷ ଓ ଭେଦଭାବର ହ୍ରାସ ବିଷୟରେ ଆଗ୍ରହୀ, ସେମାନଙ୍କ ଉଦ୍ୟମର କେତେକାଂଶ ଅନ୍ୟ ଦିଗରେ ବ୍ୟୟିତ ହେବା ଉଚିତ । ସେମାନଙ୍କର କର୍ତ୍ତବ୍ୟ ହେଉଛି—ମୁଖ୍ୟ ସମ୍ପ୍ରଦାୟରେ ଯେଉଁମାନେ ବିଶେଷ ସ୍ୱୀପ ଭୋଗୁଅଛନ୍ତି, ସେମାନଙ୍କୁ ସମାଜ ସଂଗଠନରେ ନୂତନ ସ୍ଥାନରେ ଅବସ୍ଥାପିତ କରିବା । ଯେତେବେଳେ ସେମାନଙ୍କର କେତେକ ଆଶଙ୍କା ଦୂରୀଭୂତ ହୋଇଯିବ, ଜୀବନ ସେମାନଙ୍କ ପକ୍ଷରେ ସମ୍ମାନଜନକ ଓ ନିରାପଦ ହେବ, କେବଳ ସେତିକିବେଳେ ତିକ୍ତଅନୁଭୂତିପୂର୍ଣ୍ଣ ନୈରାଶ୍ୟମୟ ଜୀବନଯାପନ କରୁଥିବା ଲୋକେ ପରିବର୍ତ୍ତନ ପାଇଁ ପ୍ରସ୍ତୁତ ହେବେ ।

ସ୍ୱୀପର ହ୍ରାସ ଦ୍ୱାରା ସମ୍ପ୍ରଦାୟ ସମ୍ପ୍ରଦାୟ ମଧ୍ୟରେ ଥିବା ଶତ୍ରୁତାର ହ୍ରାସ କରିବା ନିମନ୍ତେ ଗୋଟିଏ ପ୍ରଧାନ ଉପାୟ ହେଉଛି, ସେମାନଙ୍କ ଆଶାର ବୃଦ୍ଧି କରିବା । ଯେତେବେଳେ କୌଣସି ସମ୍ପ୍ରଦାୟର ଲୋକେ ଦେଖନ୍ତି ଯେ ଦୁର୍ଦ୍ଦଶାରୁ ସେମାନଙ୍କର ମୁକ୍ତିର ଉପାୟ ନାହିଁ ଓ ସେମାନେ ଏକାନ୍ତ ଅସହାୟ ହୋଇ ପଡ଼ନ୍ତି ସେତେବେଳେ ସେମାନେ ଯହିଁରୁ ଦୁଃଖର ଉପଶମ ଆଶା କରନ୍ତି ଓ ଯାହାକୁ ଅର୍ଥପୂର୍ଣ୍ଣ ମନେକରନ୍ତି ତାହାକୁ ଗ୍ରହଣ କରି ନେବାକୁ ବସନ୍ତି । ସେତେବେଳେ ସେମାନେ ଦୃଢ଼ବିଶ୍ୱାସୀ ହୋଇଯାଆନ୍ତି । ସେମାନଙ୍କର ବିଶ୍ୱାସ ଜନ୍ମେ ଯେ ସେମାନଙ୍କର ଗୋଷ୍ଠୀ, ସେମାନଙ୍କର ଧର୍ମ, ସେମାନଙ୍କର ଜାତି ଅନ୍ୟମାନଙ୍କ ଠାରୁ ଉଚ୍ଚତର । ଗୋଟିଏ ପ୍ରାଥମିକ କାର୍ଯ୍ୟ ହେଉଛି, ସମସ୍ୟାର ସମ୍ମୁଖୀନ ହେବାପାଇଁ ସେମାନଙ୍କୁ ବିକଳ୍ପ-ପନ୍ଥା ଦେଖାଇଦେବା । ଏପରି ଏକ ପରିବେଶ ସୃଷ୍ଟି କରିବାକୁ

ହେବ ଯେ ରାଜନୀତିରେ ସେମାନଙ୍କ କଥାର ମୂଲ୍ୟ ରହିବ, ସରକାରରେ ନିରାପତ୍ତା ରହିବ, କାର୍ଯ୍ୟକ୍ଷେତ୍ରରେ ସେମାନଙ୍କର କିଛି କହିବାର ଅଧିକାର ରହିବ, ସେମାନେ ନିଜ ସନ୍ତାନମାନଙ୍କ ପାଇଁ ଅଧିକ ସୁବିଧାର ଆଶା ଦେଖି ପାରିବେ, ଶିକ୍ଷାଲାଭ ନିମନ୍ତେ କ୍ଷେତ୍ର ସେମାନଙ୍କ ପାଇଁ ଉନ୍ମୁକ୍ତ ରହିବ । ତାହାହେଲେ ସେମାନଙ୍କର ଗୋଷ୍ଠୀ-ସମ୍ପୃକ୍ତ ବିଷୟରେ ନୂତନ ଧାରଣା ସୃଷ୍ଟି ହୋଇ ପାରିବ ।

ଠିକ୍ ଏହି ନୀତିଗୁଡ଼ିକ ସଂଖ୍ୟାଲଘୁ ସମ୍ପ୍ରଦାୟର ବ୍ୟକ୍ତିବିଶେଷଙ୍କ ପ୍ରତି ପ୍ରଯୁଜ୍ୟ । ସେମାନଙ୍କର ଶତ୍ରୁତା ଓ ବିଦ୍ୱେଷ ସାଧାରଣତଃ ଅତି ଗଭୀର । ପ୍ରକୃତ ଘଟନା ଓ ନୀତି ସହିତ ସେମାନଙ୍କୁ ପରିଚିତ କରାଇବାକୁ ହେଲେ ଗଣତାନ୍ତ୍ରିକ ସାମ୍ପ୍ରଦାୟିକ ସମ୍ପର୍କ ବିଷୟରେ ସେମାନଙ୍କୁ ପ୍ରେରଣା ଦେବାକୁ ହେଲେ ଏପରି ଅବସ୍ଥା ସୃଷ୍ଟି କରିବାକୁ ହେବ ଯେପରିକି ସେମାନଙ୍କର ଆଶାର ସଞ୍ଚାର ହେବ । ଉଦାହରଣ ସ୍ୱରୂପ ଆମେରିକାର ନିଗ୍ରୋମାନେ ବୋଧହୁଏ ଅଧିକ କ୍ଷମତାଲାଭପ୍ରୟାସୀ; ଶ୍ୱେତାଙ୍ଗମାନେ ଯେତେ ନାଗରିକ ସ୍ୱାଧୀନତାର ସମର୍ଥକ ଏମାନେ ସେତେ ନୁହନ୍ତି । କେବଳ ଅକ୍ଷର ଶିକ୍ଷା ଦ୍ୱାରା ଅବସ୍ଥାର ବିଶେଷ କିଛି ପରିବର୍ତ୍ତନ ହେବନାହିଁ । ଶିକ୍ଷାଦ୍ୱାରା ଯେଉଁ ଅନୁଭୂତି ପ୍ରବଣତା ଲବ୍ଧହୁଏ, ନିଗ୍ରୋମାନଙ୍କର ତାହା ଅସିଲେ ପରିବର୍ତ୍ତନ ହୋଇ ପାରିବ । ଅର୍ଥାତ୍ ଜୀବନରେ ଉନ୍ନତିର ଆଶା ଅଛି । ତେଣୁ ହୃଦୟରେ ନୂତନ ଧାରଣା ଓ ନୂତନ ମନୋଭାବ ପୋଷଣ କଲେ ପରିବର୍ତ୍ତନ ଆସି ପାରିବ ।

ଏହି ମନ୍ତବ୍ୟରୁ କେହି ଯେପରି ମନେ ନକରନ୍ତି ଯେ କେବଳ ସୁବିଧାହୀନ ଲୋକଙ୍କ ପ୍ରତି ବିଦ୍ୱେଷ ଓ ଭେଦଭାବ ଦେଖାଯାଏ । ସାଧାରଣତଃ କ୍ଷମତାଶାଳୀ ଓ ସୁପ୍ରତିଷ୍ଠିତ ଲୋକେ ଭେଦଭାବର ଅବସ୍ଥାନକୁ ସମର୍ଥନ କରନ୍ତି । ସେହିମାନେ ସଂଖ୍ୟାଲଘୁମାନଙ୍କ ବିଷୟରେ ଭଦ୍ରତାସହକାରେ କହି ପାରନ୍ତି, ଗଣ୍ଡଗୋଳ ହେଲେ ଦୁଃଖ ପ୍ରକାଶ କରି ପାରନ୍ତି ; କିନ୍ତୁ ତାହାସଙ୍ଗେ ଗଣ୍ଡଗୋଳ ଯେଉଁ ଅବସ୍ଥାରୁ ହୁଏ, କାର୍ଯ୍ୟତଃ ସେହି ଅବସ୍ଥାକୁ ସମଥନ କରନ୍ତି ; ସମାଜ ମଧ୍ୟରେ କ୍ଷମତାଲାଗି ଯେଉଁ ସଂଗ୍ରାମ ଚାଲେ ସେଥିରେ ସଂଖ୍ୟାଲଘୁ ସମ୍ପ୍ରଦାୟର ଲୋକେ କ୍ରୀଡ଼ନକ ପରି ବ୍ୟବହୃତ ହୁଅନ୍ତି । ଯେଉଁ କ୍ଷମତାଶାଳୀ ଲୋକେ ବିଦ୍ୱେଷ ଓ ଭେଦଭାବରୁ ଲାଭ ଉଠାଇ-ଥାଆନ୍ତି, ସେମାନେ ବୁଝି ପାରନ୍ତି ନାହିଁ ଯେ ଏହାଦ୍ୱାରା ସମାଜର ଭୀଷଣ କ୍ଷତିହୁଏ । ଭୋଟ ଅଧିକାର, ଗଣତାନ୍ତ୍ରିକ ଶ୍ରମିକ ଇଉନିୟନ, ଭେଦବିରୋଧୀ ଆଇନପ୍ରଣୟନ ପ୍ରଭୃତି ଫଳରେ ସେମାନଙ୍କ ଲାଭ ସ୍ୱତଃ କମିଯାଏ ଓ ସେତେବେଳେ ସେମାନେ ଶିଖିବାକୁ ଆରମ୍ଭ କରନ୍ତି ।

କେତେକ ଅନୁମାନର ଉଲ୍ଲେଖ କଲେ ଆନ୍ତଃସାମ୍ପ୍ରଦାୟିକ ସମ୍ପର୍କର ସାମାଜିକ ସ୍ତରୀକରଣର ଗୁରୁତ୍ୱ ଉପରେ ଆମ୍ଭମାନଙ୍କର ଦୃଷ୍ଟି ବିଶେଷଭାବରେ ପଡ଼ିବ । ମନେ ରଖିବାକୁ ହେବ ଯେ ଏଗୁଡ଼ିକ ବାସ୍ତବ ଘଟନା ନୁହେଁ ; କେବଳ ସତ୍ୟରେ ଉପନୀତ ହେବା ଲାଗି ପ୍ରାରମ୍ଭିକ ଅନୁମାନ । ପ୍ରଶ୍ନଟିର ଉତ୍ତର ପାଇବା ଦିଗରେ ଏଗୁଡ଼ିକ ଆମର ଚିନ୍ତାଶକ୍ତିକୁ ଜାଗ୍ରତ କରି ପାରନ୍ତି ।

ସଂଖ୍ୟାଲଘୁ ସମ୍ପ୍ରଦାୟ ବିରୋଧରେ ଯେଉଁଠାରେ ଘୋର ଅତ୍ୟାଚାର ହୋଇ-ଥାଏ ସେଠାରେ ସାଧାରଣତଃ କେତେକ ପରିମାଣରେ ଶ୍ରେଣୀ ବିରୋଧ ରହିଥାଏ । ଉଦାହରଣ ସ୍ୱରୂପ ଲିଟିଲ୍‌ରକର୍ ସେଣ୍ଟ୍ରାଲ ହାଇସ୍କୁଲରେ ପୃଥକକରଣର ବିଲୋପ କଲାବେଳକୁ ଭୟଙ୍କର ଆପତ୍ତି ହେଲା । ଏହି ବିରୋଧ ଏପରି ତୀକ୍ଷଣ ହେବାର ଗୋଟିଏ କାରଣ ହୋଇପାରେ ଯେ ସେତେବେଳେ ନୂଆ ହୋଇ ବସିଥିବା ଉଚ୍ଚ ଶ୍ରେଣୀର ହଲ୍ ହାଇସ୍କୁଲରେ ପୃଥକ କରଣର ବିଲୋପ କରାଯାଇ ନ ଥିଲା । ଏ ଅନୁମାନର ସତ୍ୟତା ପ୍ରମାଣ କରିବା ଯେ ନିତାନ୍ତ କଷ୍ଟକର ବ୍ୟାପାର ଏହା ସ୍ୱୀକାର କରିବାକୁ ହେବ । ଯେଉଁମାନେ ସାମ୍ପ୍ରଦାୟିକ ସମ୍ପର୍କ ବିଷୟ ଆଲୋଚନା କରିବାକୁ ଇଚ୍ଛୁକ, ସେମାନେ କି ପ୍ରକାରର ସମ୍ପର୍କ ପ୍ରତି ତୀକ୍ଷ୍ଣ ଦୃଷ୍ଟି ଦେବେ ତାହାର ସୂଚନା ଦେବା ଉଦ୍ଦେଶ୍ୟରେ ଉପର୍ଯ୍ୟୁକ୍ତ ଘଟନାର ଉଲ୍ଲେଖ କରାଗଲା । ଆମ୍ଭେମାନେ ଯଦି ପାରିପାର୍ଶ୍ୱିକ ଘଟନା ପ୍ରତି ଦୃଷ୍ଟି ନ ଦେଇ କେବଳ ଲୋକଙ୍କ ମନୋଭାବ ପ୍ରତି ଦୃଷ୍ଟି ଦେଉ ତେବେ ସାମାଜିକ ସମସ୍ୟାର ଦୂରୀକରଣ ଦିଗରେ ଆମ୍ଭମାନଙ୍କର ପ୍ରଚେଷ୍ଟା ବହୁ ପରିମାଣରେ ବିଫଳ ହେବ ।

ଯେଉଁ ସାମାଜିକ ପରିବର୍ତ୍ତନ ପ୍ରଚଳିତ ଜୀବନଯାତ୍ରା ପ୍ରଣାଳୀକୁ ନଷ୍ଟ କରି-ଦିଏ, ଅଥଚ ନୂତନ ପ୍ରଣାଳୀ ସୃଷ୍ଟି କରି ପାରେନାହିଁ, ଏବଂ ଏହି ପରିବର୍ତ୍ତନ ଦ୍ୱାରା କ୍ଷତିଗ୍ରସ୍ତ ସମ୍ପ୍ରଦାୟ ପାଇଁ କୌଣସି ଆଶାପ୍ରଦ ସଂଗଠନ ସ୍ଥାପନ କରି ପାରେନାହିଁ, ତାହା ଦ୍ୱାରା ସାମ୍ପ୍ରଦାୟିକ ବିଦ୍ୱେଷ ଓ ଶତ୍ରୁତା ବୃଦ୍ଧି ପାଇଥାଏ । ଆମେରିକାର ଦକ୍ଷିଣାଞ୍ଚଳର କୃଷକ କିମ୍ବା ସ୍ୱୟଂକ୍ରିୟ ଯନ୍ତ୍ରର ପ୍ରବର୍ତ୍ତନ ଦ୍ୱାରା କାର୍ଯ୍ୟଚ୍ୟୁତ ଆଶଙ୍କା କରୁଥିବା ଶ୍ରମିକର କ୍ଷମତା ଲାଳସା କିମ୍ବା କେତେକ ଭଦ୍ର-ସ୍ୱକରିଆଙ୍କର ଓ ବ୍ୟବ-ସାୟୀଙ୍କର ସେମିଟିକବିଦ୍ୱେଷ କିମ୍ବା ଇତିହାସ ଦୃଷ୍ଟିରୁ ନିଉଇଂଲଣ୍ଡର ଯ୍ରାଙ୍କୀମାନେ ତଥା ଅନ୍ୟ ଅଧିବାସୀମାନଙ୍କର ନିଜ ଅଞ୍ଚଳର ପ୍ରଭାବ କମି ଆସିବାବେଳେ ଉପ-ନିବେଶବାଦ ପ୍ରତି ମନୋଭାବ—ଏ ସବୁ ବିଷୟରେ ନିର୍ଦ୍ଦିଷ୍ଟ ଅନୁମାନ ଗ୍ରହଣ କରା ଯାଇପାରେ । ବୋଧହୁଏ, ଏହି ସମ୍ପ୍ରଦାୟମାନଙ୍କ ମଧ୍ୟରୁ କୌଣସି ଗୋଟିକୁ ନିର୍ବାଚନ କରି ଜୀବନ ନିର୍ବାହ ବିଷୟରେ ଏମାନଙ୍କ ବିଦ୍ୱେଷର କାରଣ ଅନୁସନ୍ଧାନ କରିବା ଉଚିତ ।

ଯେଉଁ ସମାଜମାନଙ୍କରେ ନିମ୍ନଶ୍ରେଣୀର ଲୋକେ ଅଧିମାତ୍ରାରେ ଶ୍ରେଣୀ ସଚେତନ, ସେଥିରେ ସଂଖ୍ୟାଲଘୁ ବିରୋଧୀ ମନୋଭାବ ସେତେ ପ୍ରବଳ ହୁଏନାହିଁ ; କାରଣ ଏଥିରେ ସଂଖ୍ୟାଲଘୁ ଲୋକମାନଙ୍କ ମଧ୍ୟରେ ଏକ ପ୍ରକାର ଐକ୍ୟ-ବନ୍ଧନ ଥାଏ ଏବଂ ଯଦି କିଛି ବିଦ୍ୱେଷ ଥାଏ, ତାହା ମଧ୍ୟବିତ୍ତ ଶ୍ରେଣୀ ବା ଉଚ୍ଚଶ୍ରେଣୀର ସଂଖ୍ୟାଲଘୁ ଲୋକଙ୍କ ପ୍ରତି ଥାଏ । ଉଦାହରଣ ସ୍ୱରୂପ ଇହୁଦୀମାନେ । ବିପରୀତ ପକ୍ଷରେ ଯେଉଁଠାରେ ନିମ୍ନଶ୍ରେଣୀର ଲୋକଙ୍କ ମଧ୍ୟରେ ଶ୍ରେଣୀ ସଚେତନତା ଅପେକ୍ଷାକୃତ ଊଣାଥାଏ (ଯଥା—ଆମେରିକାର ଯୁକ୍ତରାଷ୍ଟ୍ରରେ) ସେଠାରେ ଏମାନେ ଅଧିକ ବିଦ୍ୱେଷ ପ୍ରକାଶ କରିବେ ଏବଂ ଉଚ୍ଚ ଶ୍ରେଣୀର ଲୋକଙ୍କ ଅପେକ୍ଷା ଓ ବୃଦ୍ଧ ସମାଜର ନିମ୍ନଶ୍ରେଣୀର ଲୋକଙ୍କ ଅପେକ୍ଷା ଅଧିକ ଭେଦଭାବ ପ୍ରଦର୍ଶନ କରିବେ ।

ଏଠାରେ ଯେଉଁ ନିର୍ଦ୍ଦିଷ୍ଟ ଅନୁମାନର କଥା ଉଲ୍ଲେଖ କରାଗଲା, ତାହା ଗୁରୁତ୍ୱପୂର୍ଣ୍ଣ ହୋଇ ନପାରେ ; କିନ୍ତୁ ଏହାଦ୍ୱାରା ଯେଉଁ ସମସ୍ୟାର ଉତ୍ଥାପନ କରା ଯାଇଅଛି, ସାମ୍ପ୍ରଦାୟିକ ସମ୍ବନ୍ଧର ଉନ୍ନତି ବିଧାୟକ ଓ ଫଳପ୍ରଦ କୌଶଳର ସନ୍ଧାନ କରୁଥିବା ଲୋକ ପକ୍ଷରେ ତାହା ବିଶେଷ ମନୋଯୋଗର ବିଷୟ । ଉଦ୍ୟମରେ ଫଳଲାଭ ନିମନ୍ତେ ସାମାଜିକ ସ୍ତରୀକରଣ ପଦ୍ଧତିର ପ୍ରକୃତି ବିଷୟରେ ଓ ବିଭିନ୍ନ ସ୍ତରସ୍ଥିତ ଲୋକମାନଙ୍କର ମନୋଭାବ ଓ ଆଚରଣ ସମ୍ବନ୍ଧରେ ଜ୍ଞାନ ଅର୍ଜ୍ଜନ କରିବା ଏକାନ୍ତ ପ୍ରୟୋଜନ । ବିଦ୍ୱେଷର ପ୍ରସାର ଓ ପ୍ରକୃତି ସ୍ତର ଅନୁସାରେ ଭିନ୍ନ ହୋଇଥାଏ । ବିଭିନ୍ନ ପ୍ରକାରର ଶିକ୍ଷା ଯୋଜନାପାଇଁ ବା ସାମାଜିକ ପରିବର୍ତ୍ତନ ପାଇଁ ଆଗ୍ରହ ଶ୍ରେଣୀ ଭେଦରେ ଊଣାଅଧିକ ହୋଇଥାଏ । ଶିକ୍ଷା-କାର୍ଯ୍ୟ ପୂର୍ବରୁ କେଉଁ ପ୍ରଭାବର ପରିବର୍ତ୍ତନ କରିବାକୁ ହେବ, ତାହା ଶିକ୍ଷାର ଏକପ୍ରକାର ଆରମ୍ଭ ବୋଲି କହିଲେ ଚଳେ । ଏହି ପ୍ରଭାବ ବିଭିନ୍ନ ଶ୍ରେଣୀ ପକ୍ଷରେ ସମାନ ହୋଇ ନପାରେ । ଶିକ୍ଷାକ୍ଷେତ୍ରରେ ନେତାମାନେ ଯଦି ଅଧିମାତ୍ରାରେ ସହଜ ଅନୁମାନକୁ ଗ୍ରହଣ କରି ନିଅନ୍ତି ତେବେ ଶ୍ରେଣୀପ୍ରତି ଦୃଷ୍ଟିକୋଣ ଅନୁସାରେ ଫଳ ମିଳି ନପାରେ ।

## ସଂଖ୍ୟାଲଘୁ ସମ୍ପ୍ରଦାୟର ଲୋକଙ୍କର କୌଶଳ

ସାମ୍ପ୍ରଦାୟିକ ସମ୍ପର୍କର ଉନ୍ନତି ନିମନ୍ତେ ଯେତେ ଉଦ୍ୟମ ହୁଏ, ସେଥିରୁ ଅଧିକାଂଶ ଯେ ସଂଖ୍ୟାଗୁରୁ ସମ୍ପ୍ରଦାୟର ଲୋକଙ୍କ ପ୍ରତି ଅଭିପ୍ରେତ, ଏହା ନିଃସନ୍ଦେହ । ସେମାନଙ୍କର ବିଦ୍ୱେଷ ଓ ଭେଦଭାବକୁ ହ୍ରାସ କରିବାପାଇଁ ଉଦ୍ୟମ କରାଯାଏ । ଏକ କିମ୍ବା ଏକାଧିକ ସଂଖ୍ୟାଲଘୁ ସମ୍ପ୍ରଦାୟ ସୁଯୋଗରୁ ବଞ୍ଚିତ ହେବାର ଅବସ୍ଥା ବିଦ୍ୟମାନ ଥିଲେ ଏପରି ଉଦ୍ୟମ କରିବା ସର୍ବଥା ବାଞ୍ଛନୀୟ । କିନ୍ତୁ ସମୂହ ଭାବରେ

ଅବସ୍ଥାର ଉନ୍ନତି ହେଲେ ସଂଖ୍ୟାଲଘୁ ସମ୍ପ୍ରଦାୟ ପ୍ରତି ବିଶେଷ ମନୋଯୋଗ ଦେବା ବିଧେୟ । ଏହି ସମ୍ପ୍ରଦାୟର ଲୋକେ ସୁଯୋଗ ପାଇ ନଥିବାରୁ ଯେଉଁ ପ୍ରତିକ୍ରିୟା ପ୍ରକାଶ କରନ୍ତି, ତାହା ପ୍ରଥମେ ବିଦ୍ୱେଷ ଓ ଭେଦଭାବର ଫଳରୂପେ ଜନ୍ମିଥାଏ । କିନ୍ତୁ ପରେ ସେହି ପ୍ରତିକ୍ରିୟା କାରଣରେ ପରିଣତ ହୋଇଯାଏ । ଫଳତଃ କାର୍ଯ୍ୟ କାରଣର ଭେଦ ନରହି ଗୋଟିଏ ଅଖଣ୍ଡ ବୃତ୍ତର ସୃଷ୍ଟି ହୁଏ କିମ୍ବା ଯାହା ଭବିଷ୍ୟଦ୍‌ବାଣୀ ରୂପେ ପ୍ରକାଶିତ ହୋଇଥାଏ ତାହା କାର୍ଯ୍ୟତଃ ଦେଖାଯାଏ । ପୂର୍ବବର୍ତ୍ତୀ ଏକ ଅଧ୍ୟାୟରେ ଆମ୍ଭେମାନେ ଏହି ଅଖଣ୍ଡ ବୃତ୍ତର କଥା ଉଲ୍ଲେଖ କରିଅଛୁଁ । ଏହାକୁ 'ସ୍ୱତଃସଫଳ ଭବିଷ୍ୟଦବାଣୀ' ବୋଲି ଯାଇପାରେ । ସାମ୍ପ୍ରଦାୟିକ ସମ୍ପର୍କରେ ଯେ ଏପରି ଏକ ଅଖଣ୍ଡ ବୃତ୍ତି କାର୍ଯ୍ୟ କରୁଥାଏ, ତାହାର ନିଦର୍ଶନ ଚତୁର୍ଦ୍ଦିଗରେ ଦେଖିବାକୁ ମିଳେ । ଏହାର ଗୋଟିଏ ଦୁଃଖଜନକ ଦିଗ ଅଛି । ଅଧିକାଂଶ ସଂଖ୍ୟାଲଘୁ ସମ୍ପ୍ରଦାୟର ଲୋକେ ନିଜର ପରିବେଶ ପ୍ରତି ଯେଉଁ ପ୍ରତିକ୍ରିୟା ପ୍ରକାଶ କରନ୍ତି, ତାହା ପୁରୁଷେ ଦୁଇ ପୁରୁଷ ପର୍ଯ୍ୟନ୍ତ ରହିଯାଏ । ଉଚ୍ଚାଭିଳାଷ, ଦାୟିତ୍ୱଜ୍ଞାନ, ନିୟମର ମର୍ଯ୍ୟାଦା ରକ୍ଷା ପ୍ରଭୃତିର ଅଭାବ ପୃଥକକରଣ ଓ ଭେଦଭାବର ସ୍ୱାଭାବିକ ପରିଣତିରୂପେ ଦେଖାଦିଏ । କାରଣର ଯଥେଷ୍ଟ ହ୍ରାସ ସତ୍ତ୍ୱେ ଏହି ଅଭାବ ବହୁଦିନ ପାଇଁ ସେହିପରି ରହିଯାଏ । ଏହି ପ୍ରତିକ୍ରିୟା ସେହି ଅଖଣ୍ଡବୃତ୍ତରେ କାରଣରୂପେ ପ୍ରବେଶ କରି ସହଜେ ଦୂରୀଭୂତ ହୋଇପାରେ ନାହିଁ ।

ମୁଁ ଅଳ୍ପଦିନ ପୂର୍ବେ ଆମେରିକାର ଉତ୍ତରାଞ୍ଚଳର ଗୋଟିଏ ଶିଳ୍ପପ୍ରଧାନ ସମାଜର ଅନେକ ଲୋକଙ୍କୁ ପଚାରିଥିଲି :—ନିମ୍ନଲିଖିତ ପରିବର୍ତ୍ତନମାନଙ୍କ ମଧ୍ୟରୁ କେଉଁଟି ସମାଜରେ ପିଉଟୋରିକାନ ଓ ନିଗ୍ରୋମାନଙ୍କର ପୁର୍ଣ୍ଣ ସମ୍ମିଳନ ଦିଗରେ ଅଧିକ ଫଳଦାୟକ ହେବ ?

୧ । ବର୍ତ୍ତମାନ ଯେଉଁ ବିଦ୍ୱେଷ ଓ ଭେଦଭାବ ରହିଛି, ତାହାର ଚିହ୍ନ ଲୋପ କରିଦେବା ।

୨ । ସଂଖ୍ୟାଲଘୁ ସମ୍ପ୍ରଦାୟର ଲୋକମାନଙ୍କ ମଧ୍ୟରୁ ଅନେକଙ୍କର ଯେଉଁ ଉଚ୍ଚାକାଂକ୍ଷାର ଅଭାବଅଛି, କଠିନ ପରିଶ୍ରମ ସହକାରେ ପଇସା ଅର୍ଜିବାରେ ଅନିଚ୍ଛା ଅଛି ଓ ଅତୀତର ଭେଦଭାବର ଯେଉଁ ନିଦର୍ଶନ ଅଛି, ତାହାର ଲୋପ କରିଦେବା ।

ଶ୍ୱେତାଙ୍ଗ ତଥା କୃଷ୍ଣକାୟ ଉଭୟ ଶ୍ରେଣୀର ଲୋକଙ୍କ ମଧ୍ୟରୁ ଅଧିକାଂଶ ମତ ଦେଇଥିଲେ ଯେ ଦ୍ୱିତୀୟ ଉପାୟଟି ଅଧିକ ଫଳପ୍ରଦ । ସେମାନଙ୍କ ମତ ଯେ ଠିକ୍, ଏ ବିଷୟରେ ମୁଁ ନିଃସନ୍ଦେହ ନୁହେଁ । କିନ୍ତୁ କେବଳ ଅନୁମାନ ଛଡ଼ା ଅନ୍ୟ ଉପାୟରେ ଏହି ପ୍ରଶ୍ନର ଉତ୍ତର ଦିଆଯାଇ ନପାରେ । ମୋ ପ୍ରଶ୍ନରେ ନିନ୍ଦା ବା

ପ୍ରଶଂସାର କଥା କିଛି ଲକ୍ଷ୍ୟ କରାଯାଇ ନାହିଁ । ଯାହା କିଛି ଘଟୁଛି ସେ ସବୁ ବର୍ତ୍ତମାନ ପରିସ୍ଥିତିର ସ୍ୱାଭାବିକ ପରିଣତି । କିନ୍ତୁ ପ୍ରଶ୍ନଟି ଗୋଟିଏ ଗୁରୁତ୍ୱପୂର୍ଣ୍ଣ ବିଷୟର ସୂଚନା ଦିଏ । ଅନ୍ତତଃ ଯେଉଁ କେତେକ ସ୍ଥଳରେ ସଂଖ୍ୟାଗୁରୁ ସମ୍ପ୍ରଦାୟର ବିଦ୍ୱେଷ ଓ ଭ୍ରାନ୍ତ ଧାରଣା ଦୂର କରିବାର ପ୍ରଶ୍ନ ନାହିଁ, ମାତ୍ର ସଂଖ୍ୟାଲଘୁ ସମ୍ପ୍ରଦାୟଙ୍କ ପାଇଁ ଏବେ ଉନ୍ମୁକ୍ତ ହୋଇଥିବା ସୁବିଧାର ପୂର୍ଣ୍ଣ ସୁଯୋଗ ନେବାପାଇଁ ସେମାନଙ୍କୁ ଶିକ୍ଷା ଦେବାର ଆବଶ୍ୟକତା ଅଛି, ସେଠାରେ ସଫଳତା ଆଶା କରାଯାଏ ।

ଫଳପ୍ରଦ ଭାବରେ ଏହି ସମସ୍ୟାର ସମାଧାନ ନିମନ୍ତେ ଉଦ୍ୟମ କରିବାକୁ ହେଲେ ପ୍ରଥମେ କେତୋଟି ପ୍ରଶ୍ନର ଉତ୍ତର ଆବଶ୍ୟକ । ସ୍ଥୂଳଭାବରେ କହିବାକୁ ଗଲେ ଆମେ ପଚାରିପାରୁଁ :—

ସାମାଜିକ ଜୀବନରେ ପୂର୍ଣ୍ଣ ସୁଯୋଗ ଉପଭୋଗ କରିବାରେ ସଂଖ୍ୟାଲଘୁ ସଂପ୍ରଦାୟର ଲୋକଙ୍କର ପ୍ରବେଶକୁ ଅବରୋଧ କରୁଥିବା ନିମ୍ନତର କୃଷ୍ଟି ଓ ବ୍ୟକ୍ତିତ୍ୱର ଅଭିବୃଦ୍ଧି କେଉଁ ପରିସ୍ଥିତିରେ ବୃଦ୍ଧି ପାଏ ଓ କେଉଁ ପରିସ୍ଥିତିରେ ହ୍ରାସପାଏ ? ପରିବାର ଓ ସ୍କୁଲର ସମ୍ପର୍କ କଅଣ ? ପୃଥକକୃତ ବାସଗୃହ ବ୍ୟବସ୍ଥା ଓ ଚର୍ଚ୍ଚର ପ୍ରଭାବ କିପରି ? ବର୍ତ୍ତମାନ ପରିସ୍ଥିତିରେ ସୁଯୋଗରହିତ ସଂପ୍ରଦାୟର ତଥା କ୍ଷମତାଶାଳୀ ସମ୍ପ୍ରଦାୟର କେଉଁ ପ୍ରକାର ନେତା ଅଗ୍ରଣୀ ବୋଲି ବିବେଚିତ ହେଉଅଛନ୍ତି ?

ଆଧୁନିକ ଆମେରିକାର ଶିକ୍ଷା କ୍ଷେତ୍ରରେ ସଂଖ୍ୟାଲଘୁ ସଂପ୍ରଦାୟର ଅଧିକାର, ସୁଯୋଗ ବା ଦାୟିତ୍ୱ ବିଷୟରେ ଯେ କିଛି ଅନ୍ତରାୟ ଅଛି; ଏପରି କଳ୍ପନା କରିବା ପ୍ରାୟ ଅସମ୍ଭବ । ସାମ୍ପ୍ରଦାୟିକ ସମ୍ପର୍କର ଉନ୍ନତି ଓ ସଂଖ୍ୟାଲଘୁ ସମ୍ପ୍ରଦାୟମାନଙ୍କୁ ଅଧିକ ଅଧିକାର ପ୍ରଦାନ ଉଦ୍ଦେଶ୍ୟରେ ସମାଜରେ ଶତଶତ ଅନୁଷ୍ଠାନ ଥିବା ହେତୁରୁ ସମାଜରେ ଅନୁମାନ କରାଯାଇପାରେ ଯେ ଏହି ସଂପ୍ରଦାୟମାନଙ୍କର ବାଣୀ ସର୍ବତ୍ର ପରିବ୍ୟାପ୍ତ । ଅନେକ ବେସରକାରୀ ଅନୁଷ୍ଠାନ ମଧ୍ୟ ଏହି କ୍ଷେତ୍ରରେ କାର୍ଯ୍ୟ କରୁ-ଅଛନ୍ତି । ସେଥି ମଧ୍ୟରୁ କେତୋଟିର ନାମୋଲ୍ଲେଖ କରାଯାଉଅଛି । ଏହା ଗତ କେତେବର୍ଷ ହେଲା ସମ୍ବାଦପତ୍ରରେ ବିଶେଷ ପ୍ରଶଂସିତ ହୋଇ ଆସିଅଛି । ଖ୍ରୀଷ୍ଟିଆନ ଓ ଇହୁଦୀମାନଙ୍କର ଜାତୀୟ ସମ୍ମିଳନୀ, ଏହା ଜାତୀୟ ସ୍ତରରେ ଓ ସ୍ଥାନୀୟସ୍ତରରେ କାର୍ଯ୍ୟକରୁଅଛି । ଦ ଯ୍ୟାଣ୍ଟି ଡିଫାମେସନ ଲିଗ୍, ଦ ଆଲିଆନ୍‌ଜା ସିସପ୍ୟାନୋ ଆମେରି-କାନା, ଦ ଜାପନିସ୍ ଆମେରିକାନ୍ ଡିଫେନ୍ସ ଲିଗ୍; ଦ ଆରବାନ ଲିଗ୍,ଦ କଂଗ୍ରେସ ଅଫ୍ ରେସିୟାଲଇକ୍ୱାଲିଟି, ଦ ଷ୍ଟୁଡେଣ୍ଟ ନନ୍‌ଭାଓଲେଣ୍ଟ କୋ ଅର୍ଡ଼ିନେଟିଂ କମିଟି

ଇତ୍ୟାଦି । ଏହିସବୁ ବେସରକାରୀ ଅନୁଷ୍ଠାନ ବ୍ୟତୀତ ସାଂପ୍ରଦାୟିକ ସମ୍ପର୍କର ଉନ୍ନତି ବିଧାନ ଉଦ୍ଦେଶ୍ୟରେ ଅନେକ ସରକାରୀ ଅନୁଷ୍ଠାନ ଜାତୀୟ ଓ ସ୍ଥାନୀୟ ସ୍ତରରେ କାର୍ଯ୍ୟ କରୁଅଛନ୍ତି । ସଂଖ୍ୟାଲଘୁ ସଂପ୍ରଦାୟର ଲୋକେ କିପରି ସମାନ ସୁଯୋଗ ଲାଭ କରିପାରିବେ ସେଥିନିମନ୍ତେ ଏହି ଅନୁଷ୍ଠାନମାନ ଉଦ୍ୟମ କରିଥାନ୍ତି ।

ଏହି ସବୁ ଉଦ୍ୟମ ସତ୍ତ୍ୱେ ସ୍ୱୀକାର କରିବାକୁ ହେବ ଯେ ସୁଯୋଗ ରହିତ ପରିସ୍ଥିତିରେ ରହିଥିବା ଅନେକ ବ୍ୟକ୍ତି ଏହି ଅନୁଷ୍ଠାନମାନଙ୍କର ସୁଫଳ ଲାଭ କରି ପାରିନାହାନ୍ତି । କୌଣସି କୌଣସି ରାଜ୍ୟର ସଂଖ୍ୟାଗୁରୁ ଲୋକେ ଜାଣନ୍ତି ନାହିଁ ଯେ 'ଚାକିରିରେ ନ୍ୟାୟପର ନିଯୁକ୍ତି' ବୋଲି ଗୋଟାଏ ଆଇନ ଅଛି । ଅଥଚ ଏହି ଆଇନ ଅନେକ ବର୍ଷ ହେଲା କାର୍ଯ୍ୟକାରୀ ହେଲାଣି । ନଚେତ ଆଇନ ଥିବାର ଜାଣିଥିଲେ ମଧ୍ୟ ସେମାନେ ଅତୀତର ଅଭିଜ୍ଞତାରୁ ଏହି ଆଇନକୁ ଗ୍ରାହ୍ୟ କରନ୍ତି ନାହିଁ । ଶିଶୁମାନଙ୍କର ମନୋବୃତ୍ତି ଗଠନର ସୂକ୍ଷ୍ମ ପ୍ରକ୍ରିୟାରେ ଓ ଉପଦେଶ ଦେବାରେ ଅନେକ ପିତାମାତା ସେମାନଙ୍କର ଦୃଢ଼ୀଭୂତ ବିଷାଦବାଦର ପରିଚୟ ଦେଇଥାନ୍ତି । ହୁଏତ ଏହା ଦୋଷ ଗ୍ରାହିତା ହୋଇ ନପାରେ । ମାତ୍ର ଏହା ଏପରି କେତେକ ମନୋଭାବ ସୃଷ୍ଟି କରେ ଯେ ତାହାକୁ ଭିତ୍ତି କରି ବିଦ୍ୱେଷୀ ଲୋକେ ନିଜର ଅଭିମତ ଓ କାର୍ଯ୍ୟକୁ ସମର୍ଥନ କରନ୍ତି । ଥରେ ଜଣେ ନିଗ୍ରୋଙ୍କୁ ପଚରା ଗଲା—"ସମସ୍ତେ ନ୍ୟାଯ୍ୟଭାବରେ କାର୍ଯ୍ୟରେ ନିଯୁକ୍ତି ପାଇପାରିବେ ବୋଲି ଆଇନ କରା ଯାଇଅଛି । ଏହି ଦୃଷ୍ଟିରୁ ତୁମ୍ଭେ ତୁମ୍ଭର ପୁଅକୁ କି ଉପଦେଶ ଦେବ ?" ଉକ୍ତ ନିଗ୍ରୋ ଏହି ଆଇନ କଥା କିଛି ଜାଣି ନଥିଲେ । ସେ ଉତ୍ତର କଲେ, "ଶିକ୍ଷା ଦେବାର କୌଣସି ପ୍ରୟୋଜନ ନାହିଁ । ବଡ଼ ବଡ଼ ଚକରେ କାମ କରିବାକୁ ବଳ ନାହିଁ ।" ବର୍ଷ ବର୍ଷ ଧରି ପିଲାମାନଙ୍କୁ ଏହି ପ୍ରକାର ମନୋବୃତ୍ତି ଶିକ୍ଷା ଦେବା ଫଳରେ ସେମାନଙ୍କ ମଧ୍ୟରୁ ଅନେକେ ସ୍କୁଲ ଛାଡ଼ି ଦିଅନ୍ତି, କୌଣସି ବୈଷୟିକ ଟ୍ରେନିଂରେ ଯୋଗଦେଇ ଉଚ୍ଚବେତନବିଶିଷ୍ଟ ଚାକିରି ପାଇ ପାରନ୍ତି ନାହିଁ । ନିମ୍ନ ବେତନରେ, ସମ୍ମାନହୀନ କାର୍ଯ୍ୟରେ ନିଯୁକ୍ତ ରହି ସେମାନେ ପରବର୍ତ୍ତୀ ବଂଶଧରକୁ ସେହି ପରମ୍ପରା ମଧ୍ୟରେ ଆବଦ୍ଧ କରି ରଖନ୍ତି ।

ସୁଯୋଗରହିତ ସମ୍ପ୍ରଦାୟମାନଙ୍କର ଅନେକ ଲୋକ ସେମାନଙ୍କ ପାଇଁ ଉନ୍ମୁକ୍ତ ହେଉଥିବା ସୁଯୋଗର ସଦ୍‌ବ୍ୟବହାର କରି ଭେଦଭାବର ପ୍ରାଚୀନର ଅତିକ୍ରମ କରି ଅଛନ୍ତି । ଶିକ୍ଷା ଲାଭର ସୁଯୋଗ ଗ୍ରହଣ କରି ସାମ୍ପ୍ରଦାୟିକ ସମ୍ପର୍କର ଉନ୍ନତି ବିଧାନ କରିଅଛନ୍ତି । ଭୁଲିଗଲେ ଚଳିବ ନାହିଁ । ପରିବର୍ତ୍ତନର ପ୍ରଭାବରୁ ନିଜକୁ ଦୂରରେ ରଖିବାର ପ୍ରବୃତ୍ତି ଆଉ ସେତେ ପ୍ରବଳ ଦେଖାଯାଏ ନାହିଁ । ୧୯୬୦ ମସିହା ପରେ ନିଗ୍ରୋମାନେ ଯେଉଁ ନାଗରିକ ଅଧିକାର ଆନ୍ଦୋଳନରେ ଭାଗ

ନେଇ ଅଛନ୍ତି, ତାହାର ପରିସର ସୁଦୂରବ୍ୟାପୀ । ଭେଦଭାବର ଦୂରୀକରଣ ଲାଗି ପୂର୍ବରୁ ଯେତେ ଉଦ୍ୟମ ହୋଇଥିଲା, ସେଥି ମଧ୍ୟରୁ କାହାର ପରିସର ଏତେ ବହୁ ଦୂରବ୍ୟାପୀ ନଥିଲା । ଏହି ଆନ୍ଦୋଳନ ବିଷୟ ପରବର୍ତ୍ତୀ ଅନୁଚ୍ଛେଦରେ ଆଲୋଚନା କରାଯିବ । ପ୍ରକୃତରେ ଯେ କେତେକ ପ୍ରତିବନ୍ଧକ ଅଛି ତାହା ସ୍ମରଣ ରଖିବାକୁ ହେବ । ସେଥିରୁ ଜଣାଯାଏ ଯେ ଧ୍ୱଂସାତ୍ମକ ମନୋଭାବ କେତେକ ପରିମାଣରେ ଦୋଷଦର୍ଶିତାର ଚିହ୍ନ ନୁହେଁ, ବରଂ ବାସ୍ତବତାର ଚିହ୍ନ । ତଥାପି ଲକ୍ଷ୍ୟ କରିବାର କଥା ଯେ କେତେକ ପରିସ୍ଥିତିରେ ସଂଖ୍ୟାଲଘୁ ସମ୍ପ୍ରଦାୟର ଲୋକେ ବହୁ ପରିମାଣରେ ପଛରେ ପଡ଼ି ଯାଇ ଅଛନ୍ତି । ଏ କ୍ଷେତ୍ରରେ ଶିକ୍ଷାର ଉଦ୍ୟମରେ ରତଥିବା ବ୍ୟକ୍ତି-ମାନଙ୍କର ଗୋଟିଏ ବିଶେଷ ସୁଯୋଗ ଅଛି । ଅବଶ୍ୟ ଏଠାରେ ଶିକ୍ଷାକୁ ପ୍ରଶସ୍ତ ଅର୍ଥରେ ଗ୍ରହଣ କରିବାକୁ ହେବ ।

ଏହି ସମସ୍ୟା ସମ୍ପର୍କରେ ଅନେକ ପ୍ରଶ୍ନର ଉତ୍ତର ଦିଆଯାଇ ନ ପାରେ । କିଏ ଶିକ୍ଷା ଲାଭ କରିବାକୁ ପ୍ରସ୍ତୁତ ? କିଏ ଭେଦଭାବ ଦ୍ୱାରା ଏତେ ଭୀଷଣଭାବରେ କ୍ଷତିଗ୍ରସ୍ତ ଯେ ତାହା ନିମନ୍ତେ ସ୍ୱତନ୍ତ୍ର କୌଶଳ ପ୍ରୟୋଗ କରିବା ଆବଶ୍ୟକ ? ଶିକ୍ଷାର କି ପ୍ରକାର ଉଦ୍ୟମ ସର୍ବାପେକ୍ଷା ଅଧିକ ଫଳପ୍ରଦ ? ପିତାମାତା ଓ ଅଭି-ଭାବକ, ଗୋଷ୍ଠୀ, ସ୍କୁଲ, ଚର୍ଚ୍ଚ ସହିତ ପ୍ରତ୍ୟକ୍ଷଭାବରେ କାର୍ଯ୍ୟକରି ଜନତାର ମାଧ୍ୟମରେ ଉଦ୍ୟମ କରାଯିବ କି ? ପରିସ୍ଥିତି ଅନୁସାରେ ଏହି ପ୍ରଶ୍ନ ଗୁଡ଼ିକର ଉତ୍ତର ଭିନ୍ନ ଭିନ୍ନ ହୋଇପାରେ । ଗୋଟିଏ ସମାଜ ପକ୍ଷରେ ଯାହା ଫଳପ୍ରଦ ହୋଇପାରେ ଅନ୍ୟ ଏକ ସମାଜ ପକ୍ଷରେ ତାହା ଆଦୌ ଫଳପ୍ରଦ ହୋଇ ନପାରେ ।

ଉଦାହରଣ ସ୍ୱରୂପ ଯେଉଁମାନେ ମଫସଲରୁ ସହରକୁ ଆସିଥାନ୍ତି, ସେମାନଙ୍କ ମଧ୍ୟରେ ଆଶା ଓ ମୂଲ୍ୟବୋଧର ପରିବର୍ତ୍ତନ ଆଣିବା ଦିଗରେ ଶିକ୍ଷାର ଉଦ୍ୟମ ସେତେ ଫଳପ୍ରଦ ହୋଇ ନ ପାରେ । ସହରରେ ଚଳି ଶିଖିବାକୁ, ସହରରେ କି କି ସୁବିଧା ଅଛି ତାହା ଜାଣିବାକୁ, ଶ୍ରମ କୌଶଳ, ସହରୀ ଜୀବନର ଚାଲିଚଳନ ଓ ମୂଲ୍ୟବୋଧ ଶିକ୍ଷା କରିବାକୁ ସେମାନଙ୍କୁ ସମୟ ଲାଗିବ । ଏ ଶ୍ରେଣୀର ଲୋକେ ନିଜ ପିଲାଙ୍କୁ ଉପଯୁକ୍ତ ଶିକ୍ଷା ଦେଇ ପାରିବେ ନାହିଁ ; କାରଣ ପୂର୍ବରୁ ସେମାନେ ଯେଉଁ ଅଭିଜ୍ଞତା ନେଇ ଆସିଥାନ୍ତି, ତାହା ସହରର ପରିବେଶଠାରୁ ସମ୍ପୂର୍ଣ୍ଣ ଭିନ୍ନ । ସେମାନଙ୍କର ବଂଶଗତ ପରମ୍ପରାକୁ ଭାଙ୍ଗିବାକୁ ହେବ ; ଭାଙ୍ଗିବା ଉଚିତ ମଧ୍ୟ । ଯଦି ଶିକ୍ଷା-ଯୋଜନା ଦ୍ୱାରା ଏହା ଭାଙ୍ଗିବା ସମ୍ଭବପର ନ ହୁଏ, ତେବେ ସାମାଜିକ ସଂଗଠନକୁ ଭାଙ୍ଗି ଏହି ପରମ୍ପରାକୁ ଭାଙ୍ଗିବାକୁ ହେବ । ଆମର ବଡ଼ ବଡ଼ ସହରର ମଝିରେ କେତେକ କଦର୍ଯ୍ୟ ନଗୋବସତି ଦେଖାଯାଏ ଯେ ସ୍ଥଳରେ ଏ ପ୍ରକାର ପରମ୍ପରା ସୃଷ୍ଟି

ଓ ଗଭୀରଭାବରେ ଅନୁଭୂତ ହୁଏ । ପିତାମାତାଙ୍କର ଉପଯୁକ୍ତ ଅଭିଜ୍ଞତାର ଅଭାବ ସଙ୍ଗେ ପାରିବାରିକ ସମ୍ପର୍କର ଉଚ୍ଛେଦ ଓ ଅସ୍ଥିରତା ଘଟିଥାଏ । ଏ ସବୁରେ ପୁଣି ଭେଦଭାବ ମିଶିଥାଏ । ମଫସଲରୁ ଆସିଥିବା ଲୋକଙ୍କ ପିଲାଙ୍କୁ ଶିକ୍ଷାପାଇଁ, ସହରର ଜୀବନର ଆବଶ୍ୟକତା ଜାଣିବା ପାଇଁ ପ୍ରଧାନତଃ ସ୍କୁଲ ଉପରେ ନିର୍ଭର କରିବାକୁ ପଡ଼େ । ଏହି ଉଦ୍ଦେଶ୍ୟରେ ଯେଉଁଠାରେ ସ୍କୁଲ ବିଶେଷ ଦରକାର ସେଠାରେ ସମାଜ ଯଥେଷ୍ଟ ସ୍କୁଲ ପ୍ରତିଷ୍ଠା କରି ପାରିନାହିଁ । ଏହା ଫଳରେ ଗଣତନ୍ତ୍ର ବିରୋଧୀ ସାମ୍ପ୍ରଦାୟିକ ସମ୍ପର୍କ ଜନିତ ବିପଦ ବୃଦ୍ଧି ପାଏ । ପରବର୍ତ୍ତୀ ପୁରୁଷରେ ପାରିବାରିକ ଜୀବନ କିଛିଏ ଦୃଢ଼ ହୋଇ ଆସିଥାଏ ; ପିଲାମାନଙ୍କର ଉଚ୍ଚାଭିଳାଷ ସୃଷ୍ଟି କରିବାକୁ କେତେକ ଆଦର୍ଶ ମିଳିଥାଏ ; ସଂଖ୍ୟାଲଘୁ ଲୋକଙ୍କ ପାଇଁ ଉଦ୍ଦିଷ୍ଟ କେତେକ ଚର୍ଚ୍ଚ ସେମାନଙ୍କ ମନରେ ସୀମାଗତ ଆଶାରବାଣୀ ଶୁଣାଇଥାଏ । ସେମାନେ ନିଜର ପରିବେଶ ପ୍ରତି ମନୋଯୋଗ ଦିଅନ୍ତି ; ଅବଶ୍ୟ ଏହି ମନୋଯୋଗ ଅନେକ ସମୟରେ ଦଳଦୃଷ୍ଟିରୁ ଦିଆ ଯାଇଥାଏ । ସଂଖ୍ୟାଲଘୁ ସମ୍ପ୍ରଦାୟ ସଂକ୍ରାନ୍ତ ସମସ୍ୟାର ସମାଧାନ ଦିଗରେ ଯେଉଁ ସବୁ ଶକ୍ତି କାର୍ଯ୍ୟ କରୁଥାଏ, ଏହି ସବୁ ଉନ୍ନତି ତାହାକୁ ସାହାଯ୍ୟ କରେ ।

କିନ୍ତୁ ମଫସଲରୁ ଆସିଥିବା ସବୁ ଗୋଷ୍ଠୀ ଏକାଭଳି ନୁହନ୍ତି । ସେମାନଙ୍କର ପାରିବାରିକ ପରମ୍ପରା ଭିନ୍ନଥାଏ । ତେଣୁ କେଉଁଠାରେ କି ପ୍ରକାର ଶିକ୍ଷା ଉଦ୍ୟମ ଫଳପ୍ରଦ ହେବ, ତାହା ସ୍ଥିର କଲାବେଳେ ଏହି ପ୍ରଭେଦକୁ ମନେ ରଖିବାକୁ ହେବ, ଉଦାହରଣ ସ୍ୱରୂପ ଲେଖକ ଗୋଟିଏ ଗୋଷ୍ଠୀ ସହିତ ପରିଚିତ ଥିଲେ । ତାହାଁର ଅନ୍ତର୍ଗତ କେତେକ ପିଉଟୋରିକାନ ପରିବାର ଜନ୍ମସ୍ଥାନ ଅନୁସାରେ ବେଶ୍ ଏକତାବଦ୍ଧ ଥିଲେ । ଏପରି ସ୍ଥଳେ ଏହି ପରିବାରମାନଙ୍କ ନିମନ୍ତେ ସାମ୍ପ୍ରଦାୟିକ ଶିକ୍ଷା ହୁଏତ ଫଳପ୍ରଦ ହୋଇପାରେ । ଅବଶ୍ୟ ଏହି ଶିକ୍ଷା ସ୍କୁଲ ଶିକ୍ଷାର ସ୍ଥାନ ଅଧିକାର କରିବା ଉଚିତ ନୁହେଁ । କିନ୍ତୁ ଏହି ଶିକ୍ଷା ସ୍କୁଲ ଶିକ୍ଷାର ସହାୟକ ହୋଇପାରେ । ଯେଉଁଠାରେ ପାରିବାରିକ ଜୀବନ ଶିଥିଳ, ସେଠାରେ ଅନ୍ୟାନ୍ୟ ପନ୍ଥା ସାହାଯ୍ୟରେ ଭେଦଭାବର ପରମ୍ପରାକୁ ଛିନ୍ନ କରିବାପାଇଁ କୌଶଳ ପ୍ରୟୋଗ କରିବାକୁ ହେବ ।

## ନାଗରିକ ଅଧିକାର ଆନ୍ଦୋଳନ

୧୯୦୮ ମସିହାରେ ନ୍ୟାସନାଲ ଆସୋସିଏସନ ଫର ଦ ଆଡ୍‌ଭାନ୍ସମେଣ୍ଟ ଅଫ୍ କଲର୍ଡ ପିପଲ ପ୍ରତିଷ୍ଠିତ ହୋଇଥିଲା । ପ୍ରାୟ ପଚାଶ ବର୍ଷ ପରେ ଏହା ବିଶେଷଭାବରେ ଲୋକସାଧାରଣଙ୍କ ଦୃଷ୍ଟି ଆକର୍ଷଣ କଲା । ଏହି ସମୟ ମଧ୍ୟରେ

ଯୁକ୍ତରାଷ୍ଟ୍ରରେ ଭେଦଭାବ ହ୍ରାସ କରିବା ଦିଗରେ ଏହା କ୍ରମଶଃ ଗୋଟିଏ ପ୍ରଧାନ ଶକ୍ତିରୂପେ କାର୍ଯ୍ୟକରି ଆସିଅଛି । ନାଗରିକ ଅଧିକାର ଆନ୍ଦୋଳନ ସହିତ ଅଳ୍ପ ସଂଖ୍ୟକ ନିଗ୍ରୋ ସଂପୃକ୍ତ ହେଲେହେଁ ବିଗତ କେତେବର୍ଷ ହେଲା ଏହା ଯେ ବହୁଲୋକଙ୍କର ସମର୍ଥନ ଲାଭ କରି ପାରିଅଛି, ଏଥିରେ ସନ୍ଦେହ ନାହିଁ । ପୂର୍ବବର୍ତ୍ତୀ ଏକ ଅନୁଚ୍ଛେଦରେ ମୁଁ ଏହାର ସୂଚନା ଦେଇଅଛି । ଆନ୍ଦୋଳନର ପରିସରର ବୃଦ୍ଧି ଓ କେତେକ ଲକ୍ଷ୍ୟରେ ସିଦ୍ଧି ଲାଭ ଫଳରେ ଏହାର ଉଦ୍ଦେଶ୍ୟ ମଧ୍ୟ ବୃହତ୍ତର ହୋଇଅଛି । ପ୍ରଥମେ ପ୍ରଥମେ ଏହି ଆନ୍ଦୋଳନର ନେତାମାନେ କେତେକ ମୋକଦ୍ଦମାରେ ସୁପ୍ରିମକୋର୍ଟରେ ପ୍ରମାଣ କରାଇବାକୁ ଚେଷ୍ଟା କରୁଥିଲେ ଯେ ଆମେରିକାର ସମ୍ବିଧାନର ଉଦ୍ଦେଶ୍ୟ ହେଉଛି, ସବୁ ଶ୍ରେଣୀର ଲୋକଙ୍କର ସମାନ ଅଧିକାର ଅଛି । ଏଭଳି କାର୍ଯ୍ୟ ଏକା ଦିନକେ ଶେଷ ହୋଇ ନପାରେ । କିନ୍ତୁ ୧୯୧୫ ଠାରୁ ୧୯୬୦ ମସିହା ମଧ୍ୟରେ ସଂଖ୍ୟାଗୁରୁ-ସଂଖ୍ୟାଲଘୁ ସମ୍ପର୍କ ବିଷୟରେ ଗୋଟାଏ ସାମ୍ବିଧାନିକ ଭିତ୍ତି ପ୍ରତିଷ୍ଠିତ ହୋଇ ପାରିଥିଲା । ଯେଉଁ ଭେଦଭାବ ଓ ପୃଥକ୍‌କରଣନୀତି ସମାଜରେ ଚଳୁଥିଲା ଓ ଯାହା ସରକାରୀ ସ୍ତରରେ ମଧ୍ୟ ଗ୍ରହଣୀୟ ଥିଲା, ତାହା ପରିବର୍ତ୍ତିତ ହୋଇଗଲା । ସରକାରୀ କ୍ଷେତ୍ରରେ ସବୁ ସ୍ତରରେ ଭେଦଭାବ ଓ ପୃଥକ୍‌କରଣ ନିଷିଦ୍ଧ ହେଲା ।

ବିଚାରାଳୟରୁ ଅନୁକୂଳ ଆଦେଶ ପାଇବାର ଉଦ୍ୟମ ସଙ୍ଗେ ସଙ୍ଗେ ଆନ୍ଦୋଳନର ନେତାମାନେ ଏହି ଆଦେଶ ଯେପରି କାର୍ଯ୍ୟରେ ପରିଣତ ହେବ ଓ ଭେଦଭାବର ହ୍ରାସ ବା ଦୂରୀକରଣ ନିମନ୍ତେ ନୂତନ ନିୟମମାନ ପ୍ରଣୟନ କରାଯିବ ସେଥିପାଇଁ ଉପାୟ ଅନୁସନ୍ଧାନ କଲେ । କେନ୍ଦ୍ର, ରାଜ୍ୟ ଓ ସ୍ଥାନୀୟସଂସ୍ଥା ସ୍ତରରେ ଏଥି ମଧ୍ୟରେ ଶତଶତ ଆଇନ ଓ ନିୟମ ପ୍ରଣୟନ କରାଯାଇଅଛି । ଏହାଦ୍ୱାରା ଭୋଟ ପ୍ରଦାନ, ନିଯୁକ୍ତିରେ ସୁଯୋଗ, ବାସଗୃହ ନିର୍ମାଣ; ଶିକ୍ଷା, ସର୍ବସାଧାରଣ ସ୍ଥାନର ବ୍ୟବହାର ବିଷୟରେ ସଂଖ୍ୟାଲଘୁଙ୍କ ପ୍ରତି ଚଳୁଥିବା ଅସମ ଆଚରଣକୁ ନିଷିଦ୍ଧ କରାଯାଇଅଛି । ଅବଶ୍ୟ ଆଇନ ପ୍ରଣୟନ କରାଇବା ଯାହା, ଆଇନର ପ୍ରୟୋଗ କରାଇବା ତାହା ନୁହେଁ । ଆଇନର ଫଳାଫଳ ବିଷୟ ନିମ୍ନରେ ଆଲୋଚନା କରା ଯାଉଅଛି ।

ଗତ କେତେ ବର୍ଷ ହେଲା ବଣିକ, କର୍ମନିଯୋକ୍ତା ଓ ସ୍କୁଲ ବିଭାଗୀୟ କର୍ମଚାରୀଙ୍କ ସହିତ ପ୍ରତ୍ୟକ୍ଷ ସମ୍ପର୍କ ସ୍ଥାପନକରିବାକୁ ଆନ୍ଦୋଳନର ନେତାମାନେ ନିଜ କର୍ତ୍ତବ୍ୟର ଅଙ୍ଗରୂପେ ଗ୍ରହଣ କରିଅଛନ୍ତି । ସମସ୍ତଙ୍କୁ ସମାନ ସୁଯୋଗ ଦେବାପାଇଁ ଏମାନଙ୍କର ସମର୍ଥନ ପାଇବା ବା ଏମାନଙ୍କୁ ବାଧ୍ୟ କରିବା ହେଉଛି ଏହି ଉଦ୍ୟମର ଲକ୍ଷ୍ୟ । ଯେଉଁମାନେ ଦଳଗତ ଭେଦଭାବ ଦୂର କରିବାକୁ ଚେଷ୍ଟିତ, ସେମାନଙ୍କ

କୌଶଳର ଏକ ପ୍ରଧାନ ଅଙ୍ଗ ହୋଇଛୁ, ଉପବେଶନ ଧର୍ମଘଟ, ବର୍ଜ୍ଜନ, ପିକେଟିଙ୍ଗ ପ୍ରଭୃତି । ୧୯୬୦ ମସିହା ପରେ ଏହା ବିଶେଷ ଭାବରେ ଲକ୍ଷ୍ୟ କରା ଯାଉଅଛୁ । ଏହି ଆନ୍ଦୋଳନର ବିଶେଷତ୍ୱ ହେଉଅଛୁ ଯେ ଏଥିରେ ଅହିଂସା ଓ କଷ୍ଟସହିଷ୍ଣୁତା ଉଚ୍ଚସ୍ଥାନ ଅଧିକାର କରିଅଛୁ । ଏହି ଅହିଂସା ଓ କଷ୍ଟସହିଷ୍ଣୁତା ନୀତି ଖ୍ରୀଷ୍ଟୀୟାନ ଧର୍ମୋପଦେଶ ଓ ମହାତ୍ମାଗାନ୍ଧୀଙ୍କର ନୀତିରୁ ଆଗତ । ଯେଉଁମାନେ 'ପ୍ରତିବାଦ ଅଭିଯାନ'ରେ ଅଂଶ ଗ୍ରହଣ କରୁଅଛନ୍ତି, ସେମାନେ ଯେ ସବୁବେଳେ ଏହି ନୀତିକୁ ମାନି ଚଳୁ ଅଛନ୍ତି, ଏପରି କୁହାଯାଇ ନପାରେ । ତଥାପି ଆତ୍ମସମ୍ପତ୍ତ ଓ ଅହିଂସ ଶୋଭାଯାତ୍ରା ଅତି ସାଧାରଣ ହୋଇ ପଡ଼ିଅଛୁ । ଅନେକ ସ୍ଥଳରେ ଶୋଭାଯାତ୍ରା-କାରୀଙ୍କ ଉପରେ ଅତ୍ୟାଚାର ହୋଇଥିଲେହେଁ ସେମାନଙ୍କର ଅହିଂସ ଆଚରଣ ବିଶେଷଭାବରେ ଉଲ୍ଲେଖଯୋଗ୍ୟ ।

ଏଠାରେ ନାଗରିକ-ଅଧିକାର-ଆନ୍ଦୋଳନର ବିଭିନ୍ନ ରୂପ ବର୍ଣ୍ଣନା କରିବାର ଅବକାଶ ନାହିଁ [୬] । ୧୯୬୩ ମସିହାରେ ଛଅ ମାସ ମଧ୍ୟରେ ଉପବେଶନ ଧର୍ମଘଟ ସମ୍ମିଳନୀ, ବର୍ଜ୍ଜନ, ପିକେଟିଙ୍ଗ ପ୍ରଭୃତିର ସଂଖ୍ୟା ଏକ ସହସ୍ରରୁ ଅଧିକ ହୋଇଥିଲା ଏବଂ ଏସବୁ ଦେଶର ସକଳ ଅଂଶରେ ଦେଖା ଦେଇଥିଲା ଓ ଏଥିରେ ଲକ୍ଷ ଲକ୍ଷ ଲୋକ ଯୋଗ ଦେଇଥିଲେ । ଏହି ଘଟଣାମାନଙ୍କର ବର୍ଣ୍ଣନା କରିବା ଅନାବଶ୍ୟକ । ଆମ୍ଭମାନଙ୍କର ବିଚାର୍ଯ୍ୟ ହେଉଛୁ, ଏ ସବୁ ଘଟିବାର କାରଣ କଅଣ ? ଏଗୁଡ଼ିକ କାହିଁକି ଏତେ ଉଗ୍ରହେଲା ? ଏସବୁ କୌଶଳ କେତେଦୂର ଫଳପ୍ରଦ, ତାହାର ବିଚାର କରାଯାଉ ।

କିପରି ନାଗରିକ ଅଧିକାର ଆନ୍ଦୋଳନର ସୃଷ୍ଟି ହେଲା ତାହାର ସୂଚନା ପଞ୍ଚମ ଅଧ୍ୟାୟରେ ପ୍ରଦତ୍ତ ଅନେକ ଘଟଣାରୁ ମିଳି ପାରିବ । ପଚିଶ ବର୍ଷଧରି ନିଗ୍ରୋମାନେ ନିଜ ଆସନର ଓ ଆୟର ଉନ୍ନତି କରି ଆସିଥିଲେ । କିନ୍ତୁ ପ୍ରାୟ

[୬] ନିଉୟର୍କର ହାର୍ପର ଏଣ୍ଡ ବ୍ରୋ'ଙ୍କ ଦ୍ୱାରା ୧୯୫୮ ମସିହାରେ ପ୍ରକାଶିତ ମାର୍ଟିନ ଲୁଥର କିଙ୍ଗଙ୍କର 'ଷ୍ଟ୍ରାଇଡ଼ ଟୁଓାର୍ଡ ଫ୍ରିଡମ' ଓ ୧୯୬୩ ମସିହାରେ ପ୍ରକାଶିତ 'ଷ୍ଟ୍ରେଙ୍ଗଥ ଟୁ ଲଭ୍' ; ୧୯୬୨ ମସିହାରେ ପ୍ରକାଶିତ ଲୁଇସ୍ ଇ. ଲୋମାକସ୍ଙ୍କର 'ଦି ନିଗ୍ରୋ ରିଭୋଲ୍ଟ ; ଦି ଇଉନିଭରସିଟି ଅଫ୍ ନର୍ଥ କାରୋଲିନା ପ୍ରେସ ଦ୍ୱାରା ୧୯୬୨ ମସିହାରେ ପ୍ରକାଶିତ ମେରିଲ ପ୍ରାଉଡ଼-ଫୁଟଙ୍କର 'ଡାୟାରି ଅଫ୍ ଏ ସିଟ୍-ଇନ୍' ; ନିଉୟର୍କର ସାଇମନ ଓ ସୁଷ୍ଟରଙ୍କ ଦ୍ୱାରା ୧୯୬୨ ମସିହାରେ ପ୍ରକାଶିତ ଜେମସ୍ ପେକ୍ଙ୍କର 'ଫ୍ରିଡମ ରାଇଡ଼' ପୁସ୍ତକଗୁଡ଼ିକ ଦ୍ରଷ୍ଟବ୍ୟ ।

୧୯୫୫ ମସିହାରେ ଏହି ଉନ୍ନତି ବନ୍ଦ ହୋଇଆସିଲା । ୧୯୫୪ ମସିହାରେ ସୁପ୍ରିମ-କୋର୍ଟ ଆଦେଶ ଦେଇଥିଲେ ଯେ ସ୍କୁଲମାନଙ୍କରେ ସମ୍ମିଳିତ ଭାବରେ ଶିକ୍ଷା ଦିଆଯିବ (ବର୍ଣ୍ଣଭେଦ ରହିବ ନାହିଁ) । ଏହାଦ୍ୱାରା ନିଗ୍ରୋମାନେ ଖୁବ ଆଶାନ୍ୱିତ ହୋଇଉଠିଲେ । କିନ୍ତୁ ୧୯୬୦ ମସିହା ବେଳକୁ ଦେଖାଗଲା ଯେ ପ୍ରକୃତ କାର୍ଯ୍ୟର ଅତି ସାମାନ୍ୟ ଅଂଶମାତ୍ର ହୋଇଅଛି । ଏଠାରେ ବିଶେଷଭାବରେ ଲକ୍ଷ୍ୟ କରିବାକୁ ହେବଯେ ଦ୍ରୁତ ଉନ୍ନତିର ଠିକ ଏକ ଯୁଗପରେ ନିଗ୍ରୋବିଦ୍ରୋହ ଦେଖା ଦେଇଥିଲା । ଏବେ ମଧ୍ୟବିତ୍ତ ଶ୍ରେଣୀରେ ନିଗ୍ରୋମାନଙ୍କ ସଂଖ୍ୟା କମ ନୁହେଁ । କଲେଜ ଓ ବୈଷୟିକ ବିଦ୍ୟାଳୟମାନଙ୍କରେ ଦୁଇ ଲକ୍ଷରୁ ଅଧିକ ନିଗ୍ରୋ ଛାତ୍ରଛାତ୍ରୀ ଅଛନ୍ତି । ସହରମାନଙ୍କରେ ଲକ୍ଷ ଲକ୍ଷ ନିଗ୍ରୋ ବାସ କରୁଅଛନ୍ତି । ଏଠାରେ ଆହୁରି ଉନ୍ନତି ପାଇଁ ସୁଯୋଗ ଅଛି, ତାହା ସେମାନେ ଦେଖି ପାରୁଅଛନ୍ତି । ଯେ କୌଣସି ବୈପ୍ଳବିକ ଆନ୍ଦୋଳନରେ ଦେଖାଯାଏ ଯେ ଯେଉଁମାନେ ନିମ୍ନତମ ସୋପାନରେ ଥାଆନ୍ତି, ସେମାନେ ବିଦ୍ରୋହ କରନ୍ତି ନାହିଁ; କିନ୍ତୁ ଯେଉଁମାନେ ଲାଭର ଆସ୍ୱାଦ ପାଇ ସେଥିରୁ ବଞ୍ଚିତ ହୋଇଥାନ୍ତି, ସେହିମାନେହିଁ ବିଦ୍ରୋହ କରିଥାନ୍ତି । ସାମୂହିକ ଭାବରେ ଦେଖିବାକୁ ଗଲେ ଆମେରିକାର କୃଷ୍ଣକାୟ ଲୋକେ ସୁଖରେ ଥିଲେ ; କିନ୍ତୁ ଶ୍ୱେତାଙ୍ଗଙ୍କ ତୁଳନାରେ ୧୯୬୦ ମସିହା ବେଳକୁ ସେମାନେ ଅନେକ ଅସୁବିଧା ଭୋଗୁଥିବାର ଅନୁଭବ କରି ପାରିଥିଲେ । ଗତ କେତେବର୍ଷ ଭିତରେ ସେମାନେ ଯାହା କିଛି ଉନ୍ନତି କରି ପାରିଥିଲେ, ଶ୍ୱେତାଙ୍ଗମାନଙ୍କ ଉନ୍ନତି ତୁଳନାରେ ତାହା ସାମାନ୍ୟ । ତେଣୁ ସେମାନେ ଅନେକ ପଛରେ ପଡ଼ିଅଛନ୍ତି । ସେମାନଙ୍କର ଆଶା ଯେତେ ବେଗରେ ଗତି କରିଛି, ଉନ୍ନତି ସେତେ ବେଗରେ ଗତି କରି ପାରିନାହିଁ । ତେଣୁ ଏ ଦୃଷ୍ଟିରୁ ମଧ୍ୟ ସେମାନେ ପଛରେ ପଡ଼ି ରହିଛନ୍ତି । ଆଉ ଗୋଟିଏ କଥା; ଅନ୍ୟାନ୍ୟ ସଂଖ୍ୟାଲଘୁ ଦଳ ଏଥି ମଧ୍ୟରେ ଯେତେ ଲାଭ ପାଇଅଛନ୍ତି ଓ ଯେପରି ସୁଯୋଗରହିତ ପରିସ୍ଥିତିରୁ ମୁକ୍ତି ପାଇଅଛନ୍ତି, ନିଗ୍ରୋମାନେ ସେତେ ଲାଭ ପାଇ-ନାହାନ୍ତି ବା ସେପରି ମୁକ୍ତି ପାଇନାହାନ୍ତି । ଏଦୃଷ୍ଟିରୁ ମଧ୍ୟ ନିଗ୍ରୋମାନେ ଅପେକ୍ଷାକୃତ ପଛରେ ପଡ଼ିଯାଇଅଛନ୍ତି ।

ଏ ସବୁର ଶିକ୍ଷଣୀୟ ହେଉଛି, କ୍ରମାଗତ ବିସ୍ଫୋରଣଶୀଳ ନାଟକୀୟ ପ୍ରତିବାଦ ଏଥିପାଇଁ ଫଳପ୍ରଦ ହୋଇଅଛି କି ? ସାମାଜିକ ସମସ୍ୟାର ସମାଧାନରେ ଏହି ପନ୍ଥା ସାହାଯ୍ୟ କରୁଛି କି ? ମୋ ମତରେ ଏହି ପ୍ରଶ୍ନମାନଙ୍କର ଉତ୍ତର ହେଉଛି, "ହଁ" । ନାଗରିକ ଅଧିକାର ଆନ୍ଦୋଳନ ହେଉଛି ଗୋଟିଏ ସୁକ୍ଷମ କୌଶଳର ଏକ ଆବଶ୍ୟକୀୟ ମୂଲ୍ୟବାନ ଅଙ୍ଗ । ଏହାର ଅର୍ଥ ନୁହେଁ ଯେ କେବଳ ଏହି ଆନ୍ଦୋଳନଟି ଈପ୍ସିତ ଫଳ ଦେଇ ପାରିବ ; ଏଥିରେ କିଛି କ୍ଷତିର ଆଶଙ୍କା ନାହିଁ ବା ଏହାଦ୍ୱାରା

ସମସ୍ତ ଲକ୍ଷ୍ୟ ହାସଲ ହୋଇଯିବ । ମୁଁ ଦେଖି ପାରୁଛୁ ଯେ ଏହାର ତିନୋଟି ପ୍ରଧାନ କାର୍ଯ୍ୟ ଅଛୁ । (୧) ଗୋଟିଏ ନାଟକୀୟ ଓ ବାଦବିବାଦମୂଳକ ଆନ୍ଦୋଳନ ହୋଇଥିବାରୁ ଏହା ଆମେରିକାବାସୀ କୃଷ୍ଣକାୟ ଲୋକଙ୍କର ଦୁରବସ୍ଥା ଓ ଦାବୀପ୍ରତି ଲୋକସାଧାରଣଙ୍କର ଦୃଷ୍ଟି ପଡ଼ିଅଛୁ । (୨) ପ୍ରଭାବଶାଳୀ ସଂପ୍ରଦାୟର ଅନେକ ଲୋକ ବହୁବର୍ଷ ହେଲା ଏହି ସମସ୍ୟା ପ୍ରତି ସହାନୁଭୂତି ଦେଖାଉଥିଲେହେଁ ନିଗ୍ରୋମାନଙ୍କ ଅବସ୍ଥାରେ ଅତି ସାମାନ୍ୟ ଉନ୍ନତି ଦେଖି ସନ୍ତୁଷ୍ଟ ରହୁଥିଲେ; ସେମାନେ ଯେ କି ଅସୁବିଧାରେ ରହୁବାରୁ କ୍ରୋଧ ପ୍ରକାଶ କରୁଥିଲେ ତାହା ଆଦୌ ଭାବୁ ନଥିଲେ । (୩) ଗତ କେତେବର୍ଷ ହେଲା ଆମେରିକାର ନିଗ୍ରୋମାନେ ଉଚ୍ଚ ସ୍ୱରରେ ଘୋଷଣା କରି ଆସୁଅଛନ୍ତି :—୧୯୪୦ ମସିହାର ପରବର୍ତ୍ତୀ ଦଶକ ଓ ୧୯୫୦ ମସିହାର ପରବର୍ତ୍ତୀ ଦଶକରେ ଆମର ଯେଉଁ ହାରରେ ଉନ୍ନତି ହୋଇଅଛି, ସେହିପରି ଚାଲିଲେ, ଆମର ଅଣନାତି ପଣନ.ତି ଅମଳକୁ ଅବା ପ୍ରକୃତ ସାମ୍ୟ ଆସିବ । ଆମେ ସେଭଳି ଆଶା ଧେନ ବସିବାକୁ ପ୍ରସ୍ତୁତ ନୋହୁ । ଆମକୁହିଁ ଏ ପ୍ରଶ୍ନର ସମ୍ମୁଖୀନ ହେବାକୁ ପଡ଼ିବ । ଶ୍ୱେତାଙ୍ଗମାନେ ଏ ପ୍ରଶ୍ନ ପ୍ରତି ବଧିର ଥିଲେ; ସେହି ବଧିରତା ଏହି ଘୋଷଣାର ଧ୍ୱନିରେ ଦୂର କରିବାର ଚେଷ୍ଟା ହୋଇଅଛି । ପ୍ରକୃତପକ୍ଷରେ ବର୍ତ୍ତମାନ ସମସ୍ତେ ସମସ୍ୟାସହିତ ପରିଚିତ ଏବଂ ପ୍ରତ୍ୟେକ ଲୋକଜାଣେ ଯେ ଏହି ସମସ୍ୟାର ସମାଧାନ ସ୍ୱତଃ ହୋଇଯିବ ନାହିଁ । ଏହା ଗୋଟିଏ ସାମାଜିକ ସମସ୍ୟା ହୋଇପଡ଼ିଛି ।

ନାଗରିକ ଅଧିକାର ଆନ୍ଦୋଳନର ଦ୍ୱିତୀୟ ପ୍ରଧାନ ପ୍ରଭାବ ହୋଇଛି ଯେ ଲୋକସାଧାରଣ ଯେଉଁ ଅର୍ଥରେ ସଂଖ୍ୟାଗୁରୁ-ସଂଖ୍ୟାଲଘୁ ସମ୍ପର୍କ ବୁଝୁଥିଲେ, ଏବେ ତାହାର ପରିବର୍ତ୍ତନ ହୋଇଅଛି । ବ୍ୟକ୍ତିଗତ ଓ ଘରୋଇ ବିଦ୍ୱେଷ ଓ ଭେଦଭାବ ପ୍ରଦର୍ଶନରେ କିଛି ପରିବର୍ତ୍ତନ ହୋଇ ପାରି ନଥାଏ; ମାତ୍ର ପ୍ରଣୟନ କରାଯାଉଥିବା ଶତ ଶତ ଆଇନ ଅଦାଲତର ରାୟ, ଶାସନ ବିଭାଗୀୟ ଆଦେଶ ପ୍ରଭୃତି ଦ୍ୱାରା ସମଗ୍ର ଆଇନ ରାଜନୀତି-ବାଣିଜ୍ୟବିଭାଗ ସଂସ୍ଥାମାନ 'ସମାନ ବ୍ୟବହାର' ନୀତିକୁ ସ୍ୱୀକାର କରି ଅଛନ୍ତି । କାର୍ଯ୍ୟ କରିବା ପାଇଁ ଘରୋଇ ବିଦ୍ୱେଷର କ୍ଷେତ୍ର ସଙ୍କୀର୍ଣ୍ଣ । ସମତାର ଗୋଟାଏ ଆକର୍ଷଣ ଅଛି । ଏହା ଆମ୍ଭମାନଙ୍କୁ ଅଭେଦଭାବ ଆଡ଼କୁ ଟାଣୁଛି । ଏପରି ଏକ ପରିସ୍ଥିତି ସୃଷ୍ଟି ହୋଇଅଛି ଯେ ସେଥିରେ ଶିକ୍ଷାଦାନ, ଆପୋଷ ଆଲୋଚନା, ମିଳନ ପ୍ରଭୃତି କୌଶଳ ଅଧିକ ଫଳପ୍ରଦ ହୋଇପାରିବ ।

ସବୁଠାରୁ ଗୁରୁତ୍ୱପୂର୍ଣ୍ଣ କଥା ହେଉଛି ଯେ ନାଗରିକ ଅଧିକାର ଆନ୍ଦୋଳନ ନିଗ୍ରୋମାନଙ୍କ ଉପରେ ଯଥେଷ୍ଟ ପ୍ରଭାବ ପକାଇଅଛି । ସେମାନେ ନମ୍ର ଯୁ ରହି ନିଜର ଅବସ୍ଥା ଅନୁସାରେ ପ୍ରତିକ୍ରିୟା ପ୍ରକାଶ କରୁଥିଲେ । ଏବେ ସେମାନେ

ସକ୍ରିୟ ହୋଇ ଉଠିଅଛନ୍ତି [୭]। ଅନେକ ପୁରୁଷଧରି ସେମାନେ କୌଶଳ ସହକାରେ ନିଜକୁ ଚଳାଇ ନେଉଥିଲେ; ଅନେକ ସମୟରେ ଘୋର କଷ୍ଟ ସହୁଥିଲେ। ମାତ୍ର ବର୍ତ୍ତମାନ ସେମାନେ ପରିସ୍ଥିତି ସହିତ ସଂଗ୍ରାମ କରୁଅଛନ୍ତି। ଏପରି ସଂଗ୍ରାମ କରିବା ପାଇଁ ସେମାନଙ୍କୁ ଶିକ୍ଷା, ରାଜନୀତି ଓ ଅର୍ଥନୀତି ଶକ୍ତି ଦେଇଅଛି। ଅବଶ୍ୟ ମୁଁ ଏହାର ସନ୍ତୋଷଜନକ ପ୍ରମାଣ ଦେଇ ପାରିବି ନାହିଁ କିନ୍ତୁ ମୋର ଦୃଢ଼ ଧାରଣା ଯେ ଗତ କେତେବର୍ଷ ମଧ୍ୟରେ ନିଗ୍ରୋମାନଙ୍କର ଆତ୍ମ-ସମ୍ମାନ ଜ୍ଞାନ ଯଥେଷ୍ଟ ବୃଦ୍ଧି ପାଇଅଛି। ନିଗ୍ରୋମାନେ ଗୋଟାଏ ଦାବୀ କରି ପାରିଅଛନ୍ତି; ସେଥିପାଇଁ ଦୁଃଖ ସହ୍ୟ କରିଅଛନ୍ତି ଏବଂ ଉଲ୍ଲେଖଯୋଗ୍ୟ ବିଜୟ ମଧ୍ୟ ହାସଲ କରିଅଛନ୍ତି। ଏହି ପରିବର୍ତ୍ତନର ସୁଫଳ ସମଗ୍ର ଜାତି ଉପଭୋଗ କରିବ। କୌଣସି ସମ୍ପ୍ରଦାୟର ଆତ୍ମସମ୍ମାନ ବୋଧ ନଥିଲେ ତାହା ଗୋଟିଏ ବ୍ୟାଧିଗ୍ରସ୍ତ ଜାତି ଲେଖାଏ ଏପରି ଅବସ୍ଥା ଯେଉଁଠାରେ ଥାଏ, ସେଠାରେ ମାଡ଼, ଦାୟିତ୍ୱହୀନତା, ଦକ୍ଷତାର ଅପବ୍ୟବହାର, ମଦ୍ୟପାନ ଓ ମାନସିକ ରୋଗ ପ୍ରଭୃତି ଦେଖାଯାଏ। ଏହି ଅବସ୍ଥାରେ ପଡ଼ି ଲୋକ ନିଜ ଉପରେ ଓ ସମାଜ ଉପରେ ଆକ୍ରମଣ କରେ। ଯେଉଁଠାରେ ଅତ୍ୟଧିକ ଲାଭ ଥାଏ, ସେଠାରେ କିଛି କ୍ଷତି ମଧ୍ୟ ଥାଏ। ହୁଏତ ନିଗ୍ରୋମାନଙ୍କର ଆତ୍ମସମ୍ମାନ ଓ ଆତ୍ମବିଶ୍ୱାସର ଯେଉଁ ଉନ୍ନତି ଘଟିଅଛି ତାହା ସହିତ କିଛି ମନ୍ଦଫଳ—କେତେକ ବିକୃତ, ଅତିରଞ୍ଜିତ ଅଭିବ୍ୟକ୍ତି—ଜଡ଼ିତ ହୋଇଅଛି। କିନ୍ତୁ ଲାଭକ୍ଷତିର ତୁଳନା କଲେ, ଏହି ଉନ୍ନତି ମୂଲ୍ୟବାନ ଓ ଗୋଷ୍ଠୀସମ୍ପର୍କର ଉନ୍ନତି ଦିଗରେ ଉଦ୍ୟମର ଏକ ବିଶିଷ୍ଟ ଅଙ୍ଗ।

ଗୋଟିଏ କୌଶଳ ଦୃଷ୍ଟିରୁ ବିଚାର କଲେ ଦେଖାଯିବ ଯେ ନାଗରିକ ଅଧିକାର ଆନ୍ଦୋଳନର କେତେକ ବିପଦ ଅଛି। ସଂଖ୍ୟାଲଘୁ ସମ୍ପ୍ରଦାୟ ଆଡ଼ୁ ଗୁପ ପଡ଼ିବା ଫଳରେ ସଂଖ୍ୟାଗୁରୁ ସମ୍ପ୍ରଦାୟର ପ୍ରତିକ୍ରିୟା ପ୍ରକାଶ ପାଇପାରେ ଗତ କେତେବର୍ଷ ହେଲା କେତେକ ଶ୍ୱେତାଙ୍ଗ ମନୋଭାବରେ, ଓ କାର୍ଯ୍ୟରେ ବିରୋଧ ଭାବ ପ୍ରକାଶ କରୁଥିବା ନିଃସନ୍ଦେହ। ଅର୍ଥନୈତିକ ଗୁପ, ଭୋଟର ତାଲିକାରେ ନିଗ୍ରୋମାନଙ୍କ ନାମ ଲେଖାରେ ବିରୋଧ, ସ୍କୁଲମାନଙ୍କରେ ପୃଥକ୍‌କରଣ ଲୋପର ବିରୋଧ, ହିଂସା ଆଚରଣ ପ୍ରଭୃତି ସେମାନଙ୍କ କାର୍ଯ୍ୟରୁ ଏହା ସ୍ପଷ୍ଟ ପ୍ରମାଣିତ ହୁଏ। ଅବଶ୍ୟ ଏସବୁ ସାଧାରଣତଃ ଆମେରିକାର ଦକ୍ଷିଣାଞ୍ଚଳର ଘଟନା; କିନ୍ତୁ ଉତ୍ତରା-ଞ୍ଚଳରେ ଦେଖାଯାଏ ଯେ କେତେକ ଏକ ଦେଶାଗତ ସମ୍ପ୍ରଦାୟ ନିଜର ସଂଖ୍ୟାଗୁରୁ

---

[୭] ସ୍ୟାଟର୍ଡେ ରିଭ୍ୟୁ ପତ୍ରିକାର ୧୯୬୩ ମସିହା ଶୀତକାଳୀନ ସଂଖ୍ୟାର ୩୬୦-୩୬୬ ପୃଷ୍ଠାରେ ପ୍ରକାଶିତ ଓ ହାରଲ୍ଡ ଡବ୍ଲ୍ୟୁ ଫାଣ୍ଡାଙ୍କ ଦ୍ୱାରା ଲିଖିତ "ଦ ନିଉ 'ନିଉ ନିଗ୍ରୋ' : ଇମର୍ଜିଙ୍ଗ ଆମେରିକାନ" ପ୍ରବନ୍ଧ ଦେଖ।

ଆସନ (ସ୍ଥିତ) ବିଷୟରେ ନିରପେକ୍ଷ ନୁହଁନ୍ତି, କେତେକ ବ୍ୟକ୍ତି ନିଜର ସ୍ଥାନ ବିଷୟରେ ସନ୍ଦିହାନ । ସେମାନେ ମନେ କରୁଅଛନ୍ତି ଯେ, ପରିବର୍ତ୍ତନ ଅତିଦ୍ରୁତ ଗତିରେ ଚାଲିଛି ନିଗ୍ରୋମାନଙ୍କର ଦାବୀ ଅତି ଅଧିକ । ଏହି ଆଶଙ୍କାକୁ ଅତିରଞ୍ଜିତ କରିବା ବଡ଼ ସହଜ । ନାଗରିକ ଅଧିକାର ଆନ୍ଦୋଳନ ଦ୍ୱାରା ବିରୋଧ ଭାବ ବାହାରକୁ ସ୍ପଷ୍ଟ ଜଣାପଡ଼ି ଯାଇପାରେ ମାତ୍ର ଏହାଦ୍ୱାରା ବିରୋଧଭାବ ବୃଦ୍ଧି ପାଇ ନାହିଁ । ବିରୋଧ ବାହାରକୁ ଜଣା ପଡ଼ିଲେ ତାହାକୁ ଦୂର କରିବା ସହଜ ହୋଇପାରେ । ଯେଉଁ ବିରୋଧଭାବ ବହୁକାଳରୁ ଲୁକ୍‌କାୟିତ ଭାବରେ ରହିଥାଏ, ତାହାକୁ ଦୂର କରିବା ସେତେ ସହଜ ନୁହେଁ । ଗୋଟାଏ ନିତାନ୍ତ ଶୋଚନୀୟ ପରିସ୍ଥିତି ଧରି ନିଆଯାଉ । ନିଗ୍ରୋମାନଙ୍କୁ ସମତାଲାଭରୁ ବଞ୍ଚିତ କରିବା ପାଇଁ ଯେଉଁମାନେ ନରହତ୍ୟା କରିବାକୁ ପ୍ରସ୍ତୁତ, ସେମାନେ ପ୍ରକାରାନ୍ତରେ ନିଗ୍ରୋମାନଙ୍କ ସ୍ୱାର୍ଥରକ୍ଷାରେ ସାହାଯ୍ୟ କରନ୍ତି । ସେମାନଙ୍କର ଉଦ୍ଦେଶ୍ୟ ଯାହା ଥାଏ କାର୍ଯ୍ୟତଃ ତାହାର ଠିକ ବିପରୀତହିଁ କରନ୍ତି ।

ନାଗରିକ ଅଧିକାର ଆନ୍ଦୋଳନକୁ ଆଉ ଗୋଟିଏ ବିଷୟର ସମ୍ମୁଖୀନ ହେବାକୁ ପଡ଼ୁଅଛି ଓ ତାହା ବିରୋଧ ସୃଷ୍ଟି ଅପେକ୍ଷା ଆହୁରି ବିପଜ୍ଜନକ । ଏ ପର୍ଯ୍ୟନ୍ତ ଏହି ଆନ୍ଦୋଳନ ଅତି ଆଶ୍ଚର୍ଯ୍ୟରୂପେ ସଫଳତାର ସହିତ ଅହିଂସ ଆଦର୍ଶ ଦ୍ୱାରା ପ୍ରଭାବିତ ହୋଇ ଆସିଅଛି । କିନ୍ତୁ ଯେତେ ଅଧିକ ଲୋକ ଏହି ଆନ୍ଦୋଳନରେ ଯୋଗଦେବେ ଓ ଏହାର ଲକ୍ଷ୍ୟ ଯେତିକି ପ୍ରଶସ୍ତତର ହେବ, ଅହିଂସା ଆଦର୍ଶକୁ ପ୍ରତିପାଳନ କରିବା ସେତିକି କଷ୍ଟକର ହେବ । ଏହି ଆନ୍ଦୋଳନର ଗୋଟାଏ ଅଙ୍ଗ ହେଉଛି 'ଆଇନ ଅମାନ୍ୟ' ଅର୍ଥାତ୍ କୌଣସି ଘୃଣ୍ୟ ଆଇନକୁ ପ୍ରକାଶ୍ୟରେ ଓ ଜ୍ଞାତସାରରେ ଅବମାନନା କରିବା । ପ୍ରାୟ ପ୍ରତ୍ୟେକ ଘଟଣାରେ ଯେଉଁମାନେ ଆଇନ ଅମାନ୍ୟ କରନ୍ତି, ସେମାନେ ଆଇନଭଙ୍ଗ ଜନିତ ଅପରାଧର ଦଣ୍ଡକୁ ବିନାବାଧାରେ ଗ୍ରହଣ କରି ନେବାକୁ ପ୍ରସ୍ତୁତ ଥାଆନ୍ତି । ସେମାନଙ୍କର ବିଶ୍ୱାସ ଯେ ଏହା ଦ୍ୱାରା ସେମାନେ ଆଇନମୁକ୍ତିକର ଅନ୍ୟାୟ ବ୍ୟବସ୍ଥା ନାଟକୀୟ-ଭାବରେ ଜାତିକୁ ଦେଖାଇ ଦେଇ ପାରିବେ । ଅବଶ୍ୟ ମାର୍କିନ ଯୁକ୍ତରାଷ୍ଟ୍ର ପକ୍ଷରେ ଆଇନ ଅମାନ୍ୟ କିଛି ନୂଆ କଥା ନୁହେଁ । ଏକ ଅର୍ଥରେ କହିବାକୁ ଗଲେ ଏହି ରାଷ୍ଟ୍ରର ପ୍ରତିଷ୍ଠା ହୋଇଥିଲା ଆଇନ ଅମାନ୍ୟର ଏକ ସୁଶୃଙ୍ଖଳ ଅଭିଯାନ ଦ୍ୱାରା । ଆମର ଉଜ୍ଜ୍ୱଳନ ଜାତୀୟ ବୀରମାନେ ଏହି ଆଇନ ଅମାନ୍ୟ ଅଭିଯାନର ନେତା ଥିଲେ । ଆମେରିକାର ଅନେକ ଲୋକ ଏବେ ମଧ୍ୟ ହେନରି ଡେଭିଡ଼ ଥୋରୋଙ୍କର ମନୋଭାବକୁ ହୃଦୟରେ ପୋଷଣ କରନ୍ତି । କୌଣସି ସଂଖ୍ୟାଲଘୁ ସମ୍ପ୍ରଦାୟ ଅପେକ୍ଷାକୃତ କ୍ଷମତାଶୂନ୍ୟ ହୋଇ ପଡ଼ିଥିଲେ ଓ ଯଦି ଏହା ଅହିଂସ ରହିପାରେ,

ତେବେ ତାହା ପକ୍ଷରେ ଆଇନ ଅମାନ୍ୟ ଉପକାରୀ ହେବାର ସମ୍ଭାବନା ଅଛି [୮]। ଗୋଟିଏ ପକ୍ଷରୁ ହିଂସା ହେଲେ ଅପର ପକ୍ଷରୁ ଅଧିକ ପ୍ରତିହିଂସା ଘଟିବ। ସମାନ ଅଧିକାର ଦାବୀ କରିବାର ଯେ ନୈତିକ ଭିତ୍ତି, ତାହା ଏହି ହିଂସା ଦ୍ୱାରା ଦୁର୍ବଳ ହୋଇ ପଡ଼ିବ; କାରଣ ଏହାଦ୍ୱାରା ଏକପକ୍ଷ ନିଜ ପାଇଁ ଯେଉଁ ଅଧିକାର ଦାବୀ କରେ, ଅପର ପକ୍ଷର ଠିକ୍ ସେହି ଦାବୀକୁ ଅସ୍ୱୀକାର କରେ।

ଉପରୋକ୍ତ ଦଗ ଆଲୋଚନା କରିବା ଫଳରେ ମୋର ମତ ଏହି ଯେ ଆଇନ ଅମାନ୍ୟ ଗୋଟିଏ ଫଳପ୍ରଦ କୌଶଳ। ଏଥିରେ କେତେକ ବିପଦ ଅଛି ମାତ୍ର ସାଠ୍ୟ ପ୍ରତିଷ୍ଠା ଦିଗରେ ଦ୍ରୁତ ଗତିରେ କାର୍ଯ୍ୟ ହେଲେ ଏହି ବିପଦଗୁଡ଼ିକ ବୃଦ୍ଧି ପାଇବାର ଆଶଙ୍କା ଅତି ଅଳ୍ପ। ଏହି ଆନ୍ଦୋଳନ ଯେତିକି ସଫଳତା ଲାଭ କରୁଥିବ, ତାହାକୁ ସେତିକି ସାହାଯ୍ୟ ପାଉଥିବ ଏବଂ କେତେକ ପରିମାଣରେ ଅନ୍ୟାନ୍ୟ କୌଶଳ ଏହାର ସ୍ଥାନ ଅଧିକାର କରୁଥିବ। ପରବର୍ତ୍ତୀ ଅଧ୍ୟାୟରେ ଏହିପରି ଅନ୍ୟ କେତେକ କୌଶଳର ଅବତାରଣା କରାଯିବ।

---

[୮] ୧୯୬୩ ମସିହା ମାର୍ଚ୍ଚ ମାସର ଆମେରିକାନ ଜର୍ଣ୍ଣାଲ ଅଫ୍ ସୋସିଓଲଜି ପତ୍ରିକାର ୫୪୪-୫୫୦ ପୃଷ୍ଠାରେ ପ୍ରକାଶିତ ଜେମସ୍ ଡବଲ୍ୟୁ, ଭେଣ୍ଡର ଜାଣ୍ଡେନଙ୍କ ଲିଖିତ 'ଦ ନନ୍‌ଭାୟୋଲେଣ୍ଟ ରେଜିଷ୍ଟାନସ୍ ମୁଭମେଣ୍ଟ ଏଗେନ୍‌ଷ୍ଟ ସିଗ୍ରିଗେସନ୍' ପ୍ରବନ୍ଧ ଦେଖ।

# ଅଷ୍ଟମ ଅଧ୍ୟାୟ

## ଅନ୍ତର୍ଗତ ସାମ୍ୟର ବାହାରେ
## ସଂସ୍ପର୍ଶ ଏକ ଅନୁମାନ

ସାମ୍ପ୍ରଦାୟିକ ସମ୍ପର୍କ ବିଷୟରେ ଗୋଟିଏ ଅତି ପ୍ରଚଳିତ ସାଧାରଣଜ୍ଞାନଲବ୍ଧ ଧାରଣା ହେଉଛି—ଲୋକେ ଯଦି ପରସ୍ପରକୁ ଭଲଭାବରେ ଜାଣି ପାରିବେ ତେବେ ବିଦ୍ୱେଷ ଓ ଶତ୍ରୁତା ରହିବ ନାହିଁ। ଅନ୍ୟାନ୍ୟ ସାଧାରଣଜ୍ଞାନଲବ୍ଧ ଧାରଣାପରି ଏଥିରେ ମଧ୍ୟ କେତେକ ସତ୍ୟ ଅଛି। କିନ୍ତୁ କିପରି ପରିସ୍ଥିତିରେ ଉଲ୍ଲିଖିତ କଥାଟି ସତ୍ୟ, ଏଥିରେ ତାହାର ସୂଚନା ନାହିଁ; ତେଣୁ ଏହା ଯେତିକି ସଦ୍‌ଭାବ ଜନ୍ମାଇ-ପାରେ, ସେତିକି ଭ୍ରମ ମଧ୍ୟ ସୃଷ୍ଟି କରିପାରେ। କେତେ ଗୁଡ଼ିଏ ସମାଜ ବିଜ୍ଞାନଗତ ଓ କେତେକ ମନସ୍ତାତ୍ତ୍ୱିକ ଅନୁମାନକୁ ସତ୍ୟ ବୋଲି ଧରି ନିଆଯାଇ ଏହା କୁହାଯାଇଅଛି। ଯଥା—ଚିରାଚରିତ ଧାରଣା ଭ୍ରାନ୍ତ ସମାଚ୍ଛର ଦ୍ୱାରା ପୁଷ୍ଟ ହୁଏ; କୌଣସି ସମ୍ପ୍ରଦାୟର ଲୋକଙ୍କୁ ଯେପରି କଳ୍ପନା କରାଯାଇଥାଏ, ସେହି ଅନୁସାରେ ସେମାନଙ୍କ ପ୍ରତି ଶତ୍ରୁତା ଜନ୍ମିଥାଏ ଓ କେତେକ ନିର୍ଦ୍ଦିଷ୍ଟ ଲୋକଙ୍କ ସଂସ୍ପର୍ଶରେ ଆସିବାଦ୍ୱାରା ଏହି ଶତ୍ରୁତା ହ୍ରାସ ପାଇଥାଏ। ପରସ୍ପରର ସ୍ୱାର୍ଥ ବିଶିଷ୍ଟ ଓ ଲାଭ-ବିଶିଷ୍ଟ କୌଣସି କାର୍ଯ୍ୟରେ ଏକତ୍ର ଯୋଗ ଦେବା ଦ୍ୱାରା ସମ୍ପ୍ରଦାୟ ବାହାରର ଲୋକ ସହିତ କାର୍ଯ୍ୟକ୍ଷେତ୍ରରେ ଏକତ୍ର ନିଯୁକ୍ତ ଥିବା ଲୋକର ସମ୍ପର୍କ ପୁନଃନିର୍ଦ୍ଧାରିତ ହୁଏ।

ଟିକିଏ ଚିନ୍ତାକଲେ ଜଣାଯିବ ଯେ ସଂସ୍ପର୍ଶରେ ଆସିବା ଦ୍ୱାରା ଶତ୍ରୁତା ବୃଦ୍ଧି ପାଇପାରେ, କମିଯାଇ ନପାରେ। ଅନ୍ୟ ଲୋକଙ୍କୁ ଭଲଭାବରେ ଜାଣିବା ଦ୍ୱାରା ବିରୋଧଭାବ ଆହୁରି ପ୍ରବଳ ହୋଇପାରେ। ଏହି ଧାରଣା ସହିତ ଯେ କେବଳ ଟିକିଏ ଭାବ ପ୍ରବଣତା ଅଛି ତାହା ନୁହେଁ; ତହିଁରୁ ଅଧିକ କିଛି ଅଛି। କେତେକ

ଲୋକଙ୍କର ସାମ୍ପ୍ରଦାୟିକ ସମ୍ପର୍କ ବିଷୟରେ ଉଦାର ଧାରଣା ଥାଏ । ତାହାର ଏକ ମାତ୍ର କାରଣ ଏହି ଯେ ସେମାନେ ଅନ୍ୟ ଲୋକଙ୍କୁ ଭଲଭାବରେ ଜାଣି ନଥାନ୍ତି । ଦୁହିଁଙ୍କ ଜୀବନଗତ ଆଦର୍ଶରେ କି ପ୍ରଭେଦ ଅଛି ଜାଣି ନଥାନ୍ତି କିମ୍ବା ଭେଦଭାବଦ୍ୱାରା ବ୍ୟବହାର କି କ୍ଷତି ସାଧିତ ହୁଏ, ତାହା ଜାଣି ନଥାନ୍ତି । ମୋର ଅନୁମାନ, ଆମର କଲେଜମାନଙ୍କରୁ ସହସ୍ର ସହସ୍ର ଲୋକ ଉପାଧି ଲାଭ କରି ଉତ୍ତୀର୍ଣ୍ଣ ହୁଅନ୍ତି, କିନ୍ତୁ ସେମାନଙ୍କ ଶିକ୍ଷାକୁ ପୂର୍ଣ୍ଣାଙ୍ଗ ମନେ କରିବା ଭ୍ରମାତ୍ମକ । ଲୋକମାନଙ୍କୁ ପରସ୍ପରର ନିକଟକୁ ଆଣିବା ଲାଗି ବିଭିନ୍ନ ଅଧ୍ୟୟନ ଗୋଟିଏ ଉଦ୍ଦେଶ୍ୟ ହୋଇପାରେ ଯେ ଗଣତନ୍ତ୍ର ଓ ନ୍ୟାୟ ନାମରେ ସମ୍ପର୍କ ସ୍ଥାପନ ପାଇଁ ସେମାନେ ଉପଯୁକ୍ତ ଲୋକ ବାଛି ପାରିବେ । ଏହା ଦ୍ୱାରା ଅନେକ ଲୋକ ପ୍ରକୃତ ସତ୍ୟର କେବଳ ଗୋଟିଏ ଅଂଶ ସହିତ ପରିଚିତ ହେବେ । ଯେତେବେଳେ ସେମାନେ କେତେକ ଅପ୍ରିୟ ଘଟନା ଜାଣି ପାରିବେ (ଯଥା—ବିଭିନ୍ନ ଧର୍ମ ସମ୍ପ୍ରଦାୟ ମଧ୍ୟରେ ମୂଲ୍ୟବୋଧଗତ ବଦ୍ଧମୂଳ ବିରୋଧ କିମ୍ବା ସହରର ବସ୍ତି ଅଞ୍ଚଳରେ ବିରୋଧଭାବାପନ୍ନ ବୃତ୍ତିଗତ ସଂଘାତ) ସେତେବେଳେ ବନ୍ଧୁତ୍ୱପୂର୍ଣ୍ଣ ଆନ୍ତଃସାମ୍ପ୍ରଦାୟିକ ସମ୍ପର୍କର ପ୍ରତିଷ୍ଠା ବିଶେଷ ପ୍ରତିହତ ହୋଇପାରେ ।

ଏହି ସମ୍ପର୍କ ମତବାଦରେ ପ୍ରଥମେ ଗୋଟିଏ ପରିବର୍ତ୍ତନ କରାଗଲା ଯେ ସାମ୍ପ୍ରଦାୟିକ ସୀମାରେଖା ଅତିକ୍ରମ କରି ସମାନ ଆସନ ବିଶିଷ୍ଟ ଲୋକଙ୍କ ମଧ୍ୟରେ ସମ୍ପର୍କ ଦ୍ୱାରା ଅଧିକ ବନ୍ଧୁତ୍ୱପୂର୍ଣ୍ଣ ସାମ୍ପ୍ରଦାୟିକ ସମ୍ପର୍କ ପ୍ରତିଷ୍ଠା କରାଯାଇପାରେ । ଜଣେ ବୁଦ୍ଧିଜୀବୀ ସହିତ ଅନ୍ୟ ଜଣେ ବୁଦ୍ଧିଜୀବୀର, ଜଣେ ସୈନ୍ୟ ସହିତ ଆଉ ଜଣେ ସୈନ୍ୟର, ଜଣେ ଖେଳାଳି ସହିତ ଆଉ ଜଣେ ଖେଳାଳିର ଯେତେବେଳେ ମିଳନ ହୁଏ, ସେତେବେଳେ ସେମାନେ ଧର୍ମ ଦଳ ବା ଜାତୀୟତାର ସୀମା ଅତିକ୍ରମ କରିଯାଆନ୍ତି ଓ ଏହା ଫଳରେ ବିଦ୍ୱେଷ ଓ ଶତ୍ରୁତା ହ୍ରାସପାଏ । ଏପରି ସମ୍ପର୍କ ଘଟିଲେ ସେମାନଙ୍କ ପରସ୍ପର ପ୍ରତିକ୍ରିୟା ବିଭେଦକ ରେଖା ଦ୍ୱାରା ପ୍ରଭାବିତ ନ ହୋଇ ସଂଯୋଗକାରୀ ସ୍ୱାର୍ଥ, ମୂଲ୍ୟବୋଧ ଓ ନିଜନିଜର କାର୍ଯ୍ୟ ଦ୍ୱାରା ଅଧିକ ପରିମାଣରେ ପ୍ରଭାବିତ ହୁଏ । ଏହି ଚିନ୍ତାଧାରାରେ ଯେ ଯଥେଷ୍ଟ ସତ୍ୟ ଅଛି, ସେଥିରେ ସନ୍ଦେହ ନାହିଁ । ଯେଉଁମାନେ ସାମ୍ପ୍ରଦାୟିକ ସମ୍ପର୍କର ଉନ୍ନତି ଲାଗି ଚେଷ୍ଟିତ, ସେମାନେ ସମାନ ଆସନବିଶିଷ୍ଟ ଲୋକଙ୍କ ମଧ୍ୟରେ ସମ୍ପର୍କ ପ୍ରତିଷ୍ଠା-ନୀତିକୁ ଏକ କୌଶଳରୂପେ ବହୁଳ ଭାବରେ ବ୍ୟବହାର କରିଅଛନ୍ତି ଓ କରୁଅଛନ୍ତି ; ତଥାପି କେତେ ଗୁଡ଼ିଏ ପ୍ରଶ୍ନର ଆହୁରି ଆଲୋଚନା ଆବଶ୍ୟକ । ସମାନ ସୁବିଧା ବିଶିଷ୍ଟ ଆସନରେଥିବା ଲୋକଙ୍କ ମଧ୍ୟରେ ସମ୍ପର୍କ ସ୍ଥାପିତ ହେଲେ ଯେପରି ଫଳ ମିଳେ, ସମାନ ସୁବିଧା ରହିତ ଆସନରେଥିବା ଲୋକଙ୍କ ମଧ୍ୟରେ ସମ୍ପର୍କ ସ୍ଥାପିତ ହେଲେ ସେହିପରି ଫଳମିଳିବ କି ? ଜଣେ ଆତ୍ମକେନ୍ଦ୍ରିକ ବା ଚିନ୍ତାକୁଳବ୍ୟକ୍ତି ଉପରେ ଏହାର ପ୍ରଭାବଯାହା, ଜଣେ ଉଦାର-ମନା ବ୍ୟକ୍ତି ଉପରେ କଅଣ ଠିକ୍ ତାହା ? କେଉଁ ପରିସ୍ଥିତିରେ ସମାନ ଆସନ ବିଶିଷ୍ଟ

ଲୋକଙ୍କ ମଧ୍ୟରେ ସମ୍ପର୍କ ସ୍ଥାପିତ ହେବନି। ଜଣେ ଅନ୍ୟ ଜଣକ ବିଷୟରେ କହି ପାରିବ, "ହଁ, ଲୋକଟି ଭଲ ; କିନ୍ତୁ ସେ ହେଉଛନ୍ତି ତାଙ୍କ ସମ୍ପ୍ରଦାୟର ଗୋଟିଏ ବ୍ୟତିକ୍ରମ—ବରଂ ଏହି ବ୍ୟତିକ୍ରମ ଦ୍ୱାରା ସାଧାରଣ ସୂତ୍ର ପ୍ରମାଣିତ ହେଉଛି ଯେ ସେ ସମ୍ପ୍ରଦାୟଟା ମନ୍ଦ" କେତେବେଳେ ସୂତ୍ରଟିକୁ ମଧ୍ୟ ଖଣ୍ଡନ କରିହେବ ? କୌଣସି ଦୃଷ୍ଟିରୁ ସ୍ୱାର୍ଥର କେଉଁ ସୀମାଭିତରେ ସମ-ଆସନ-ବିଶିଷ୍ଟ ସମ୍ପର୍କ ଐକ୍ୟବଦ୍ଧ, ସାମ୍ପ୍ରଦାୟିକ ସମ୍ପର୍କର ଅଧିକ ଉନ୍ନତି ସାଧନ କରି ପାରିବ ? ବାସଗୃହ, ଗୃହକର୍ମରେ ନିଯୁକ୍ତି, ନାଗରିକ-ବ୍ୟାପାର, ନା ଧର୍ମସମ୍ବନ୍ଧୀୟ କାର୍ଯ୍ୟବଳୀ ? ଏହି ଭଳି ପ୍ରଶ୍ନମାନଙ୍କର ଉତ୍ତର ପାଇବା ଲକ୍ଷ୍ୟ ରଖି ଗବେଷଣା କରାଗଲେ ସମଆସନ ବିଶିଷ୍ଟ ସମ୍ପର୍କର ଯଥାର୍ଥ ହୋଇ ପାରିବ [୧]।

ସମଆସନବିଶିଷ୍ଟ ସମ୍ପର୍କକୁ ଏକ ଫଳପ୍ରଦ ଅଭିଜ୍ଞତା ବୋଲି ଗ୍ରହଣ କରିନେବା ପରେ ବର୍ତ୍ତମାନ ଆମ୍ଭେମାନେ ଏହାର ସୀମାବାଧାରେକୁ ଯିବା। ଏ ପ୍ରକାର ସମ୍ପର୍କର ଗୋଟାଏ ବିପଦ ହେଉଛି ଯେ ଏହା କେତେକ ପରିମାଣରେ କଳ୍ପିତ ବା କୃତ୍ରିମ ହେବ ; ଏହାଦ୍ୱାରା ସଂସାରର କେବଳ ଗୋଟାଏ ଆଂଶିକ ଚିତ୍ର ମିଳିବ ; ବିଷମ-ଆସନ-ବିଶିଷ୍ଟ ସମ୍ପର୍କରେ ଯେଉଁ ଶତ୍ରୁତା ଥାଏ, ସେ ପ୍ରଶ୍ନକୁ ଏହା ସ୍ପର୍ଶ କରି ପାରିବ ନାହିଁ ଏବଂ ଏହା ମାର୍କିନ ଜୀବନର କେତେକ ଅପ୍ରିୟ ସତ୍ୟକୁ ଅନ୍ଧକାରାଚ୍ଛନ୍ନ କରି ପକାଇବ। ଅନ୍ୟାନ୍ୟ କ୍ଷେତ୍ର ପରି ଏ କ୍ଷେତ୍ରରେ ମଧ୍ୟ 'ଅଳ୍ପବିଦ୍ୟା ଭୟଙ୍କରୀ' ବୋଲି ପ୍ରମାଣିତ ହେବ। ଆଗେ କୁହା ଯାଉଥିଲା, "ସେ ଜଣେମାତ୍ର ନିଗ୍ରୋକୁ ଜାଣେ ଓ ସେହି ନିଗ୍ରୋଟି ହେଉଛି ଘରର ଦ୍ୱାର ରକ୍ଷକ ; ସେ ଜଣେମାତ୍ର ଇହୁଦୀକୁ ଜାଣେ ଓ ସେ ହେଉଛି ଗୋଟାଏ ଗୋଦାମର ଦୋକାନୀ।" ବର୍ତ୍ତମାନ ମଧ୍ୟ ଅଧିକାଂଶ ଲୋକ ଏହିପରି କହୁଥିଲେ ସୁଦ୍ଧା ଅନ୍ତତଃ କେତେଜଣ କହି ପାରିବେ,

---

[୧] ଏହି ପ୍ରଶ୍ନ ଉପରେ ଅନେକ ଉପାଦେୟ ଲେଖାଅଛି। ଦ ଇଉନିଭରସିଟି ଅଫ୍ ଏକ୍ସଟେଣ୍ଡ, ଓକଲହୋମା ପ୍ରେସରୁ ୧୯୭୧ ମସିହାରେ ପ୍ରକାଶିତ ମୁଜାଫର ସେରିଫଙ୍କ ଲିଖିତ 'ଇଣ୍ଟାରଗ୍ରୁପ କନଫ୍ଲିକ୍ଟ ଏଣ୍ଡ କୋପରେଶନ ; ଦ ରବାରସ୍ କେଭ ଏକ୍ସପେରିମେଣ୍ଟ ; ଜର୍ଣ୍ଣାଲ ଅଫ ସୋସିଆଲ ଇସୁସ୍, ୧୯୫୮ ମସିହା, ୧୪ଶ ବର୍ଷର ସଂଖ୍ୟାରେ ମେରିଆନ ରଡ଼କେ ୟାରୋଙ୍କ ଦ୍ୱାରା ସଂପାଦିତ 'ଇଣ୍ଟରନ୍ୟାସନାଲ ଡାଇନାମିକ୍‌କସ ଇନ ଏ ଡିସ୍‌ଇଗ୍ରୀଗେସନ ପ୍ରସେସ' ପ୍ରବନ୍ଧ ; ନିଉୟର୍କର ଏଣ୍ଟି-ଡିଫାମେସନ ଲିଗ୍ ଅଫ୍ ବିନାଇ ବିରଥ ଏଣ୍ଡ ସାଦାର୍ନ ରିଜିଓନାଲ କାଉନ୍‌ସିଲ ଦ୍ୱାରା ୧୯୬୩ ମସିହା ଜୁଲାଇ ମାସରେ ପ୍ରକାଶିତ ଓ ରବର୍ଟ କୋଲ୍‌ସଙ୍କ ଦ୍ୱାରା ଲିଖିତ 'ଦ ଡିସ୍‌ଗ୍ରେଗେସନ ଅଫ୍ ସାଦାର୍ଣ୍ଣ ସ୍କୁଲ୍‌ସ' ପ୍ରବନ୍ଧମାନ ଦେଖ।

"ମୁଁ ଜଣେମାତ୍ର ନିଗ୍ରୋଙ୍କୁ ଜାଣେ ଓ ସେ ହେଉଛନ୍ତି ଜଣେ ଡାକ୍ତର; ମୁଁ ଜଣେ-ମାତ୍ର ଇହୁଦୀଙ୍କୁ ଜାଣେ ଓ ସେ ହେଉଛନ୍ତି ଜଣେ ଆଇନଜ୍ଞ ।" ଯେଉଁମାନେ ସାମ୍ପ୍ରଦାୟିକ ସମ୍ପର୍କର ଉନ୍ନତି କରିବାରେ ନେତୃତ୍ୱ ନେବାର କଥା, ସେମାନେ ଏପରି ଅପ୍ରିୟ ସତ୍ୟଠାରୁ ଦୂରରେ ରହୁଥିବାରୁ ସଫଳତା ସହିତ ସମସ୍ୟାର ସମ୍ମୁଖୀନ ହୋଇ ପାରୁନାହାନ୍ତି ।

ଉପର୍ଯ୍ୟୁକ୍ତ ମନ୍ତବ୍ୟରୁ ପ୍ରତିପାଦିତ ହେବ ଯେ ସମାନଆସନ ବିଶିଷ୍ଟ ହେଉ ବା ବିଷମ ଆସନ ବିଶିଷ୍ଟ ହେଉ ସବୁ ପ୍ରକାର ଘଟନାକୁ ଅଧ୍ୟୟନ କରିବା ଦ୍ୱାରା ସାମ୍ପ୍ରଦାୟିକ ସୀମାରେଖା ଅତିକ୍ରମ କରି ପରିଣାମରେ ଐକ୍ୟବଦ୍ଧ ମାନବିକ ସମ୍ପର୍କର ଉନ୍ନତି କରାଯାଇ ପାରିବ । ଭେଦଭାବ ଦୂରକରିବାରେ ସଫଳତା ଲାଭ କରିବାକୁ ହେଲେ ସଂଖ୍ୟାଗୁରୁ-ସଂଖ୍ୟାଲଘୁ ସମ୍ପର୍କ ବିଷୟରେ ଦୃଢ଼ ବାସ୍ତବବାଦୀ ହେବାକୁ ପଡ଼ିବ । କେବଳ ଚର୍ଚ୍ଚର କେତେକ ସଙ୍ଘ ବା କଲେଜର ଆଲୋଚନା ମଧ୍ୟରେ ଆବଦ୍ଧ ରହିଲେ ଚଳିବ ନାହିଁ ।

## ସହରଜୀବନ ଓ ବାସଗୃହର ଉନ୍ନତି

ଆମର ସହରମାନଙ୍କରେ ଯେଉଁ ସମସାମୟିକ ପରିବର୍ତ୍ତନମାନ ଘଟୁଛି, ତାହାର ଆଲୋଚନା ସମ୍ପର୍କରେ ପୂର୍ବବର୍ତ୍ତୀ ଅନୁଚ୍ଛେଦରେ ଦିଆଯାଇଥିବା ନୀତିଗୁଡ଼ିକ ବଡ଼ ମୂଲ୍ୟବାନ । ଆମ୍ଭମାନଙ୍କର ପଚାରିବା ଉଚିତ—ଆମ ସହରମାନଙ୍କରେ ଓ ରାଜଧାନୀ ଅଞ୍ଚଳମାନଙ୍କରେ କଅଣ ହେଉଅଛି ? ସାମ୍ପ୍ରଦାୟିକ ସମ୍ପର୍କ ଦୃଷ୍ଟିରେ ବର୍ତ୍ତମାନ ମତିଗତିର ଗୁରୁତ୍ୱ କଅଣ ?

ସମସାମୟିକ ସହରର ଉନ୍ନତି ବିଷୟରେ ମୌଳିକ ଘଟନାଗୁଡ଼ିକ କାହାରିକୁ ଅବିଦିତ ନୁହେଁ । ଏତିକି କହିଲେ ଯଥେଷ୍ଟ ହେବ ଯେ ଆମର ବଡ଼ ବଡ଼ ସହର-ମାନଙ୍କର ଲୋକ ସଂଖ୍ୟା କମିଆସୁଛି । ଏହାର କାରଣ ଏହି ଯେ ଶ୍ୱେତାଙ୍ଗମାନେ ବହୁ ସଂଖ୍ୟାରେ ସହର ଛାଡ଼ି ଚାଲି ଯାଉଅଛନ୍ତି । ସେମାନଙ୍କ ଠାରୁ କମସଂଖ୍ୟକ କୃଷ୍ଣକାୟ ଲୋକ ସହରକୁ ପ୍ରବେଶ କରୁଅଛନ୍ତି । ବର୍ତ୍ତମାନର ମତିଗତି ଯେବେ ଏହିପରି ଚାଲେ ତେବେ ଗୋଟିଏ ପୁରୁଷ ମଧ୍ୟରେ ଆମର ଅଧିକାଂଶ ବଡ଼ ବଡ଼ ସହରରେ ଶ୍ୱେତାଙ୍ଗମାନଙ୍କର ସଂଖ୍ୟା ଶତକଡ଼ା ୫୦ରୁ କମିଯିବ । ଏଥିମଧ୍ୟରେ ସହରତଳି ଅଞ୍ଚଳରେ ଲୋକସଂଖ୍ୟା ବୃଦ୍ଧି ପାଉଅଛି । ଏହି ଅଞ୍ଚଳଗୁଡ଼ିକ ଦଳଦୃଷ୍ଟିରୁ ଓ କେତେକ ପରିମାଣରେ ଧର୍ମ ଦୃଷ୍ଟିରୁ ପୃଥକକୃତ । ଏଗୁଡ଼ିକ ଅତିଶୀଘ୍ର ବୃଦ୍ଧି

ପାଉଅଛି । ୧୯୭୦ ମସିହା ବେଳକୁ ଦେଶର ଲୋକ ସଂଖ୍ୟାର ଶତକଡ଼ା ୬୫ଭାଗ ସହରତଳି ଅଞ୍ଚଳରେ ବାସ କରୁଥିଲେ । ଏ କ୍ଷେତ୍ରରେ ସାଂପ୍ରଦାୟିକ ସମ୍ବନ୍ଧ ଯେଉଁ ନୂତନ ଧାରଣା ଓ ନୂତନ ସମସ୍ୟାମାନ ବୃଦ୍ଧି ପାଉଅଛି । ଏହି ବୃଦ୍ଧିର ମୂଳରେ କୌଣସି ଯୋଜନା ନାହିଁ; ଦୂରଦୃଷ୍ଟି ନାହିଁ; ଅଛି କେବଳ ଗୃହ ମାଲିକମାନଙ୍କର ଅର୍ଥ ଲାଭର ଆଶା ଓ ବ୍ୟକ୍ତିଗତ ମୂଲ୍ୟବୋଧ ।

କୌଣସି କୌଶଳଗତ କାର୍ଯ୍ୟକ୍ରମରେ ଏହି ସବୁ ଘଟଣାର ପୂର୍ଣ୍ଣ ତାତ୍ପର୍ଯ୍ୟ ହୃଦୟଙ୍ଗମ କରାନଗଲେ ତାହା କଦାପି ପୂର୍ଣ୍ଣାଙ୍ଗ ହୋଇ ପାରିବ ନାହିଁ । ସହର-ତଳିର କୌଣସି ଲୋକ ମଧ୍ୟବିତ୍ତ ଶ୍ୱେତାଙ୍ଗମାନଙ୍କ ସଙ୍ଗେ ରହି ସାଂପ୍ରଦାୟିକ ସଂପର୍କ ବିଷୟରେ ଖଣ୍ଡେ ଅଧେ ବହି ପଢ଼ି ବା କୌଣସି ଅନୁଷ୍ଠାନରୁ କିଛି ଶିକ୍ଷା ପାଇ ସମସ୍ୟାଗୁଡ଼ିକୁ ନେଗ୍ରୋଙ୍କର ଉପବେଶନ ଧର୍ମଘଟ, ମିସିସିପିର ଫ୍ରୀଡମ ରାଇଡର୍ସ ଆନ୍ଦୋଳନ ବା ସହର ନିକଟବର୍ତ୍ତୀ ଅଞ୍ଚଳର ଅପରାଧପ୍ରବଣ ଦଳ ଦୃଷ୍ଟିରୁ ବିଚାର କରି ବସିବ ; ସେ ଭୁଲିଯିବ ଯେ ମାନସିକ ସମ୍ବନ୍ଧର ସାମୂହିକ ପଦ୍ଧତି ଦୃଷ୍ଟିରୁ ତାଙ୍କ ନିଜ ସହରତଳି ଅଞ୍ଚଳଟି ମଧ୍ୟ ଏମାନଙ୍କ ସହିତ ଜଡ଼ିତ । ଏଣିକି ବିଚାର କରିବାରେ ଯଥେଷ୍ଟ ବିପଦ ଅଛି । ସାମ୍ପ୍ରଦାୟିକ ସମ୍ପର୍କ ବିଷୟରେ ଶିକ୍ଷାଦାତା ଓ ନେତାମାନେ ମଧ୍ୟ ଏଭଳି ଭ୍ରମରେ ପଡ଼ିବା ଅସମ୍ଭବ ନୁହେଁ । ମୋର ଗୋଟିଏ ଘଟଣା ମନେ ପଡୁଅଛି । ମୁଁ ଥରେ ଗୋଟିଏ ସହରତଳି ଅଞ୍ଚଳରେ ଭାଷଣ ଦେଉଥିଲି । ଏହି ଅଞ୍ଚଳରେ କେବଳ ଶ୍ୱେତାଙ୍ଗମାନେ ବାସ କରୁଥିଲେ । ଭାଷଣ-ପ୍ରସଙ୍ଗରେ ମୁଁ କହିଲି ଯେ ଆମଘର ପାଖରେ ଯେଉଁସବୁ ସମସ୍ୟା ଅଛି, ସେସବୁ ଅନେକ ପରିମାଣରେ କୌତୁହଳ ଜନକ । ମଧୁର ଭର୍ତ୍ସନା କରି ମୁଁ କହିଲି— "ଆପଣମାନେ ନିଜ ଭିତରେ ଓ ସହରଠାରୁ କିଛିଏ ଦୂରବର୍ତ୍ତୀ ଅଞ୍ଚଳ ଭିତରେ ଗୋଟାଏ କାଗଜର ପ୍ରାଚୀର ଗଢ଼ି ଅଛନ୍ତି ।" ସଭାରେ ସ୍କୁଲ ବିଭାଗୀୟ ସୁପରି-ଣ୍ଟେଣ୍ଡେଣ୍ଟ, ତିନି ଗୃହଜଣ ସ୍କୁଲବୋର୍ଡ ସଭ୍ୟ ଓ କାରଖାନାର ଅନେକ ଶିକ୍ଷାଦାତା ଉପସ୍ଥିତ ଥିଲେ । ସାମ୍ପ୍ରଦାୟିକ ସମ୍ପର୍କ ଆଲୋଚନାରେ ଏଭଳି ବିଷୟର ଉତ୍ଥାପନ କରିବା ଅନୁଚିତ ବୋଲି ସେମାନେ କହିଥିଲେ ।

ସେମାନଙ୍କର ମତ ଠିକ କି ? ଅଥବା ନଗରମାନଙ୍କର ଦୀର୍ଘକାଳୀନ ସାମୂହିକ ପରିଣତି ଆମ୍ଭମାନଙ୍କର ବିଚାରର ବିଷୟ ? ଯଦି 'ସମୂହ ସାମାଜିକ ପଦ୍ଧତି' ଧାରଣା ଯଥାର୍ଥ ହୁଏ; ତେବେ ଦ୍ୱିତୀୟ ମତ ନିଶ୍ଚୟ ଗ୍ରହଣୀୟ । ଜାତୀୟ ଜୀବନର ମହାସ୍ରୋତରୁ ସହରତଳି ଅଞ୍ଚଳକୁ ବାଦ୍ ଦିଆଯାଇ ନପାରେ । ସହର ମଝିରେ ଯାହା ଘଟୁଛି, ତାହା ପାର୍ଶ୍ୱବର୍ତ୍ତୀ ଅଞ୍ଚଳର ନୀତି ଓ ଚଳଣିକୁ ପ୍ରଭାବିତ

କରୁଅଛି । ଏହି ଗତି ଓ ଚଳଣି ପୁଣି ସହରର କେନ୍ଦ୍ର ଉପରେ ପ୍ରଭାବ ପକାଉଅଛି । ଏହି ଦଶକ ଶେଷ ହେବା ପୂର୍ବରୁ ନିଗ୍ରୋ ଲୋକସଂଖ୍ୟାର ଅର୍ଦ୍ଧାଧିକ ଆସି ଆମେରିକାର ଉତ୍ତର ଓ ପଶ୍ଚିମାଞ୍ଚଳରେ ବାସ କରୁଥିବେ । ଯେଉଁପରି ନାଟକୀୟ ପରିବର୍ତ୍ତନ ନଘଟିଲେ, ସେମାନଙ୍କ ମଧ୍ୟରୁ ଅନେକେ ଅର୍ଦ୍ଧପୃଥକ୍‌କୃତ ସ୍କୁଲରେ ପାଠ ପଢ଼ି, ଜନାକୀର୍ଣ୍ଣ ଅବନତ ଅଞ୍ଚଳରେ ବାସ କରୁଥିବେ । ଏହା ଯେ ସମାଜ ପକ୍ଷରେ କ୍ଷତିକାରକ ଏଥିରେ ସନ୍ଦେହ ନାହିଁ । ଅବଶ୍ୟ ଏହି କ୍ଷତିର ପରିମାଣ ଓ ଠିକ ପ୍ରକୃତି ସ୍ଥିର କରିବାପାଇଁ ଗବେଷଣା ଆବଶ୍ୟକ । ଏହି ସମସ୍ୟାର ଅନୁସନ୍ଧାନ କରିବାକୁ ହେଲେ କେଉଁ ଦିଗରେ ଗତି କରିବାକୁ ହେବ, ତାହାର ସୂଚନା ଦିଆ ଯାଉଅଛି ।

ଆଜିକାଲି ବଡ଼ବଡ଼ ନଗରସବୁ ଯେପରି ଗଢ଼ା ଯାଉଅଛି, ତାହାଦ୍ୱାରା ଦଳ ଓ ଦେଶ ଉପରେ ଗଠିତ ସଂଖ୍ୟାଲଘୁ ସମ୍ପ୍ରଦାୟମାନଙ୍କର ନିମ୍ନତର କୃଷ୍ଟି ଓ ବିରୋଧମୂଳକ କୃଷ୍ଟି ରହିବାର ସୁଯୋଗ ଅଛି । ଏହା ଫଳରେ ସେମାନଙ୍କର କର୍ମପଟୁତା ହ୍ରାସ ପାଉଅଛି, ସାମ୍ପ୍ରଦାୟିକ ବିରୋଧ ଦୃଢ଼ ଅଛି ; ଅପରାଧ-ପ୍ରବଣତା ବୃଦ୍ଧି ପାଉଅଛି ଏବଂ ସହରର ଅଭ୍ୟନ୍ତର ଅବନତି ଲାଭ କରୁଅଛି । ରୁକ୍ଷ ଏବଂ ଅତି ସରଳ ଭାଷାରେ କହିବାକୁ ଗଲେ ପ୍ରକୃତ ଜମିମାଲିକ, ସହରତଳର ଉନ୍ନତିକାରୀମାନେ ଓ ସେମାନଙ୍କ ଗ୍ରାହକମାନେ ଅପରାଧ ଓ ବିରୋଧର କାରଣ ହୋଇଅଛନ୍ତି । ଅଥଚ ସେମାନଙ୍କର ଅନେକ କାର୍ଯ୍ୟ ଏ ପ୍ରକାର ସମସ୍ୟା ଦୂର କରିବା ଉଦ୍ଦେଶ୍ୟରେ କରାଯାଉଅଛି ବୋଲି କୁହାଯାଏ । କିନ୍ତୁ ମୋର ଯେତେଦୂର ଅନୁମାନ, ବାସ୍ତବରେ ସେମାନଙ୍କର କାର୍ଯ୍ୟ ହେଉଛି, ଅଖଣ୍ଡ କାର୍ଯ୍ୟ କାରଣଶୃଙ୍ଖଳର ଏକ ଅଙ୍ଗ ଓ ସେହି ହେତୁରୁ ପରିଣାମ ଏପରି ହେଉଅଛି ।

ଉଲ୍ଲିଖିତ ମନ୍ତବ୍ୟ ବହୁଳବାଦର ବିରୋଧୀ ନୁହେଁ, ଅର୍ଥାତ୍ ମାର୍କିନ ସମାଜରେ ବିଭିନ୍ନ ମୂଲ୍ୟବୋଧ ପଦ୍ଧତି ଏକତ୍ର ରହିପାରେ । ଷଷ୍ଠ ଅଧ୍ୟାୟରେ ଆମ୍ଭେମାନେ ବହୁଳବାଦ ବିଷୟ ଆଲୋଚନା କରିଅଛୁଁ । ଏଠାରେ ଏତିକି ମାତ୍ର କହି ରଖୁଛୁ ଯେ କୌଣସି ସମାଜ କେତେଦୂର ପର୍ଯ୍ୟନ୍ତ ବିଭିନ୍ନ ମୂଲ୍ୟବୋଧ ଓ କାର୍ଯ୍ୟ ସହ୍ୟ କରିପାରେ ତାର ଗୋଟାଏ ସୀମା ଅଛି । ନିମ୍ନତର କୃଷ୍ଟି ସ୍ୱତନ୍ତ୍ର ଐତିହ୍ୟ ଓ ପରମ୍ପରାର ପରିଣତି ନୁହେଁ ; ଏହା ହେଉଛି, ହତାଶା, ବିରୋଧ ଓ ଗ୍ରହଣୀୟ ପରମ୍ପରାର ଅଭାବର ଫଳ । ଏ ପ୍ରକାରର ଆଚରଣ ଓ ମୂଲ୍ୟବୋଧକୁ ମୁଁ ନିମ୍ନତର କୃଷ୍ଟି ନ କହି ବିରୋଧୀ କୃଷ୍ଟି କହିବି । ଏପରି ନାମକରଣ ଦ୍ୱାରା ବିରୋଧପୂର୍ଣ୍ଣ, ସୁଯୋଗ ରହିତ ପରିସ୍ଥିତିରେ ସେ ଗୁଡ଼ିକର ଉତ୍ପତ୍ତି ଉପରେ ଦୃଷ୍ଟି ପଡ଼ିବ । ସେମାନଙ୍କର

ମୂଲ୍ୟବୋଧ ହେଉଛି ଆଦର୍ଶର ବିକୃତ ପ୍ରତିକ୍ରିୟା, ଗୋଟାଏ ନିର୍ଯାତିତ ସମ୍ପ୍ରଦାୟର କ୍ରୋଧର ଅଭିବ୍ୟକ୍ତି । ଏହି ସମ୍ପ୍ରଦାୟର ଲୋକେ ମାନବିକ ଗୌରବର ପରିଚୟ ପାଇ ଅଛନ୍ତି କିନ୍ତୁ ନିଜ ଜୀବନରେ ତାହା ଲାଭ କରିବାରୁ ବଞ୍ଚିତ ହୋଇ ଅଛନ୍ତି ।

ଏହି ଅନୁମାନଟିକୁ ଅନ୍ୟ ଆକାରରେ ପ୍ରକାଶ କରି ଯାଇପାରେ । ନଗର ଅଞ୍ଚଳରେ ସମସ୍ତ ଅଧିବାସୀ ଜାତି, ଧର୍ମ, ଦେଶନିର୍ବିଶେଷରେ ନିଜନିଜର ଆୟ, ପାରି-ବାରିକ ଆବଶ୍ୟକତା ଓ ରୁଚି ଅନୁସାରେ ନିଜନିଜର ବାସସ୍ଥାନ ସ୍ଥିର କରିପାରନ୍ତି । ଏପରି ଅଞ୍ଚଳରେ ବିରୋଧୀ ବୃତ୍ତି ଉତ୍ପତ୍ତି ପାରେ ନାହିଁ । ଏଠାରେ ସଂଖ୍ୟାଲଘୁ ସମ୍ପ୍ରଦାୟର ଆକାଂକ୍ଷା ବୃଦ୍ଧି ପାଏ, ବିଦ୍ୱେଷଭାବ ହ୍ରାସ ଲାଭକରେ । ଏପରି ଏକ ଅଭିମତର ପ୍ରମାଣ ଦେବା ସହଜସାଧ୍ୟ ହୋଇ ନପାରେ କିନ୍ତୁ କ୍ଷୁଦ୍ର ସୀମାମଧ୍ୟରେ ଗବେଷଣା କଲେ ଏହାର ସତ୍ୟତା ଅନୁସନ୍ଧାନ କରିବା କଷ୍ଟକର ନୁହେଁ । ବାସ୍ତବରେ ବିଭିନ୍ନ ଗୋଷ୍ଠୀର ଲୋକଙ୍କର ଏକତ୍ର ବସବାସ ସେମାନଙ୍କର ମନୋଭାବ ଓ କାର୍ଯ୍ୟ ଉପରେ କିପରି ପ୍ରଭାବ ପକାଇଥାଏ, ଏହି ନିର୍ଦ୍ଦିଷ୍ଟ ବିଷୟ ଉପରେ ଗବେଷଣା କରି ଯାଇଅଛି ଓ ସେହି ଗବେଷଣାର ଫଳ ଉପର୍ଯ୍ୟୁକ୍ତ ମତର ସମର୍ଥନ କରେ ।

ବିଭିନ୍ନ ସମ୍ପ୍ରଦାୟର ଲୋକଙ୍କପାଇଁ ପୂର୍ଣ୍ଣ ଭାବରେ ସମ୍ମିଳିତ ବାସଗୃହ ବ୍ୟବସ୍ଥା ଫଳରେ ବିଦ୍ୱେଷ ହ୍ରାସ ପାଏ ଓ ବନ୍ଧୁତ୍ୱପୂର୍ଣ୍ଣ ଗୋଷ୍ଠୀଗତ ସମ୍ପର୍କ ବୃଦ୍ଧି ପାଏ [୨] । ବର୍ତ୍ତମାନ ଆବଶ୍ୟକ ହେଉଛି ଆହୁରି ଅଧିକ ପ୍ରଭେଦ ବିଶିଷ୍ଟ ଅନୁମାନ ବାହାର କରିବା ଯାଦ୍ୱାରା କି ସଂଖ୍ୟାଗୁରୁ ଓ ସଂଖ୍ୟାଲଘୁ ସମ୍ପ୍ରଦାୟମାନଙ୍କର ବିଭିନ୍ନ ଅନୁପାତର ପ୍ରଭାବ, ଚତୁଃପାର୍ଶ୍ୱସ୍ଥିତ ଗୋଷ୍ଠୀ ସମର୍ଥନ ପରିବର୍ତ୍ତନର ପ୍ରଭାବ, ପୃଥକ୍ ବାସଗୃହ ସମ୍ବନ୍ଧରେ ଆଇନଗତ ଆଦର୍ଶର ସଦ୍ଭାବ ବା ଅଭାବର ପ୍ରଭାବ ଓ ଅନ୍ୟାନ୍ୟ ପ୍ରଭାବର ପରୀକ୍ଷା କରିଯାଇ ପାରିବ । ଏହି କ୍ଷେତ୍ରରେ ଆମର ଅନେକ କଥା ଜାଣିବାକୁ ବାକି ଅଛି । ପୁଣି ଦୁଃଖର ବିଷୟ ଏହି ଯେ ଯାହା କିଛି ଆମ୍ଭେ-ମାନେ ଜାଣୁ ତାହା ସାଧାରଣଜ୍ଞାନଲବ୍ଧ ନିୟମର ବିରୋଧୀ, ଅଥଚ ସେହି ନିୟମ-ମାନଙ୍କ ଦ୍ୱାରା ଲୋକମାନଙ୍କର ଆଚରଣ ନିୟନ୍ତ୍ରିତ ହୋଇଥାଏ । ଏହି ହେତୁରୁ ଏତଦ୍‌ବିଷୟକ ଜ୍ଞାନଲାଭ ଅତିମନ୍ଥର ଗତିରେ ଘଟିଥାଏ ।

---

[୨] ମର୍ଟନ ଡ଼ିଉଚ ଓ ମେରି ଇ. କଲିନ୍‌ସଙ୍କ ଦ୍ୱାରା ଲିଖିତ ଓ ୧୯୫୧ ମସିହାରେ ମିନିଆପୋଲିସର ମିନେସୋଟା ଇଉନିଭରସିଟି ପ୍ରେସରୁ ପ୍ରକାଶିତ ଇଣ୍ଟାର-ରେସିଆଲ ହାଉସିଂ ; ଡେନିଏଲ ଏମ୍. ୱିଲନର, ରୋଜାବେଲ ପି. ୱ୍ୟାକଲି ଓ ଷ୍ଟୁଆର୍ଟ କେ. କୁକ୍‌ଙ୍କ ଦ୍ୱାରା ଲିଖିତ ଓ ମିନେସୋଟା ଇଉନିଭରସିଟି ପ୍ରେସରୁ ୧୯୫୫ ମସିହାରେ ପ୍ରକାଶିତ ହ୍ୟୁମାନ ରିଲେସନ୍‌ସ ଇନ୍ ଇଣ୍ଟାର ରେସିଆଲ ହାଉସିଂ ପୁସ୍ତକ ଦ୍ୱୟ ଦେଖ ।

ବାସଗୃହ ବିଷୟରେ ଆମର ଆଉ ଗୋଟାଏ ଭୁଲ ଧାରଣା ଅଛି । ଏହାର ମୂଳକାରଣ ଏହି ଯେ ଆମ୍ଭେମାନେ ସହରର କଦର୍ଯ୍ୟ ଗଳି ବିଷୟରେ ବା ଦଳିବୃଦ୍ଧିରୁ ପରିବର୍ତ୍ତିନଶୀଳ ପରିବେଶ ବିଷୟରେ ଯାହା ଶୁଣୁ, ସମସ୍ତ ଆନ୍ତର୍ଦେଶୀୟ ଓ ସମ୍ମିଳିତ ଅଞ୍ଚଳ ବିଷୟରେ ମଧ୍ୟ ତାହା ସତ୍ୟ ବୋଲି ଧରିନେଉଁ । ଯଥା—ନିଗ୍ରୋ ଓ ପିଉର୍ଟୋରିକାନମାନେ ସହରର କଦର୍ଯ୍ୟ ଗଳିମାନଙ୍କରେ ରହନ୍ତି ; ତେଣୁ କେହି ଧରି ନେଇପାରେ ଯେ ସେମାନେ ଏପରି କଦର୍ଯ୍ୟ ବସତି ସୃଷ୍ଟି କରନ୍ତି ; କିମ୍ବା ମେକ୍ସିକୋରୁ ଆସିଥିବା ଲୋକେ କଦର୍ଯ୍ୟ ବସତିରେ ରହନ୍ତି । ସେମାନେ ଆମର ପଡ଼ିଶା ହୋଇ ରହିଲେ ଆମ ଅଞ୍ଚଳ ଏକ କଦର୍ଯ୍ୟ ବସତିରେ ପରିଣତ ହେବ । ଆମେ ଦେଖୁଁ ଯେ କୌଣସିଠାରେ ସଂଖ୍ୟାଲଘୁ ସମ୍ପ୍ରଦାୟର ଲୋକେ କ୍ଷୁଦ୍ର ସୀମାଭିତରେ ବହୁସଂଖ୍ୟାରେ ବାସ କରୁଥାନ୍ତି । ଶେଷରେ ସେମାନେ ପରସ୍ପର ବନ୍ଧନ ଛିନ୍ନ କରି ଦେଇ ପାର୍ଶ୍ୱ ଅଞ୍ଚଳରେ ବ୍ୟାପୀ ଯାଆନ୍ତି । ଥରେ ପରିବର୍ତ୍ତନ ଘଟିଲେ ଅଳ୍ପ ଦିନ ଭିତରେ ସଂଖ୍ୟାଲଘୁ ସମ୍ପ୍ରଦାୟର ଲୋକେ ସମଗ୍ର ଅଞ୍ଚଳରେ ପରିବ୍ୟାପ୍ତ ହୋଇ ଯାଆନ୍ତି । ତେଣୁ ମୁଁ ପରିବର୍ତ୍ତନର ବିରୋଧ କରିବି । କିମ୍ବା ଯଦି ନଦୀବନ୍ଧ ଭାଙ୍ଗିଯାଏ, ତେବେ ମୁଁ ଘରଦ୍ୱାର ବିକି ପଳାଇ ଯିବି । ଏହି ଭଳି ଯୁକ୍ତି ସବୁ ଏକ ପ୍ରକାର ଦୃଷ୍ଟିଭଙ୍ଗୀର ପରିଚାୟକ । ଏ ଯୁକ୍ତିକ ଯେ ଏକବାରେ ଯୁକ୍ତିହୀନ ତାହା ନୁହେଁ । ଏ ଯୁକ୍ତିକର ଏକମାତ୍ର ଦୋଷ ହେଉଛି, ଲୋକେ କେତୋଟି ଘଟନାର ଯାହା ଦେଖି ଥାଆନ୍ତି ତାହାକୁ ସାଧାରଣ ସତ୍ୟ ବୋଲି ଗ୍ରହଣ କରି ନେଇଥାନ୍ତି । ବିଭେଦମୂଳକ ବିଶ୍ଳେଷଣ କରି କେଉଁ ଅବସ୍ଥାରେ କି ଫଳ ଘଟେ ତାହା ଜାଣିବାକୁ ଚେଷ୍ଟା କରିବା ଉଚିତ । ସମୟେ ସମୟେ ଦେଖାଯାଏ ଯେ ସଂଖ୍ୟାଲଘୁ ସମ୍ପ୍ରଦାୟର ଜଣେ ଲୋକ କୌଣସି ଗଳିରେ ଆସି ବାସକଲେ, କ୍ରମେ ସେହି ସମ୍ପ୍ରଦାୟର ଅନ୍ୟ ଲୋକେ ଆସି ସେହି ଗଳିରେ ରହନ୍ତି । ଏପରି କାହିଁକି ହୁଏ ? ବାସଗୃହର ଅଭାବ, ସରକାରଙ୍କ ନୀତି, ପ୍ରକୃତ ଜମିମାଲିକମାନଙ୍କ ମଧ୍ୟରେଥିବା ଘରୋଇ ଚୁକ୍ତି, ବ୍ୟାଙ୍କମାନଙ୍କର ଋଣଦାନନୀତି—ଏ ସବୁର ପ୍ରଭାବ କିପରି ? କୌଣସି ଅଞ୍ଚଳକୁ ନିଗ୍ରୋମାନେ ଯାଇ ବାସକଲେ ସେ ଅଞ୍ଚଳରେ ଅବନତି ଘଟିଥାଏ, ସତ୍ୟ । କିନ୍ତୁ ଏହାର କାରଣ କଅଣ ? ନିଗ୍ରୋମାନେ ସେଠାକୁ ଯିବାପୂର୍ବରୁ ସେ ଅଞ୍ଚଳ ଅବନତି ପଥରେ ଗତି କରୁଥିଲା କି ? ଅଥବା ସେ ଅଞ୍ଚଳ ଅବନତ ହୋଇ ଥିବାରୁ ନିଗ୍ରୋମାନେ ସେଠାରେ ବାସ କରିବାକୁ ଗଲେ ? ସ୍ୱଳ୍ପ ଆୟ ହେତୁରୁ ସେମାନେ ଉପଯୁକ୍ତ ଘର ନେବାକୁ ଅକ୍ଷମ କି ? ସେମାନେ ପୃଥକ ହୋଇ ରହିଥିବାରୁ ଉତ୍ତମ ଗୃହ ନିର୍ମାଣର କୌଶଳ ଓ ତାହାର ମୂଲ୍ୟ ଶିକ୍ଷା କରି ପାରୁନାହାନ୍ତି କି ? କୌଣସି କ୍ଷେତ୍ରରେ ଆମର ସାଧାରଣ ଜ୍ଞାନ ଲବ୍ଧ ଧାରଣା ପ୍ରକୃତ ଘଟନାର କାରଣ ଦର୍ଶାଇବାକୁ ଯଥେଷ୍ଟ ନୁହେଁ ।

ଦଶବର୍ଷ ପୂର୍ବେ ଆମର ଏହି ଧାରଣାଗୁଡ଼ିକୁ ସଂଶୋଧନ କରିବା ନିମନ୍ତେ ପ୍ରାୟ କୌଣସି ଦୃଢ଼ ଉପାଦାନ ନଥିଲା । ଏହାର ଗୋଟିଏ କାରଣ ଥିଲା, ଅଧ୍ୟୟନର ଅଭାବ ଓ ଅନ୍ୟ ଏକ କାରଣ ଥିଲା ସମ୍ମିଳିତ ବାସଗୃହର ଅଭାବ । କେବଳ ଦଳବଦ୍ଧ ପରିବର୍ତ୍ତନବେଳେ ସାମୟିକଭାବରେ ଯାହା କିଛି ସମ୍ମିଳିତ ବାସଗୃହ ଦେଖିବାକୁ ମିଳୁଥିଲା । ଏବେ ବିଭିନ୍ନ ଗୋଷ୍ଠୀର ଲୋକ ବାସକରୁଥିବା ଅଞ୍ଚଳ ବହୁ ସଂଖ୍ୟାରେ ଦେଖା ଦେଲଣି । ସେଥିମଧ୍ୟରୁ କେତେକ ସରକାରୀ ଓ କେତେକ ଘରୋଇ । ଏଗୁଡ଼ିକ ବିଷୟରେ ଅଧ୍ୟୟନ କରା ଯାଉଅଛି [୩] । ବର୍ତ୍ତମାନ ସାଧାରଣ ଲୋକ ମଧ୍ୟ ନିଜର ଧାରଣା ସୃଷ୍ଟି କରିବା ପାଇଁ ପୂର୍ବକାଳୀନ ସଂରକ୍ଷିତ ଅଞ୍ଚଳମାନଙ୍କରେ ସଂଖ୍ୟାଲଘୁ ସଂପ୍ରଦାୟମାନଙ୍କର ଉତ୍ତେଜନାପୂର୍ଣ୍ଣ ଆକ୍ରମଣକୁ ଲକ୍ଷ୍ୟ କରିବା ଅନାବଶ୍ୟକ । ବର୍ତ୍ତମାନ ଭିନ୍ନ ଭିନ୍ନ ପରିସ୍ଥିତିର ବିଶ୍ଳେଷଣ ସମ୍ଭବପର ଏବଂ ତେଣୁ ଅନ୍ୟ କେତେକ ଅନୁମାନ କଳ୍ପନା କରାଯାଇପାରେ । ନିମ୍ନରେ କେତେକ ଅନୁମାନ ଦିଆଯାଉଅଛି ।

କୌଣସି ସୁଦୃଢ଼ ପରିବେଶରେ ଗୋଟିଏ ନିର୍ଦ୍ଦିଷ୍ଟ ଭାଗ (ଶତକଡ଼ା ୧୫ଠାରୁ ୩୦ ପର୍ଯ୍ୟନ୍ତ) ଭିନ୍ନ ଦଳ ବା ଭିନ୍ନ ଜାତିର ଲୋକ ବାହାରୁ ଆସି ପ୍ରବେଶ କଲେ ସେହି ଅଞ୍ଚଳର ଆନ୍ତଃସାମ୍ପ୍ରଦାୟିକତା ସୁରକ୍ଷିତ ହୋଇ ପାରିବ [୪] । ଏହି ଉକ୍ତିରେ ଗୋଟିଏ ଗୁରୁତ୍ୱପୂର୍ଣ୍ଣ ନୈତିକ ଓ ଗବେଷଣାଯୋଗ୍ୟ ସମସ୍ୟା ଜଡ଼ିତ ଅଛି । ଏ ବ୍ୟବସ୍ଥାର ଲକ୍ଷ୍ୟ ହେଲା, ବିଭିନ୍ନ ଗୋଷ୍ଠୀର ଲୋକ ଏକ ଅଞ୍ଚଳରେ ଏକତ୍ର ବାସ କରିବେ । ମାତ୍ର ଯେଉଁମାନେ ଏହି ମତର ସମର୍ଥକ ସେମାନଙ୍କ ମଧ୍ୟରୁ ଅନେକେ ଏଭଳି ଭାଗବଣ୍ଟାର ନୀତି ବିଷୟରେ ପ୍ରତିକୂଳ ମତ ଦିଅନ୍ତି । ଯଦି ସଂଖ୍ୟାଲଘୁ ସମ୍ପ୍ରଦାୟର ଲୋକେ ପାର୍ଶ୍ୱବର୍ତ୍ତୀ ଅଞ୍ଚଳରେ ବାସଗୃହ ପାଇବାରେ ଅସୁବିଧା ଭୋଗ କରନ୍ତି ତେବେ ନୈତିକ ପ୍ରଶ୍ନ ବିଶେଷ ଜଟିଳ ହୋଇଉଠେ । ଆନ୍ତଃସାମ୍ପ୍ରଦାୟିକ

[୩] ନାଥନ୍ ଗ୍ଲେଜର ଓ ଡେଭିସ ମାକଏଣ୍ଟାୟାରଙ୍କ ଲିଖିତ ଓ କାଲିଫର୍ଣ୍ଣିଆ ଇଉନିଭରସିଟି ପ୍ରେସରୁ ୧୯୬୦ ମସିହାରେ ପ୍ରକାଶିତ 'ଷ୍ଟୁଡିସ୍ ଇନ ହାଉସିଙ୍ଗ'; ଇଉନସରି ଏର ଓ ଜର୍ଜ ଗ୍ରି ଏରଙ୍କ ଦ୍ୱାରା ଲିଖିତ କାଲିଫର୍ଣ୍ଣିଆ ଇଉନିଭରସିଟି ପ୍ରେସରୁ ୧୯୬୦ ମସିହାରେ ପ୍ରକାଶିତ 'ପ୍ରାଇଭେଟ୍ଲି ଡେଭଲପ୍ଡ୍ ଇଣ୍ଟାର-ରେସିଆଲ ହାଉସିଙ୍ଗ୍' ପୁସ୍ତକ ଦ୍ୱୟ ଦେଖ ।

(୪) ଫିଲେନ ପତ୍ରିକାର ୧୯୬୦ ମସିହାର ବାସନ୍ତୀ ସଂଖ୍ୟାରେ ପ୍ରକାଶିତ ଅସ୍କାର କୋହେନଙ୍କ 'ଦ କେସ ଫର କୋଟାସ୍ ଇନ ହାଉସିଙ୍ଗ' ପ୍ରବନ୍ଧର ୧୦-୧୯ପୃଷ୍ଠା ଓ ଜର୍ନାଲ ଅଫ ଇଣ୍ଟାରଗ୍ରୁପ ରିଲେସନ୍ସ ପତ୍ରିକାର ୧୯୬୦ ମସିହାର ଶାରଦୀୟ ସଂଖ୍ୟାରେ ପ୍ରକାଶିତ ଡାନ୍ ଡବ୍ଲିଉ ଡଡ୍ସନଙ୍କ 'କ୍ୟାନ ଇଣ୍ଟାର-ଗ୍ରୁପ୍ କୋଟାସ୍ ବି ବିନାଇନ୍' ପ୍ରବନ୍ଧର ୧୨-୧୭ ପୃଷ୍ଠା ଦେଖ ।

ଶିକ୍ଷା ଦ୍ୱାରା ଏଭଳି ପରିସ୍ଥିତିର ନୈତିକ ଦିଗଟି ସ୍ପଷ୍ଟରୂପେ ପ୍ରକଟିତ ହୋଇ ପାରିବ । ବାସଗୃହ ନିର୍ମାଣରେ ନିରପେକ୍ଷ ନୀତି ଗ୍ରହଣ କରି ଆଇନ କରାଗଲେ ବର୍ତ୍ତମାନ ଗୃହ ନିର୍ମାଣରେ ସ୍ୱାଧୀନତା ଦିଗରେ ଯେଉଁ ସାମାନ୍ୟ ଅନୁକୂଳ ମନୋଭାବ ଦେଖାଯାଉଅଛି ତାହା ବୃଦ୍ଧି ପାଇବ । ଏ ପ୍ରକାର ନିୟମ ପ୍ରଣୟନ ବିଷୟରେ ଆମର ଅଭିଜ୍ଞତା ବିଶେଷ ଆଶାପ୍ରଦ ନୁହେଁ । ତେଣୁ ଏଭଳି ଆଇନ ସଫଳ ହେବ ବୋଲି ଅନୁମାନ କରିବା ଠିକ ନୁହେଁ । କିନ୍ତୁ ଚାକିରିରେ ଅପକ୍ଷପାତିତା ବିଷୟକ ଆଇନରେ ଆମର ଦୀର୍ଘକାଳର ଅଭିଜ୍ଞତା ଅଛି ଓ ସେଥିରୁ ମୂଲ୍ୟବାନ ସୂଚନା ମିଳେ । କୌଣସି ଆଇନ କେତେକ ଲୋକଙ୍କର ସମର୍ଥନ ପାଇବାର କାରଣ ଏହି ଯେ ସେମାନଙ୍କର କାର୍ଯ୍ୟ ଠିକ୍ ବୋଲି ସରକାରଙ୍କ ସ୍ୱୀକୃତି ପାଏ ଓ ସେମାନଙ୍କ ଦୃଷ୍ଟିରେ ଯାହା ବେସରକାରୀ ବିରୋଧୀ ଆଦର୍ଶ ତାହାର ଦୁର୍ବଳତା ପ୍ରମାଣିତ ହୁଏ । ଆଇନର ଗୋଟାଏ ଶିକ୍ଷାଗତ ମୂଲ୍ୟଅଛି । ପୂର୍ବରୁ ଅଧିକାଂଶ ଲୋକଙ୍କ ଦ୍ୱାରା ଅବହେଳିତ କୌଣସି ସମସ୍ୟା ପ୍ରତି ଏହା ଲୋକସାଧାରଣଙ୍କ ଦୃଷ୍ଟି ଆକର୍ଷଣ କରେ । ଆଇନର ବ୍ୟବସ୍ଥା ପ୍ରତି ଯେଉଁମାନଙ୍କର ଭୟଥାଏ ସେମାନେ ଆଇନବିରୁଦ୍ଧ କାର୍ଯ୍ୟରୁ ନିବୃତ୍ତ ହୁଅନ୍ତି । କେତେକ ଲୋକ କହନ୍ତି ଯେ ଏହା ଫଳରେ ପ୍ରତିଯୋଗିତା କ୍ଷେତ୍ରରେ ସେମାନେ ଅସୁବିଧାରେ ପଡ଼ିବେ ; ତାହା ହୋଇ ନଥିଲେ ସେମାନେ ସ୍ୱତଃ ଆବଶ୍ୟକ ପରିବର୍ତ୍ତନ କରିଥାନ୍ତେ । ଆଇନ ଏଭଳି ଯୁକ୍ତିର ଅସାରତା ପ୍ରଦର୍ଶନ କରେ ।

ଜାତୀୟ ଉନ୍ନତି ଓ ଗୃହନିର୍ମାଣ କ୍ଷେତ୍ରରେ ଜମିର ମାଲିକ, ଗୃହନିର୍ମାଣକାରୀ ଓ ଋଣଦାତା ବ୍ୟାଙ୍କ ତଥା ବାସଗୃହ ଆବଶ୍ୟକ କରୁଥିବା ସମ୍ପ୍ରଦାୟ ବା ପୃଥକ୍‌କରଣ ପ୍ରଥାର ପରିବର୍ତ୍ତନ ଲୋଡ଼ୁଥିବା ଲୋକମାନଙ୍କର ମନୋଯୋଗ ଆକର୍ଷଣ କରିବା ଗୋଟିଏ ଉତ୍ତମ କୌଶଳ । ବିଗତ ପନ୍ଦରବର୍ଷ ମଧ୍ୟରେ ମତ ଗଠନରେ କ୍ରମିକ ପରିବର୍ତ୍ତନ, ସବୁ ଶ୍ରେଣୀର ଲୋକଙ୍କ ପାଇଁ ଉନ୍ମୁକ୍ତ ବାସଗୃହ ବ୍ୟବସ୍ଥା ଦିଗରେ ବୃଦ୍ଧି ପାଉଥିବା ଲୋକମତ—ଏସବୁ ଫଳରେ ଏପରି ଗୋଟିଏ କ୍ଷେତ୍ର ପ୍ରସ୍ତୁତ ହୋଇଅଛି ଯେ ଏଦିଗରେ ଶିକ୍ଷାଲାଭ ବର୍ତ୍ତମାନ ସମ୍ଭବ ହୋଇ ପାରିଅଛି । ଏପରିକି ଅଳ୍ପ କେତେ ବର୍ଷ ପୂର୍ବେ କୌଣସି ଗୃହନିର୍ମାଣକାରୀ ହୁଏତ ପ୍ରଶ୍ନ କରୁଥିଲା, "ଯଦି ଜିଏ ଆସିବ, ମୁଁ ତାକୁ ମୋର ଘର ଦିଏଁ, ତେବେ ମୁଁ ଖଟାଇଥିବା ଟଙ୍କାର ଅବସ୍ଥା କଅଣ ହେବ ?" ଏହାର ଉତ୍ତରରେ କେହି ପ୍ରକୃତ ବିଶ୍ୱାସ ହେତୁରୁ ଅଥବା ସେ ଅଞ୍ଚଳରେ ଘଟୁଥିବା ଜାତିଗତ ପରିବର୍ତ୍ତନକୁ ଲକ୍ଷ୍ୟକରି କହୁଥିଲା, "ଏଠାରେ କିଛୁଦିନ ଭିତରେ କେବଳ ନିଗ୍ରୋମାନେ ରହିବେ ବା ପିଉଟୋରିକାନମାନେ ରହିବେ ।" କିନ୍ତୁ ବର୍ତ୍ତମାନ ପରିବର୍ତ୍ତିତ ଅବସ୍ଥାର ବିଚାର କରି ଅନ୍ତତଃ ଯଥାର୍ଥ ଉତ୍ତର ଦେଇ ପାରିବାର ସମ୍ଭାବନା ଅଛି । ବାସଗୃହ ସମ୍ବନ୍ଧରେ ସଂଶ୍ଳିଷ୍ଟ ସଂପ୍ରଦାୟମାନଙ୍କର ପ୍ରକୃତ ପରିସ୍ଥିତି ସହିତ ପରିଚୟ ହେଲେ ସେମାନଙ୍କର ଆଚରଣ ଯଥେଷ୍ଟ ପରିବର୍ତ୍ତିତ ହୋଇପାରିବ ।

## ସାମ୍ପ୍ରଦାୟିକ ସମ୍ପର୍କ ବିଷୟରେ ନିୟୋଗକାରୀମାନଙ୍କ ଶିକ୍ଷା

ବାସଗୃହ ସମ୍ବନ୍ଧରେ ଯେଉଁସବୁ ଅଭିମତ ଦିଆଯାଇଅଛି, ସେଥିମଧ୍ୟରୁ ଅନେକ ଶିଳ୍ପର ବିଷୟରେ ମଧ୍ୟ ପ୍ରଯୋଜ୍ୟ । ଦ୍ୱିତୀୟ ବିଶ୍ୱଯୁଦ୍ଧ ପୂର୍ବରୁ ଶିଳ୍ପରେ ଭେଦଭାବ ନ ରଖିବା ଉଦ୍ଦେଶ୍ୟରେ ଗଣତାନ୍ତ୍ରିକ ମୂଲ୍ୟବୋଧ ବିଷୟ କୁହାଯାଉଥିଲା । କିନ୍ତୁ ଯଦି କେହି କହୁଥିଲା, "ମୁଁ ହେଉଛି ପକ୍କା ବ୍ୟବସାୟୀ ଲୋକ । ମୁଁ ଯେବେ ସଂଖ୍ୟାଲଘୁ ସମ୍ପ୍ରଦାୟର ଜଣେ ଲୋକଙ୍କୁ ମୋ ଦୋକାନର କିରାଣି କରି ରଖେଁ, ତେବେ ଗ୍ରାହକମାନେ ମୋ ଦୋକାନକୁ ଆସିବେତ ?" ଅଥବା "ଜଣେ ନିଗ୍ରୋ କିଅଣ ଏକାମ କରି ପାରିବ ? ମୋର ଅନ୍ୟାନ୍ୟ ଶିଳ୍ପୀଆମାନେ ତା ସାଥିରେ କାମ କରିବେ ତ ?" ସେତେବେଳେ କେହି ଉପଯୁକ୍ତ ପ୍ରମାଣସହି ତାର ପ୍ରଶ୍ନର ଉତ୍ତର ଦେଇ ପାରୁନଥିଲା । ବର୍ତ୍ତମାନ ଅବସ୍ଥା ଭିନ୍ନ ପ୍ରକାରର । ଶିଳ୍ପର କ୍ଷେତ୍ରରେ ଯଥେଷ୍ଟ ପରିବର୍ତ୍ତନ ହୋଇ ଯାଇଅଛି ଏବଂ ଏହି ପରିବର୍ତ୍ତନକୁ ପର୍ଯ୍ୟବେକ୍ଷଣ କରି ଓ ଘଟନାବଳୀକୁ ବିଶ୍ଳେଷଣ କରି ଆମେ ଦୃଢ଼ତା ସହକାରେ ଏ ପ୍ରଶ୍ନମାନଙ୍କର ଉତ୍ତର ଦେଇ ପାରିବା । ମୁନିବମାନଙ୍କର ଯେତେଦୂର ଶିକ୍ଷା ପାଇବାର ସମ୍ଭାବନା ଅଛି, ସେମାନେ ଯେ ସେତେଦୂର ଶିକ୍ଷା ପାଇଅଛନ୍ତି, ଏହା କୁହାଯାଇ ନ ପାରେ । ଶ୍ରମିକମାନଙ୍କର ଅଭାବ, ଆଇନଗତ ଚାପ, ବିଜ୍ଞନ ଓ ଶ୍ରମିକସଂଘର ନୀତି ଯୋଗୁଁ ପରିବର୍ତ୍ତନ ଘଟିବାର ଅଧିକ ସମ୍ଭାବନା ଅଛି କିନ୍ତୁ ପରିବର୍ତ୍ତନ ହେଲେ ଯେ ମୁନିବର ଲାଭ ଓ ଦେଶର ଲାଭ ହେବ ; ମୁନିବମାନେ ଏପରି ବିଚାରିବା ଫଳରେ ପରିବର୍ତ୍ତନର ସେତେ ସମ୍ଭାବନା ନାହିଁ । ପୂର୍ବେ ଯେଉଁ ସବୁ ଶକ୍ତିର ଉଲ୍ଲେଖ କରି ଯାଇଅଛି, ସେଥି ମଧ୍ୟରୁ କେତେକ ପରିବର୍ତ୍ତନ ପଥରେ ବାଧା ସୃଷ୍ଟି କରି ପାରନ୍ତି । ଶିଳ୍ପରେ ଘଟନା ସବୁ ସେତେ ସରଳ ନୁହେଁ ; କୌଣସି ମୁନିବ ହଠାତ୍ ସିଦ୍ଧାନ୍ତ କରେନାହିଁ ଯେ ନିଯୁକ୍ତି କଲାବେଳେ ସେ ଧର୍ମ, ଜାତି ବା ଗୋଷ୍ଠୀ ଦୃଷ୍ଟିରୁ ଦେଖିବା ଅନୁଚିତ । ବିଶେଷତଃ (ଅଳ୍ପକାଳ) ଅଦୂର ଦୃଷ୍ଟିରୁ ଏଥିରେ କେତେକ ବିପଦ ଅଛି । ସମାଜର ଲୋକ ଶକ୍ତିର ପୂର୍ଣ୍ଣ ବିନିଯୋଗ ଦ୍ୱାରା ସମଗ୍ର ସମାଜ ଉପକୃତ ହୁଏ । ଏହି ହେତୁରୁ କେତେକ ରାଜ୍ୟରେ 'ଶିଳ୍ପରେ ନିରପେକ୍ଷ ନୀତି' ବିଷୟରେ ଆଇନ ପ୍ରଣୟନ କରି ଯାଇଅଛି । ଏହା ଦ୍ୱାରା ରାଜ୍ୟ ଶ୍ରମିକ ଶକ୍ତିର ଅପବ୍ୟବହାର ଜନିତ ବିପଦରୁ ରକ୍ଷା ପାଇବ । ସମଗ୍ର ସମାଜର ଲାଭରେ ମୁନିବର ମଧ୍ୟ ଅଂଶ ଅଛି । ପରିଣାମରେ ପ୍ରଶସ୍ତ କ୍ଷେତ୍ରରୁ ଶ୍ରମିକ ସଂଗ୍ରହ କରି ସେ ନିଜେ ଲାଭବାନ ହୁଏ ଏବଂ ବଜାରରେ ନୂତନ ଖରିଦଦାରଙ୍କୁ ଆକର୍ଷଣ କରିବାକୁ ସମର୍ଥ ହୁଏ ।

ଶିଳ୍ପରେ ପ୍ରଚଳିତ ସଂଖ୍ୟାଗୁରୁ ସଂଖ୍ୟାଲଘୁ ସମ୍ପର୍କର ପରିବର୍ତ୍ତନ ଆଣିବା ବିଷୟରେ ଅନେକ ଲେଖା ବାହାରିଅଛି । ଶିଳ୍ପ କମିଶନଙ୍କ ରିପୋର୍ଟ ଓ ତାର

ବ୍ୟାଖ୍ୟାରେ ଏବଂ ଅନ୍ୟାନ୍ୟ ପାଣ୍ଡିତ୍ୟପୂର୍ଣ୍ଣ ପୁସ୍ତକମାନଙ୍କରେ ଏ ସବୁ ମିଳ ପାରିବ [*]। ଅଧିକାଂଶ ପରିସ୍ଥିତିରେ ନିମ୍ନଲିଖିତ ତଥ୍ୟ ଗୁଡ଼ିକ ଠିକ୍ ବୋଲି ମନେହୁଏ ।

୧ । ନିଂପୁତ୍ତରେ ସମ୍ପୂର୍ଣ୍ଣରୂପେ 'ସର୍ବସାଧାରଣଙ୍କ ପାଇଁ ଉନ୍ମୁକ୍ତ' ନୀତି ପ୍ରୟୋଗ ଦ୍ୱାରା ଶ୍ରମିକମାନଙ୍କ ପାଇଁ କମ ବ୍ୟୟ ହୋଇଥାଏ ।

୨ । ଅନ୍ତତଃ ଆମେରିକାର ଉତ୍ତରାଞ୍ଚଳରେ ଶ୍ୱେତାଙ୍ଗ ଶ୍ରମିକମାନେ ସୁଦକ୍ଷ ନିଗ୍ରୋ ପରିଦର୍ଶକ କର୍ମଚାରୀଙ୍କୁ ମାନି ଚଳିବେ ।

୩ । ସଂଖ୍ୟାଲଘୁ ସମ୍ପ୍ରଦାୟର କିରାନି ରହିଲେ ଗ୍ରାହକସଂଖ୍ୟା କମିଯିବ ନାହିଁ ।

୪ । ସମାନ ଶିକ୍ଷାଦୀକ୍ଷା ଓ ଅଭିଜ୍ଞତା ଲାଭ କରିଥିଲେ ନିଗ୍ରୋ ସୈନିକମାନେ ଶ୍ୱେତାଙ୍ଗ ସୈନିକଙ୍କ ପରି ଉତ୍ତମ କାର୍ଯ୍ୟ କରିଥାନ୍ତି ।

ଏ ପ୍ରକାର ଅନୁମାନ ବର୍ତ୍ତମାନ ସତ୍ୟ ଓ ଅଧିକ ଅଧ୍ୟୟନର ଯୋଗ୍ୟ ବୋଲି ମନେହୁଏ, ଏଗୁଡ଼ିକ ତହିଁର ଉଦାହରଣ ମାତ୍ର । ସୈନିକଙ୍କରେ ନିଯୁକ୍ତ ବିଷୟରେ 'ସର୍ବସାଧାରଣଙ୍କ ପାଇଁ ଉନ୍ମୁକ୍ତ' ନୀତି ଦ୍ୱାରା ଯେ ଯଥେଷ୍ଟ ଲାଭ ଅଛି, ତାହା ଏହି ସବୁ ଅନୁମାନ ଦ୍ୱାରା ସମର୍ଥିତ ହୁଏ । ସୈନିକ ଓ ମୁନିବ ଉଭୟେ ଏହି ସବୁ ତଥ୍ୟଉପରେ ଗବେଷଣା କଲେ ବୁଝିପାରିବେ ଯେ ନିଯୁକ୍ତ ପ୍ରଣାଳୀରେ ପରିବର୍ତ୍ତନ ବିଷୟରେ ସେମାନଙ୍କର ଯେଉଁ ସବୁ ଆଶଙ୍କା ଅଛି, ସେ ସବୁର ଯଥାର୍ଥତା ନାହିଁ ବୋଲି ପ୍ରମାଣିତ ହୋଇ ପାରିବ । ସୈନିକ ପରିସ୍ଥିତି ଆଲୋଚନା କଲାବେଳେ ଏହି ସବୁ ଦୃଷ୍ଟିରୁ ସମ୍ପ୍ରଦାୟ ପ୍ରଶ୍ନର ପୁନର୍ବିଚାର କରିବା ବିଧେୟ ।

## ସାମ୍ପ୍ରଦାୟିକ ସମ୍ପର୍କ ଉପରେ ସ୍କୁଲ କଲେଜର ପ୍ରଭାବ

ବିଦ୍ୱେଷ ଓ ଭେଦଭାବ ଉପରେ ଶିକ୍ଷାର ପ୍ରଭାବ କିପରି ? କୌଣସି ନିର୍ଦ୍ଦିଷ୍ଟ ସାମ୍ପ୍ରଦାୟିକ ସମ୍ପର୍କ ବା ସେ ସମ୍ବନ୍ଧରେ ଲିଖିତ କୌଣସି ବିଷୟ ପ୍ରତି ମୁଁ ଲକ୍ଷ୍ୟ କରୁନାହିଁ । କିନ୍ତୁ ସାମାଜିକ ସଂସ୍ଥାରେ ସାଧାରଣ ଭାବରେ ସ୍କୁଲର ପ୍ରଭାବ କିପରି, ତାହାହିଁ ମୋର ଉଦ୍ଦେଶ୍ୟ । ବିବିଧ ଅର୍ଥନୈତିକ, ରାଜନୈତିକ, ଧର୍ମଗତ,

[*] ନିଉୟର୍କର କଲମ୍ବିଆ ଇଉନିଭରସିଟି ପ୍ରେସରୁ ୧୯୫୯ ମସିହାରେ ପ୍ରକାଶିତ ଓ ଜାକ୍ ଗ୍ରୀନବର୍ଗଙ୍କ ଦ୍ୱାରା ଲିଖିତ 'ରେସ୍ ରିଲେସନ୍ସ ଏଣ୍ଡ ଆମେରିକାନ ଲ' ପୁସ୍ତକର ଷଷ୍ଠ ଅଧ୍ୟାୟ ଓ ନିଉୟର୍କର ଇଣ୍ଡଷ୍ଟ୍ରିୟାଲ ରିଲେସନ୍ସ କାଉନ୍ସିଲରସ୍ ଇନ୍‌କଙ୍କ ଦ୍ୱାରା ୧୯୫୯ ମସିହାରେ ପ୍ରକାଶିତ ଓ ପାଲ ଏଇଚ୍. ନରଗ୍ରେନ ଏଟ୍ ଅଲ.ଙ୍କ ଦ୍ୱାରା ଲିଖିତ 'ଇମ୍‌ପ୍ଲୟିଂ ଦ ନିଗ୍ରୋ ଇନ୍ ଆମେରିକାନ ଇଣ୍ଡଷ୍ଟ୍ରିଜ୍' ପୁସ୍ତକ ଦେଖ ।

ପାରିବାରିକ ଓ ପ୍ରତିବେଶୀ ମଧ୍ୟରେ ସ୍କୁଲଗୁଡ଼ିକ ପ୍ରତିଷ୍ଠିତ । ଏହା ସାମ୍ପ୍ରଦାୟିକ ସମ୍ପର୍କ ବିଷୟିକ ଶିକ୍ଷାକୁ ପୂର୍ଣ୍ଣରୂପେ ନିର୍ଦ୍ଧାରଣ ନ କଲେ ମଧ୍ୟ ଅନେକ ପରିମାଣରେ ପ୍ରଭାବିତ କରିଥାଏ [୭] ।

ଯଦି ନିକଟବର୍ତ୍ତୀ ଶିକ୍ଷାଳୟଗୁଡ଼ିକ ଅନୁଦାରତା ଓ ବିରୋଧର ସମର୍ଥନ କରୁଥାଏ, ତେବେ ସମ୍ପ୍ରଦାୟମାନଙ୍କ ମଧ୍ୟରେ ଐକ୍ୟ ସ୍ଥାପନ ଉଦ୍ଦେଶ୍ୟରେ କୌଣସି କାର୍ଯ୍ୟକ୍ରମ ଆରମ୍ଭ କରାଯାଇ ନପାରେ । ଯଦି କୌଣସି ଅସାଧାରଣ ପରିସ୍ଥିତି ହେତୁ ଏପରି କାର୍ଯ୍ୟକ୍ରମ ଗ୍ରହଣ କରାଯାଏ, ତେବେ ଶିକ୍ଷାଳୟର ବିରୋଧଭାବାପନ୍ନ ପ୍ରଭାବ ଓ ବିଦ୍ୟାଳୟ ବାହାରର ଅଭିମତ ଓ ଅଭିଜ୍ଞତା ଦ୍ୱାରା ତାହାର ସଫଳତା ବହୁ ପରିମାଣରେ ହ୍ରାସ ପାଇବ । ଗୋଟିଏ ଭ୍ରାନ୍ତ ଧାରଣା ଅଛି ଯେ ସ୍କୁଲ ହେଉଛି ପରିବେଶର ସୃଷ୍ଟି । ଏହାର ସମର୍ଥକ ଗୋଷ୍ଠୀର ଆଦର୍ଶ ଓ ମୂଲ୍ୟବୋଧକୁ ଏହା ଅତିକ୍ରମ କରି ପାରିବନାହିଁ । ପୁଣି ସ୍କୁଲକାର୍ଯ୍ୟ ଅନ୍ୟ କାହାରି ଉପରେ ନିର୍ଭର ନକରି ପରିଚାଳିତ ହୋଇପାରେ ବୋଲି ମନେ କରିବା ମଧ୍ୟ ଗୋଟିଏ ଭ୍ରମ । ଶିକ୍ଷକମାନେ ଓ ଶିକ୍ଷାବିଭାଗୀୟ କର୍ମଚାରୀମାନେ ଅନେକ ସମୟରେ ବାହାର ସମାଜର ଓ ଶିକ୍ଷାବିତ୍ ଗୋଷ୍ଠୀର ଆକର୍ଷଣ ଅନୁଭବ କରିଥାନ୍ତି ଓ ଏମାନଙ୍କର ଆଦର୍ଶ ଗୋଷ୍ଠୀର, ଆଦର୍ଶ ଅପେକ୍ଷା ଅଧିକ ଉଦାର । ଏହି ହେତୁରୁ ସ୍କୁଲର ଗୋଟାଏ ସ୍ୱତନ୍ତ୍ର ପ୍ରଭାବ ଥାଏ ।

ଏହାର ବିପରୀତ ଦିଗ ପ୍ରତି ବିଶେଷଭାବରେ ଦୃଷ୍ଟିନିକ୍ଷେପ କରିବା ମୋର ଅଭିପ୍ରାୟ । ଏହା ହେଉଛି, ପରିଚାଳନା ନୀତିର ଅଭାବ ବିଷୟରେ । ଉଦାହରଣ ସ୍ୱରୂପ, ସ୍କୁଲ କମିଟିର କୌଣସି ସଭ୍ୟ ବା ଅନ୍ୟ ଅଧିବାସୀ ଗୋଷ୍ଠୀର ଅର୍ଥନୈତିକ ବ୍ୟବସ୍ଥା ବା ବାସଗୃହ ବ୍ୟବସ୍ଥା ପ୍ରଥମେ ବିଚାର୍ଯ୍ୟ ବୋଲି ମନେ କରିପାରନ୍ତି ; ଶିକ୍ଷକ ବା ପରିଚାଳକ ମଧ୍ୟ ସ୍କୁଲକୁ ଗଣତାନ୍ତ୍ରିକ ଶିକ୍ଷାର ଏକ ଉପାୟ ଦୃଷ୍ଟିରୁ ତାହାହିଁ ମନେ କରିପାରନ୍ତି । ଏ ପ୍ରକାର ବ୍ୟବସ୍ଥା ଫଳରେ ଯଦି ଚାକିରି କ୍ଷେତ୍ରରେ ଚିରାଚରିତ ପ୍ରାଚୀନ ପନ୍ଥା ଚାଲେ, ଯଦି ବିଭେଦମୂଳକ ନୀତିର ସଂସ୍କୃତି ଚାଲେ, ସଂଖ୍ୟାଲଘୁ ସମ୍ପ୍ରଦାୟର ବିରୋଧୀବୃତ୍ତି ବୃଦ୍ଧିପାଏ, ଯଦି ସ୍କୁଲରେ କାର୍ଯ୍ୟତଃ ପୃଥକ-କରଣ ଜାରିହୁଏ, ତେବେ ଏପରି ଏକ ଅବସ୍ଥା ସୃଷ୍ଟି ହେବ ଯେ ସେଥିରେ ସ୍କୁଲରେ ଆନ୍ତଃସାମ୍ପ୍ରଦାୟିକ ଶିକ୍ଷାଦେବା ଏକାନ୍ତ ଅସମ୍ଭବ ନ ହେଲେହେଁ ନିତାନ୍ତ କଷ୍ଟକର ହେବ । କେତେକଦିନ ତଳେ ଗୋଟିଏ ବଡ଼ ପବ୍ଲିକ ହାଇସ୍କୁଲର ବୈଷୟିକ

---

[୭] ନିଉୟର୍କର ଇନଷ୍ଟିଚିଉଟ ଅଫ ହ୍ୟୁମାନ ରିଲେଶନସ ପ୍ରେସରୁ ୧୯୬୧ମସିହାରେ ପ୍ରକାଶିତ ଓ ଚାର୍ଲସ ଏଚ. ଷ୍ଟେମ୍ବରଙ୍କ ଦ୍ୱାରା ଲିଖିତ 'ଏଡୁକେଶନ ଏଣ୍ଡ ୟାଟିଚ୍ୟୁଡ ଚେଞ୍ଜ: ଦ ଇଫେକ୍ଟ ଅଫ ସ୍କୁଲିଙ୍ଗ୍ ଅନ ପ୍ରିଜୁଡିସ ଏଗେନ୍‌ଷ୍ଟ ମାଇନାରିଟି ଗ୍ରୁପ୍‌ସ' ପୁସ୍ତକ ଦେଖ ।

ଶିକ୍ଷା ପରାମର୍ଶଦାତା ମୋତେ କହିଥିଲେ ଯେ କେତେକ ନିଗ୍ରୋବାଳକ ଗୋଟିଏ ଶିଳ୍ପକାର୍ଯ୍ୟକ୍ରମରେ ନାମ ଲେଖାଇବାକୁ ଇଚ୍ଛା କରିଥିଲେ ; କିନ୍ତୁ ସେ ସେମାନଙ୍କୁ ସେଥିରୁ ନିରୁତ୍ସାହିତ କରିବାକୁ ବାଧ୍ୟ ହୋଇଥିଲେ । ସେ ଲକ୍ଷ୍ୟ କରିଥିଲେ ଯେ ସମାଜରେ ସେମାନଙ୍କର ସୁଯୋଗ ଅଳ୍ପ ; ତେଣୁ ପରିଣାମରେ ସେମାନେ ହତାଶ ଓ କ୍ରୁଦ୍ଧ ହୋଇ ଉଠିବେ । (ଏ ବିଷୟରେ ମୁଁ ତାଙ୍କ ସହିତ ଏକମତ ନୁହେଁ । ଉପଯୁକ୍ତ ଟ୍ରେନିଂର ଅଭାବରୁ ସେମାନଙ୍କର ସୁଯୋଗର ଅଭାବ ଘଟୁଅଛି । ପୁଣି ସୁଯୋଗର ଅଭାବରୁ ସେମାନଙ୍କ ଟ୍ରେନିଂର ଅଭାବ ଘଟୁଅଛି । ଏହାଛଡ଼ା ଟ୍ରେନିଙ୍ଗ୍ ପାଇଥିଲେ ସେମାନେ ଏହି ଗତିଶୀଳ ପୃଥିବୀରେ ଅନ୍ୟ କୌଣସିଠାରେ ସୁଯୋଗ ପାଇ ପାରନ୍ତେ । ଅବସ୍ଥାର ପରିବର୍ତ୍ତନ ହେଉଅଛି । ତେଣୁ ସେମାନେ ବର୍ତ୍ତମାନ ଅବସ୍ଥା ଦୃଷ୍ଟିରୁ ଚିନ୍ତା ନକରି ଭବିଷ୍ୟତରେ କେତେକ ବର୍ଷ ପରେ କିପରି ଅବସ୍ଥା ହେବ ସେହି ଦୃଷ୍ଟିରୁ ଚିନ୍ତା କରିବାକୁ ଶିକ୍ଷା ପାଇବା ଉଚିତ) । ଏହି ପରାମର୍ଶଦାତାଙ୍କର ଉଦ୍ଦେଶ୍ୟ ସାଧୁ ହୋଇପାରେ, କିନ୍ତୁ ସେ ପ୍ରକାରାନ୍ତରେ ଭେଦଭାବମୂଳକ ପ୍ରଥାକୁ ଦୃଢ଼ କରିବାରେ ସାହାଯ୍ୟ କରୁଥିଲେ । ବୈଷୟିକ ଶିକ୍ଷା କାର୍ଯ୍ୟକ୍ରମରେ ନିଗ୍ରୋବାଳକମାନଙ୍କୁ ନିଯୁକ୍ତ କରିବା ଦିଗରେ ମାଲିକ ଓ ଶ୍ରମିକ ଇଉନିଅନ ଉଭୟଙ୍କ ଦ୍ୱାରା କଠୋର ଉଦ୍ୟମ କରାଗଲେ ଏହାର ପ୍ରଭାବ ନିଗ୍ରୋବାଳକମାନଙ୍କ ସହିତ କାର୍ଯ୍ୟ କରୁଥିବା ଶ୍ୱେତାଙ୍ଗ ବାଳକମାନଙ୍କ ଉପରେ ତଥା ବୈଷୟିକ ଶିକ୍ଷା ପରାମର୍ଶଦାତା କର୍ମଚାରୀଙ୍କ ଉପରେ ପଡ଼ିବ । ଏହାର ଶିକ୍ଷାଗତ ମୂଲ୍ୟ ସାମ୍ପ୍ରଦାୟିକ ସମ୍ପର୍କ ବିଷୟରେ ଲିଖିତ ପୁସ୍ତକର ଗମ୍ଭୀର ଅଧ୍ୟୟନଜନିତ ମୂଲ୍ୟ ଠାରୁ ଯଥେଷ୍ଟ ଅଧିକ ।

ସ୍କୁଲ କିପରି ସମାଜ ସହିତ ସଂଯୁକ୍ତ ତାହା ଅନ୍ୟ ପ୍ରକାରେ ପ୍ରଦର୍ଶନ କରାଯାଇପାରେ । ଆନ୍ତଃସାମ୍ପ୍ରଦାୟିକ ବାସଗୃହ, ବିଚାରାଳୟର ଆଦେଶ ବା ସ୍କୁଲବୋର୍ଡ଼ ଗଠନର ସୀମା ନିର୍ଦ୍ଧାରଣ ନୀତି ଫଳରେ ସ୍କୁଲମାନଙ୍କରୁ ପୃଥକକରଣ ଦୁରୀଭୂତ ହୋଇପାରେ । ତାହାହେଲେ ଏପରି କେତେକ ଶକ୍ତିର ଉଦ୍ଭବ ହୁଏ ଯେ ଶକ୍ତି ସାମ୍ପ୍ରଦାୟିକ ସମ୍ପର୍କ ଉପରେ ପ୍ରଭାବ ପକାଏ । ଏହି ପ୍ରଭାବର ପ୍ରକୃତି କେତୋଟିଏ ପ୍ରଶ୍ନଦ୍ୱାରା ସୂଚିତ ହୋଇପାରେ । ଯଥା:—କେଉଁ ପରିସ୍ଥିତିରେ ସ୍କୁଲର ଛାତ୍ରଙ୍କ ମଧ୍ୟରେ ଥିବା ବିଦ୍ୱେଷ ବୃଦ୍ଧିପାଏ ବା ହ୍ରାସ ପାଏ ? ସ୍କୁଲର ସାମୂହିକ ମୂଲ୍ୟବୋଧ ପ୍ରଣାଳୀ କିପରି ପ୍ରଭାବିତ ହୁଏ ? ଅର୍ଥାତ୍ ପୁସ୍ତକଗତ ଶିକ୍ଷା, କ୍ରୀଡ଼ାକୌତୁକ, ସାମାଜିକ ଅଭିରୁଚି ଓ ଅନ୍ୟାନ୍ୟ ବିଷୟ ପ୍ରତି ସ୍କୁଲର କିପରି ଯତ୍ନଥାଏ ? ବିଭିନ୍ନ ସମ୍ପ୍ରଦାୟର ଲୋକଙ୍କ ଆଶା-ଆକାଂକ୍ଷା ଉପରେ ଏହାର କି ପ୍ରଭାବ ଦେଖାଯାଏ ? ଶିକ୍ଷକମାନଙ୍କର ଛାତ୍ରଙ୍କ ପ୍ରତି ଓ ଛାତ୍ରମାନଙ୍କର ଶିକ୍ଷକଙ୍କ ପ୍ରତି ମନୋଭାବ ଉପରେ କିଛି ପ୍ରଭାବ ପଡ଼େ କି ? ଚିରାଚରିତ ପ୍ରଥାର କିଛି ପରିବର୍ତ୍ତନ ଘଟେ କି ? ପୂର୍ବରୁ ପୃଥକ ରହିଥିବା ସଂଖ୍ୟାଲଘୁ ସମ୍ପ୍ରଦାୟର ଲୋକେ ସଂଖ୍ୟାଗୁରୁ ସମ୍ପ୍ରଦାୟର କାର୍ଯ୍ୟ ଓ ମୂଲ୍ୟବୋଧକୁ ଗ୍ରହଣ କରନ୍ତିଅନ୍ତି କି ନିଜର ସ୍ୱତନ୍ତ୍ର ନିମ୍ନତର ସଂସ୍କୃତିକୁ ଧରି ରହନ୍ତି ।

ଏସବୁ ବିଷୟରେ ସୁପରୀକ୍ଷିତ ତଥ୍ୟ ମିଳିବା ଦୁର୍ଲଭ । ଯଥାସମ୍ଭବ ସୁନିୟନ୍ତ୍ରିତ ଅବସ୍ଥା ମଧ୍ୟରେ ଦୀର୍ଘ ଅଧ୍ୟୟନ ଦ୍ୱାରା ବିଭିନ୍ନ ଘଟଣାସ୍ଥିତ ପର୍ଯ୍ୟବେକ୍ଷଣ କରିବା ଆବଶ୍ୟକ । ମୁଁ ଯେଉଁ ଅନୁମାନଗୁଡ଼ିକର ସୂଚନା ଦେଇଅଛି ସେଥିରେ କିଛି ପ୍ରମାଣ ମିଳେ । କିନ୍ତୁ ଏହାର ବିସ୍ତୃତ ଗବେଷଣା ଦରକାର ।

ଯେତେବେଳେ କୌଣସି ସ୍କୁଲରେ ସମ୍ମିଳିତ ଶିକ୍ଷାର ପ୍ରଚଳନ ହୁଏ, ସେତେବେଳେ ସ୍କୁଲ ଭିତରର ଓ ବାହାରର ପ୍ରଭାବଶାଳୀ ଲୋକେ ଯଦି ନିଜର କଥା ବା କାର୍ଯ୍ୟଦ୍ୱାରା ଶତ୍ରୁତାକୁ ଉପେକ୍ଷା କରନ୍ତି ବା ସମର୍ଥନ କରନ୍ତି ତେବେ ପୂର୍ବରୁ ପୃଥକଥିବା ସମ୍ପ୍ରଦାୟର ପିଲାମାନଙ୍କ ମଧ୍ୟରେ ଶତ୍ରୁତା ଦେଖାଯାଏ । ୧୯୫୮ ମସିହାର ବସନ୍ତ ଋତୁରେ ଜନୈକ ସାମୁଏଲସ ଏକ ବକ୍ତୃତାରେ କହିଥିଲେ—"ଲିଟିଲ ରକ୍‌ର ହାଇସ୍କୁଲ କାର୍ଯ୍ୟତଃ ୫୦ ଠାରୁ ୧୦୦ ପର୍ଯ୍ୟନ୍ତ ଛାତ୍ରଙ୍କ ଦ୍ୱାରା ଶାସିତ ହେଉଅଛି । ସେମାନେ ପୃଥକକରଣର ଘୋର ପକ୍ଷପାତୀ । ସେମାନେ ଯେ କେବଳ ସ୍କୁଲର ୮ଜଣ ନିଗ୍ରୋଛାତ୍ରଙ୍କୁ ଭୟଭୀତ କରି ରଖିଅଛନ୍ତି ତାହା ନୁହେଁ ; ଅଧିକାଂଶ ଶ୍ୱେତାଙ୍ଗ ଛାତ୍ର ଓ ସ୍କୁଲର ପରିଚାଳକମାନେ ମଧ୍ୟ ସେମାନଙ୍କୁ ଭୟକରି ରହି ଅଛନ୍ତି । ସବୁ ଘଟଣା ଜଣାଥିଲେହେଁ ନଗରର କର୍ତ୍ତୃପକ୍ଷ ନୀରବ ରହିଅଛନ୍ତି । ସ୍କୁଲବୋର୍ଡ ନିଜକୁ ଅସହାୟ ମନେ କରୁଅଛନ୍ତି ଏବଂ ଏହି ଉତ୍ତେଜିତଦଳଙ୍କୁ ରାଜ୍ୟ ସରକାର ନୈତିକ ସମର୍ଥନ ଦେଉଅଛନ୍ତି । ଏଥିରୁ ବୁଝି ହୁଏ ଯାଇପାରେ ଯେ ଛାତ୍ରମାନଙ୍କଠାରେ ଶତ୍ରୁତା ନଥିଲା ; କିନ୍ତୁ ଏହା ଅନେକଙ୍କଠାରେ ଏକ ପ୍ରଚ୍ଛନ୍ନ ଶକ୍ତି ରୂପେ ରହିଥିଲା । ଏହି କ୍ଷେତ୍ରରେ କେତେକ ନିର୍ଦ୍ଦିଷ୍ଟ ପ୍ରଭାବ କାର୍ଯ୍ୟ କରିବାରୁ ତାହା ପ୍ରକାଶିତ ହେଲା [୭] ।

ସମ୍ମିଳିତ ଶିକ୍ଷାବିଶିଷ୍ଟ ସ୍କୁଲଗୁଡ଼ିକ ସୁଯୋଗରହିତ ସମ୍ପ୍ରଦାୟମାନଙ୍କର ବିଭେଦକ ନିମ୍ନତର ସ୍ପୃହାକୁ ଦୂର କରିବାରେ ସାହାଯ୍ୟ କରି ପାରିବ ; ମାତ୍ର ଏହା ଦିନେ ଦୁଇଦିନରେ ହୋଇ ପାରିବ ନାହିଁ । କେତେ ବର୍ଷ ଲାଗିଯିବ । ଯେଉଁସବୁ ଘଟଣା ଆନ୍ତଃସାମ୍ପ୍ରଦାୟିକ ଶତ୍ରୁତା ଓ ଭେଦଭାବକୁ ନ୍ୟାଯ୍ୟ ବୋଲି ସମର୍ଥନ କରୁଥିଲା, ସେ ସବୁ ଏହା ଦ୍ୱାରା ଧ୍ୱଂସ ପାଇଯିବ । ଏହି କଥା ଯଦି ସତ୍ୟ ହୁଏ, "ସ୍କୁଲରେ ସମ୍ମିଳିତ ଶିକ୍ଷା" ଗୋଟିଏ କୌଶଳ ରୂପେ ଗୁରୁତ୍ୱପୂର୍ଣ୍ଣ ପ୍ରଭାବ ପକାଇବ । ବହୁସଂଖ୍ୟକ ସଂଖ୍ୟାଲଘୁ, ସଂଖ୍ୟାଲଘୁ ସମ୍ପ୍ରଦାୟର ଲୋକ ବାସ କରୁଥିବା ଉତ୍ତରାଞ୍ଚଳର ବା ଦକ୍ଷିଣାଞ୍ଚଳର ସହରମାନଙ୍କ ପକ୍ଷରେ ଓ ସମଗ୍ର ଉତ୍ତରାଞ୍ଚଳ ପକ୍ଷରେ ଏହା ତାତ୍ପର୍ଯ୍ୟ ପୂର୍ଣ୍ଣ । ମନେକର, କୌଣସି ସହରରେ ତିନୋଟି ପ୍ରାଥମିକ ସ୍କୁଲ ଅଛି । ଗୋଟିକରେ ବହୁସଂଖ୍ୟକ ନିଗ୍ରୋଛାତ୍ର ଅଛନ୍ତି (ସେମାନଙ୍କ ସଂଖ୍ୟା ଅନ୍ୟମାନଙ୍କ ସଂଖ୍ୟାଠାରୁ ଅଧିକ) । ଅନ୍ୟ ଦୁଇଟିରେ ଖୁବ୍ ଅଳ୍ପସଂଖ୍ୟକ ନିଗ୍ରୋଛାତ୍ର ଅଛନ୍ତି ବା ଆଦୌ ନାହାନ୍ତି । ଏପରି ସ୍ଥଳରେ ବିଭେଦକାରୀ ମୂଲ୍ୟବୋଧ ରହିପାରେ । ଏଥିପୂର୍ବରୁ ପ୍ରିନ୍‌ସଟନ ଯୋଜନା ବିଷୟ ବର୍ଣ୍ଣନା କରି ଯାଇଅଛି ।

---

[୭] ତୁଳନାତ୍ମକ ଘଟଣା ନିମନ୍ତେ କୋଲ୍‌ସଙ୍କ (କୋଲ୍‌ସ) ପୂର୍ବୋଲ୍ଲିଖିତ ପୁସ୍ତକ ଦେଖ ।

ସେହି ଯୋଜନା ଅନୁସାରେ କାର୍ଯ୍ୟକଲେ ସମସ୍ୟା ହ୍ରାସ ଲାଭ କରି ପାରିବ ଏବଂ ତାହା ସଙ୍ଗେ ସଙ୍ଗେ ନମନୀୟ ଓ କଳ୍ପନାପୂର୍ଣ୍ଣ ଶିକ୍ଷାକାର୍ଯ୍ୟକ୍ରମର ପ୍ରବର୍ତ୍ତନ ନିମନ୍ତେ ସୁଯୋଗର ସୃଷ୍ଟି ହେବ ।

ଏହା ସହିତ ସଂପୃକ୍ତ ଆଉ ଗୋଟିଏ ବିଷୟ ବ୍ୟକ୍ତି ବିଶେଷ ଉପରେ ଗୁରୁତ୍ୱ ଦିଏ ; ନିମ୍ନତର ସଂସ୍କୃତିର ମାନ ଉପରେ ଦିଏ ନାହିଁ । ସମ୍ମିଳିତ ଶିକ୍ଷା ପୂର୍ବରୁ ପୃଥକକୃତ ପିଲାମାନଙ୍କ ହୃଦୟରେ ଆଶା ଓ ଆକାଂକ୍ଷା ଜାଗ୍ରତ କରେ ; ସେମାନଙ୍କ ଆଚରଣରେ ପରିବର୍ତ୍ତନ ଆଣେ । ବିଭିନ୍ନ ଅବସ୍ଥା ମଧ୍ୟରେ ଏହି ଉକ୍ତିର ସତ୍ୟତା ପରୀକ୍ଷା କରିବାର ଆବଶ୍ୟକତା ଅଛି । ବିଭିନ୍ନ ସମ୍ପ୍ରଦାୟର ଆନୁପାତିକ ଆକାର କେତେ, ନୂତନ ବ୍ୟବସ୍ଥାରେ କାର୍ଯ୍ୟ କରିବାପାଇଁ ଶିକ୍ଷକମାନେ କେତେଦୂର ପ୍ରସ୍ତୁତ, ସ୍କୁଲ ସମାଜରୁ କେତେ ପରିମାଣରେ ସମର୍ଥନ ପାଉଅଛି କିମ୍ବା ଅନେକ ଲୋକ ସହରତଳି ଅଞ୍ଚଳକୁ ଚାଲିଯିବାରୁ କେତେ ପରିମାଣରେ ସମର୍ଥନ ହରାଇଅଛି—ଏହିସବୁ ପରିବର୍ତ୍ତନଶୀଳ ବିଷୟ ବିଚାରଯୋଗ୍ୟ ।

## ଉପସଂହାର

ଯେଉଁମାନେ ଭେଦଭାବର ହ୍ରାସ ଦିଗରେ ଆଗ୍ରହୀ, ସେମାନେ ସମସାମୟିକ ସମାଜବିଜ୍ଞାନରୁ କି ପ୍ରକାର ଉପାଦାନ ପାଇପାରିବେ, ତାହାର ସୂଚନା ଦେବା ନିମନ୍ତେ ଏହି ଅଧ୍ୟାୟରେ ଓ ଏହାର ପୂର୍ବବର୍ତ୍ତୀ ଅଧ୍ୟାୟରେ ମୁଁ ଯତ୍ନ କରିଅଛି । ଏଥିରେ ଯେଉଁସବୁ ପ୍ରଶ୍ନର ଉତ୍ଥାପନ କରାଯାଇଅଛି, ସେ ସବୁ ବିଷୟରେ ଆମ୍ଭମାନଙ୍କର ଜ୍ଞାନ ପର୍ଯ୍ୟାପ୍ତ ନୁହେଁ, ତେଣୁ ସାବଧାନ ଭାବରେ ଅଗ୍ରସର ହେବା ଉଚିତ । ଗତ କେତେବର୍ଷ ମଧ୍ୟରେ ଯେଉଁ ଫଳ ମିଳିଅଛି ସେଥିରୁ ଆମର ଦୃଢ଼ ବିଶ୍ୱାସ ଯେ ସମାଜର ଛାତ୍ରମାନଙ୍କ ଦୃଷ୍ଟିକୋଣ ଦ୍ୱାରା ବିଶ୍ଳେଷଣ ଦିଗରେ ସାହାଯ୍ୟମିଳିବ ଓ ଫଳପ୍ରଦ କୌଶଳ ମାନଙ୍କର ଉନ୍ନତି ହେବ । ଶ୍ରମିକର ପ୍ରଣାଳୀ, ବାସଗୃହ ସାମାଜିକ ସ୍ତରୀକରଣ, ଶିକ୍ଷା, ଧର୍ମ ଓ ଅନ୍ୟାନ୍ୟ ବିଷୟରେ ଏତେ ଉପାଦାନ ବୃଦ୍ଧି ପାଉଅଛି ଯେ ସଂଖ୍ୟାଲଘୁ ସମ୍ପ୍ରଦାୟ ବିଷୟ ସହିତ ସଂପୃକ୍ତ ପ୍ରତ୍ୟେକ ଲୋକ ତାଙ୍କ ଘଟଣାଗତ ଜ୍ଞାନ ଓ ପୂର୍ବକଳ୍ପିତ ଜ୍ଞାନର ମୂଲ୍ୟ ବାରମ୍ବାର ପୁନର୍ନିର୍ଦ୍ଧାରଣ କରିବା ଆବଶ୍ୟକ । ସାମ୍ପ୍ରଦାୟିକ ବିରୋଧ ଓ ଗଣ୍ଡଗୋଳ ବିଷୟରେ ସମ୍ବାଦପତ୍ରମାନଙ୍କରେ ବଡ଼ବଡ଼ ଅକ୍ଷରରେ ଯେତେ ସମ୍ବାଦ ବାହାରିଲେ ସୁଦ୍ଧା ପ୍ରଧାନ ସାମାଜିକ ଶକ୍ତିଗୁଡ଼ିକ ଅଧିକରୁ ଅଧିକ ଗଣତାନ୍ତ୍ରିକ ରୀତିରେ ଆନ୍ତଃସାମ୍ପ୍ରଦାୟିକ ସୁସମ୍ବନ୍ଧ ପ୍ରତିଷ୍ଠା କରୁଅଛି । ଏହି ପ୍ରକ୍ରିୟା କେବଳ ନିର୍ବୈୟକ୍ତିକ ସାମାଜିକ ଶକ୍ତିର ଫଳ ନୁହେଁ । ଯେଉଁମାନେ ସମସ୍ୟାର ଗତିକୁ ଲକ୍ଷ୍ୟ ରଖି ପରାମର୍ଶ ଦେଇ କାର୍ଯ୍ୟ କରୁଅଛନ୍ତି ଓ ସେହି କାର୍ଯ୍ୟକୁ ତ୍ୱରାନ୍ୱିତ କରୁଅଛନ୍ତି ସେହିମାନେ ଏହି ପ୍ରକ୍ରିୟାକୁ ବାହାର କରିଅଛନ୍ତି ଓ ତାହାକୁ ରକ୍ଷା କରିବେ ।

— ସ ମା ପ୍ତ —

# ମାର୍କିନ ସମାଜର ଗୋଟିଏ ସଂଖ୍ୟାଲଘୁ ସଂପ୍ରଦାୟ

ଆଜିକାଲି ଯେଉଁସବୁ ଗୁରୁତ୍ୱପୂର୍ଣ୍ଣ ସମସ୍ୟାମାନ ଦେଖିବାକୁ ମିଳେ, ଏହା ସେଥିମଧ୍ୟରୁ ଗୋଟିକର ଅନୁଧ୍ୟାନ ମାତ୍ର । ଏହାର ବିଷୟବସ୍ତୁ ହେଲା ସ୍ୱାଧୀନ ସମାଜରେ ସଂଖ୍ୟାଲଘୁ ସମ୍ପ୍ରଦାୟଙ୍କ ପରିସ୍ଥିତି । ଆମେରିକାର ନିଗ୍ରୋ ସମସ୍ୟାର ଆଶୁ ପରିବର୍ତ୍ତନ ଉପରେ ଭିତ୍ତିକରି ପୁସ୍ତକ ଖଣ୍ଡିକ ଲିଖିତ । ଏହି ପରିବର୍ତ୍ତନ କେବଳ ଆମେରିକାରେ ସୀମାବଦ୍ଧ ନୁହେଁ ; ପୃଥିବୀର ଚାରିଆଡ଼େ ଏହି ପରିବର୍ତ୍ତନର ନାଟକୀୟ ଛଟା ଦେଖିବାକୁ ମିଳେ ।

ଏହା ସାମାଜିକ ପରିବର୍ତ୍ତନ, ସାମାଜିକ ସଂଘର୍ଷ ଓ ସାମାଜିକ କ୍ରମବିକାଶଶୀଳତାର ଗୋଟିଏ ନିଖୁଣ ଚିତ୍ରର ଏକ ପ୍ରତିଫଳନ ମାତ୍ର ।